ରାଜର୍ଷି

# ଶ୍ରୀ ବିକ୍ରମଦେବ ବର୍ମ ରଚନାଳୀ

ପ୍ରକାଶକ—
ଶ୍ରୀ ଗୋପୀନାଥ ମହାନ୍ତି, ଏମ୍: ଏ:

ରାଜର୍ଷି ବିକ୍ରମଦେବ ବର୍ମାଙ୍କ କୃତ

# ଶ୍ରୀ ବିକ୍ରମଦେବ ବର୍ମ୍ମ ରଚନାଳୀ

ପ୍ରକାଶକ :—

ଶ୍ରୀ ଗୋପୀନାଥ ମହାନ୍ତି, ଏମ୍ଃ ଏଃ

ପ୍ରଥମ ଦେବ ସଂସ୍କରଣ ।

ମୂଲ୍ୟ—ମନୋଯୋଗ ସହ ଅମୂଲଚୂଳ ପାଠ ।

# ସୂଚୀପତ୍ର

ସମାପ୍ତ

---

**ମୂଲ୍ୟ ଟ ୩୲ ଙ୍କା ମାତ୍ର**

# ଭ୍ରମ ସଂଶୋଧନ

ଏ ବହିରେ କେତେକ ସ୍ଥଳରେ ମୂଦ୍ରଣ ପ୍ରମାଦ ଥିବାରୁ ତାହାର
ଶୁଦ୍ଧିପତ୍ର ଦିଆଗଲା

| ଅଶୁଦ୍ଧ | ଶୁଦ୍ଧ |
|---|---|
| କୃମା ଓ କୃମାଇଁ | କୃପାଁ, କୃପାଇଁ |
| ଉପେଖିବା, ଉପେଖିଲା | ଉପେକ୍ଷିବା, ଉପେକ୍ଷିଲା |

ବହିର ଯେଉଁ ସ୍ଥାନରେ ଥିବ
ଶୁଦ୍ଧଟି ଗ୍ରହଣ କରିବ ।

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪୯ | ୨ | ଖୋଜେ ପରଦୋଷ | ପାଞ୍ଚେ ପରନାଶ |
| ୫୨ | ୬ | ସନିସ୍ୟାଚରଣ | ସତ୍‌ନିସ୍ୟାଚରଣ |
| ୬୪ | ୨ | ମୂଦାକରଂ | ମୂଦାପ୍ରଦାଂ |
| ୧୨୭ | ୨୩ | ଗାର୍ବିର | ଗାମ୍ଭୀର |
| ୧୪୫ | ୧୧ | ନାଷଦାଳି | ଜ୍ଞାଷଦାବଳୀ |
| ୧୫୪ | ୮ | ଭ୍ବାନିଙ୍କ | ଭ୍ବାନୀଙ୍କ |
| ୨୭୪ | ୧୨ | ନି | କୃ |
| ୩୦୪ | ୩ | ଚ୍ୟୂତାଦ | ଚ୍ୟୁତାଦ |
| ୩୨୩ | ୨୨ | ପୂରଙ୍କୁ | ପୂରକୁ |
| ୩୫୨ | ୨୭ | ଧସ୍କାଣଙ୍କୁ | ଧସ୍କାଗକୁ |
| ୩୫୭ | ୧୪ | ଶୁଅଚ | ଶୁଅଛନ୍ତି |
| ୩୬୯ | ୧୧ | ବୋଥ | ବଥ |
| ୩୯୩ | ୨୫ | ଜନନି | ଜନନୀ |

ଜନନୀ ପ୍ରଭୃତି ( ୀ ) ଈକାର ସମ୍ବୋଧନରେ ( ି ) ଇକାର ହୋଇ ଥିବାରୁ
ତାହା ( ୀ ) ଈକାର ହେବ ।

# ଭୂମିକା

୧୮୭୯ ସାଲରେ ଜନ୍ମହୋଇ ଆଜୀବନ ସାହିତ୍ୟସେବା କରି ନାନାଦି ଗ୍ରନ୍ଥ ପ୍ରଣୟନ କରିସାରିଲା ପରେ ୧୯୪୭ ସାଲରେ ଶ୍ରୀ ବିକ୍ରମ ଦେବ ବର୍ମାଙ୍କ 'ରଚନାଳୀ' ଏକତ୍ର ପ୍ରକାଶିତ ହେଲା । ତାଙ୍କର ଚରିତ୍ର-ସୁଲଭ ବିନୟରେ ଏହାକୁ 'ଗ୍ରନ୍ଥାବଳୀ' କରିବାକୁ ସେ ଅନିଚ୍ଛୁକ ହେଲେ । ସାହିତ୍ୟ-ରାଜ୍ୟରେ ସେ ସୁପ୍ରସିଦ୍ଧ, ସେ 'ସାହିତ୍ୟ ସମ୍ରାଟ୍', 'କଳାପ୍ରପୂର୍ଣ୍ଣ' 'ବିଦ୍ୟାସାଗର' । ସେ D. Litt, Doctor of Letters । ସେ ଅନ୍ଧ୍ର ବିଶ୍ୱବିଦ୍ୟାଳୟର ପ୍ରୋ-ଚାନ୍ସେଲର, ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ପାଠ୍ୟ ପୁସ୍ତକ ସମିତିର ସଭ୍ୟ । ଉତ୍କଳ ଦେଶରେ ସେ ବିଶାଳ ଜୟପୁର ଜମି-ଦାରୀର ଅଧିକାରୀ, ଜୟପୁରର 'ମହାରାଜ' ଯାହାଙ୍କ ରାଜ୍ୟରେ ଭବିଷ୍ୟତର ଉଡ଼ମା ବାହୁ୍ୟର ଶକ୍ତି ଅବସ୍ଥିତ । ସେ ପ୍ରାଚୀନ ନନ୍ଦପୁର ରାଜବଂଶର ଅବତଂସ । ମନୁଷ୍ୟ ସମାଜରେ ସେ ଦାନବୀର । ୧୯୩୧ ରେ ଜୟପୁରର ରାଜଗାଦି ପାଇଲା ପରଠାରୁ ବର୍ଷକୁ ୨ଲକ୍ଷ ଟଙ୍କା ହିସାବରେ ଏ ପର୍ଯ୍ୟନ୍ତ ସେ ଅନ୍ଧ୍ର ବିଶ୍ୱବିଦ୍ୟାଳୟକୁ ୧୫ ଲକ୍ଷ ଟଙ୍କା ଦାନ କରି ସାରିଲେଣି, ଏବଂ ତାହା ପୂର୍ବରୁ ମଧ୍ୟ ୧୯୧୧ ସାଲରେ ବିଶାଖପାଟଣାରେ ରହୁଥିଲା ସମୟରେ ତାଙ୍କର ଦାନ ଓ ବିଦ୍ୟୋତ୍ସାହ ସକାଶେ ଭାରତ ସରକାରଙ୍କଠାରୁ ସେ ଖ୍ୟାତି-ପତ୍ର ପାଇ ସାରିଥିଲେ । କଟକ ମେଡ଼ିକେଲ୍ କଲେଜକୁ ତାଙ୍କର ଦାନ ୧ ଲକ୍ଷ ୩୦ ହଜାର ଟଙ୍କା । ୰ପ୍ରହରାଜଙ୍କ ଭାଷାକୋଷକୁ ଦଶହଜାର ଟଙ୍କା । ୰ଚନ୍ଦ୍ରାମଣି ମହାନ୍ତିଙ୍କ ଗ୍ରନ୍ଥାବଳୀର ସେ ପ୍ରଧାନ ପୃଷ୍ଠପୋଷକ । ନୀଳକଣ୍ଠଙ୍କ 'ନବଭାରତ' ତାଙ୍କର ବିପୁଳ ଦାନ ପାଇଥିଲା । ଶ୍ରୀବୈକୁଣ୍ଠନାଥ ପଟ୍ଟନାୟକଙ୍କ କବିତା ବହି ଓ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁଙ୍କ Hill tribes of Jeypore ସେ ନିଜ ଖର୍ଚ୍ଚରେ ଛପାଇଥିଲେ ଏବଂ ଅନେକ ଓଡ଼ିଆ କବି, ପଣ୍ଡିତ, ଛାତ୍ର ଓ ଅନୁଷ୍ଠାନ ତାଙ୍କଠାରୁ ଦାନ ପାଇଛନ୍ତି । ତାହା ଛଡ଼ା ତେଲୁଗୁ ପଣ୍ଡିତ-ମାନଙ୍କୁ ତାଙ୍କର ସହସ୍ର ସହସ୍ର ଟଙ୍କା ଦାନ, ବିଶାଖପାଟଣାର ନାରୀ ଚିକିତ୍ସା-ଳୟ, Industrial Museum, ଅନ୍ଧ୍ର ରଙ୍ଗମଞ୍ଚ ଏ ସବୁ ଦେଶରେ ତାଙ୍କର ଅକ୍ଷୟ କୀର୍ତ୍ତି ଏବଂ ସେ ଦେଶର ଅଗଣନ ଲୋକ ତାଙ୍କର ଅନ୍ନରେ ପ୍ରତି-ପାଳିତ । ସେ ଜଣେ ଉଚ୍ଚ କୋଟିର କର୍ମୀ । ନିଜେ ଭାରତୀୟ ଜାତୀୟ କଂଗ୍ରେସର ସଭ୍ୟ ଥିଲେ ବୋଲି ସେ ଗର୍ବ ଅନୁଭବ କରନ୍ତି । ସେ ବିଶାଖ-

ପାଠଶାଳ 'ଓଡ଼ିଆ ସମାଜର' ପ୍ରତିଷ୍ଠାତା, ଦେଶମିଶ୍ରଣ ଆନ୍ଦୋଳନରେ ଜଣେ ପ୍ରଧାନ ଉଦ୍ୟୋକ୍ତା ଏବଂ ୧୯୧୪ ସାଲର ଉତ୍କଳ ସମ୍ମେଳନୀର ସଭାପତି, ଯାହାଙ୍କ ଶପଥସୂତ୍ରରେ ଉତ୍କଳର ବ୍ୟାସକବି ଫକୀରମୋହନ ଉତ୍କଳଭ୍ରମଣରେ ଲେଖିଛନ୍ତି :—

"ଏହିପରି ଜଣେ ଯେବେ ଥାଆନ୍ତେ ଉତ୍କଳେ
ଭୁଲିଥାନ୍ତି ମୁହିଁ ଦାରି ପରାଭ ଜାଣରେ" ।

ଅନ୍ଧ୍ରଦେଶରେ ସେ ଅନ୍ଧ୍ର-ଜାତୀୟ ଜୀବନର ଅଧିପତି । ୧୯୧୭ ରେ ସେ ଅନ୍ଧ୍ରଇଣ୍ଡିଆନ୍ କନ୍‌ଫରେନ୍ସର ସଭାପତି ହୋଇଥିଲେ । ୧୯୨୩ ରେ ଅନ୍ଧ୍ର ସାହିତ୍ୟ ପରିଷଦର ସଭାପତି ହୋଇଥିଲେ । ତାଙ୍କୁ ଅନ୍ଧ୍ର ଭାରତୀ ତୀର୍ଥ ୧୯୩୩ରେ 'ସାହିତ୍ୟସମ୍ରାଟ୍' Lord of Letters', ଅନ୍ଧ୍ର ବିଶ୍ୱବିଦ୍ୟାଳୟ ୧୯୩୮ରେ 'କଳାପ୍ରପୂର୍ଣ୍ଣ' D. Litt ଉପାଧିମାନ ଦେଲାପରେ କ୍ଷତ୍ରିୟ ସମାଜର ସଭାପତି ହୋଇ ଶ୍ରୀମ ବରମ୍‌ପୁରରେ ଯେତେବେଳେ ସେ ପଦାର୍ପଣ କଲେ, ସେତେବେଳେ ୩୫୦ ମୈଷ୍ଟ୍ରୁଣ୍ଡ ଯୋଗୁ ହୋଇଥିବା ସୁସଜ୍ଜିତ ବିମାନରେ ତାଙ୍କୁ ବସାଇ ଅଭିନନ୍ଦନ ଦିଆ ହୋଇଥିଲା ଏବଂ ଓ୍ୱାଲ୍‌ଟେୟାରରେ Jeypore College of Technology & Sciences ଆଗରେ ତାଙ୍କର ମୂର୍ତ୍ତି ପ୍ରତିମୂର୍ତ୍ତି ଉଦ୍‌ଘାଟନ କଲାବେଳେ ଶ୍ରୀମତୀ ସରୋଜିନୀ ନାଇଡୁ ଯେପରି ଭାଷାରେ ତାଙ୍କୁ ଅଭିନନ୍ଦନ କରିଥିଲେ ତାହା କେବଳ ଦେବତାମାନଙ୍କୁ ସମ୍ଭବ । ନାନା ଦେଶୀ ନାନା ଭାଷାରେ ତାଙ୍କୁ ପ୍ରଶଂସା କରନ୍ତି, ଓଡ଼ିଶାରେ ଚନ୍ଦ୍ରମଣି ମହାପାତ୍ରଙ୍କର 'ଜୟପୁର' ତାହାର ନମୁନା ମାତ୍ର । ଅନ୍ଧ୍ର ଦେଶରେ ତାଙ୍କ ପ୍ରଶଂସା କରି ଯାହା ଲେଖା ହୋଇଛି ତାହା ଅନେକ ବଡ଼ ପୁସ୍ତକ ହେବ ଏବଂ ଜୟପୁରର ମହାପଣ୍ଡିତ—ସଦ୍ୟ କରେ ଯେଉଁ 'ଜୟପୁର ରାଜ ବଂଶାବଳୀ' ଲେଖିଛନ୍ତି ତାହା ଦକ୍ଷିଣଦେଶରେ କଲେଜ-ପାଠ୍ୟ ।

ଏହି ପ୍ରକାର ମହାପ୍ରାଣଙ୍କର ଓଡ଼ିଆ ରଚନାବଳୀ ଏକତ୍ର ହୋଇ ଏଥିରେ ପ୍ରକାଶିତ ହେଲା । ଆଧୁନିକ ଓଡ଼ିଆ ସାହିତ୍ୟିକମାନଙ୍କ ମଧ୍ୟରୁ ଅନେକଙ୍କର ଜନ୍ମପୂର୍ବରୁ ସେ ବନ୍ଦେବଦେବ ବର୍ମ 'ପ୍ରଦୀପ', 'ମୁକୁର', 'ଉତ୍କଳସାହିତ୍ୟ' ପ୍ରଭୃତିରେ ଜଣେ ପ୍ରଧାନ ଲେଖକ ଥିଲେ । ତାହା ପରେ ମଧ୍ୟ ଅନେକାଂଶ ପତ୍ରିକାରେ ସେ ଲେଖୁଥିଲେ । ସେ ତେଲୁଗୁ, ସଂସ୍କୃତ ଏବଂ ଓଡ଼ିଆ ଏ ତିନି ଭାଷାରେ ଲେଖନ୍ତି । ତେଲୁଗୁ ପତ୍ରିକାମାନଙ୍କରେ ତାଙ୍କର ଅନେକ ରଚନା ଛଡ଼ା ଅନ୍ଧ୍ରଭାଷାରୁ ତାଙ୍କର ଅନୁବାଦ 'କୃଷ୍ଣାର୍ଜୁନ ଚରିତମ୍' କାବ୍ୟ ଏବଂ "ମାନବତୀ ଦେବୀ" ନାଟକ ଯାହା ଅନ୍ଧ୍ର ବିଶ୍ୱ-

ବିଦ୍ୟାଳୟର କଲେଜପାଠ୍ୟ ହୋଇଥିଲା । ସଂସ୍କୃତରେ ସେ ଅସାଧାରଣ ପଣ୍ଡିତ ଏବଂ ଭାଷାତତ୍ତ୍ୱବିତ୍ । ଓଡ଼ିଆରେ ତାଙ୍କର "ସଙ୍ଗୀତ ରାଧାମାଧବ ନାଟକ" ସମ୍ବନ୍ଧେ ବ୍ୟାସକବି ଫକୀରମୋହନ ଲେଖିଥିଲେ :—

"ତୁମ୍ଭର କବିତ୍ୱ ରାଧାମାଧବ ନାଟକ
ପଢ଼ି ଶ୍ରବଣ କରେ ମୋର ଜୀବନ ସାର୍ଥକ ।"

ସେହିପରି ତାଙ୍କର "ଯଜୁର୍ବେଦୀୟ ସନ୍ଧ୍ୟା ପ୍ରୟୋଗ", "ଦ୍ୱିଜାଚମନ ବିଧାନ" ଏବଂ ଅସଂଖ୍ୟ ଶ୍ଲୋକମାଳିକା । ସଂସ୍କୃତ ଭାଷାରେ ତାଙ୍କର ରଚନା ଅର୍ଥ ଗୌରବ ମଣ୍ଡିତ, ସୁଲଳିତ ଏବଂ ନିର୍ଦ୍ଦୋଷ । ଓଡ଼ିଆ ଭାଷାରେ ତାଙ୍କର କୃତି ଗୁଡ଼ିକର ଅଚାର ଏବଂ ଦର ଏହି ରଚନାବଳୀରେ ସନ୍ନିବିଷ୍ଟ । ଏଥିମଧ୍ୟରୁ ଗୀତାର ଓଡ଼ିଆ ଅନୁବାଦ 'ଭଗବଦ୍ ଗୀତାମହାତ୍ମ୍ୟ', ମୋହମୁଦ୍ଗରର ଅନୁବାଦ 'ଶ୍ରୀଗୋବିନ୍ଦ ମଞ୍ଜରିକାବଳୀ', 'କାଦମ୍ବରୀ କଥା ସାର', ଗୋଟିଏ ପ୍ରାଚୀନ ସଂସ୍କୃତ ନାଟକର ଅନୁବାଦ 'ଉଜ୍ଜ୍ୱଳ କୁନ୍ଦମାଳା' ଏବଂ ହିନ୍ଦି ତୁଳସୀ-ରାମାୟଣର ଅଯୋଧ୍ୟାକାଣ୍ଡର ଓଡ଼ିଆ ଅନୁବାଦ 'ଶ୍ରୀ ତୁଳସୀ ବିଜୟ ରାମାୟଣ' ଅଛି । କବିଙ୍କର ମୌଳିକ କୃତି 'ବୁଦ୍ଧ ଚରିତ' ନାଟକ ପ୍ରସିଦ୍ଧ । ତାଙ୍କର ଅନେକ ଖଣ୍ଡ କବିତା 'ସରସ ଗୀତାବଳୀ' ଓ 'ଚକ୍ରବନ୍ଧ ମାଳିକା' ନାମରେ ପ୍ରକାଶିତ ହୋଇଥିଲା ଏବଂ ଅସଂଖ୍ୟ କବିତା ଓ ଶ୍ଲୋକ ଛିନ୍ନ ପତ୍ର ରୂପେ ଜୟପୁରର ବିଜୟ ପ୍ରେସରୁ ଅନେକ ସମୟରେ ପ୍ରକାଶ ପାଉଥାଏ । ଅବଶ୍ୟ କେତୋଟି ଏତେସ ଅଳ୍ପ ରସାତ୍ମକ କବିତା ଛଡ଼ା ତାଙ୍କର ଅଧିକାଂଶ କବିତା କ୍ରମଶଃ ଗମ୍ଭୀର ଭାବପୂର୍ଣ୍ଣ, ସ୍ତୁତି, ଜଣାଣ, ଉପଦେଶାତ୍ମକ କବିତା, ଧର୍ମ ସଙ୍ଗୀତ ଓ ନୀତିପଦ୍ୟ । ସେ ଜଣେ ଅସାଧାରଣ ପଣ୍ଡିତ ଏବଂ ଅଦ୍ୱିତୀୟ ସମାଲୋଚକ । 'ନବରସ' 'ଅଳଙ୍କାର' 'ନୃତ୍ୟକଳା', 'ସମାସ', 'ଅବର୍ଣ୍ଣ୍ୟ ବିଚାର', 'ଦୃଷ୍ଟକାବ୍ୟାନୁବାଦ', 'ସାଂଖ୍ୟ ଦର୍ଶନ' 'ମେଘଦୂତ' ପ୍ରଭୃତି ତାଙ୍କର ଉତ୍କୃଷ୍ଟ ସମାଲୋଚନା-ସାହିତ୍ୟ ଏବଂ ଅନେକ ଓଡ଼ିଆ ଗ୍ରନ୍ଥ ଯଥା 'ଗୁଣ୍ଡିଚା', 'ଧର୍ମଘଟ', 'ସମ୍ମିଳନୀ' ବିଷୟରେ ତାଙ୍କର ବିଚାର ସ୍ୱରୂପ ଖଣ୍ଡ ଖଣ୍ଡ ପ୍ରବନ୍ଧ ଅଛି । ଗଦ୍ୟ ସାହିତ୍ୟରେ ତାଙ୍କର ଅନେକ ପ୍ରବନ୍ଧ ଏବଂ କ୍ଷୁଦ୍ର ଗଳ୍ପ ଅଛି ଏବଂ ଓଡ଼ିଶା ଗଦ୍ୟ ସାହିତ୍ୟର କ୍ରମବିକାଶର ଇତିହାସ କଲେ ସେ ଗୁଡ଼ିକ ପ୍ରଣିଧାନଯୋଗ୍ୟ । ପ୍ରାକୃତିକ ଉତ୍କଳର ଭୂସ୍ୱର୍ଗ ପରି, ଚିରହରିତ ପର୍ବତମାଳା ଅବୋଧ ସୁନ୍ଦର କୋରାପୁଟ ଓ ଗଙ୍ଗରାଜ ମାଡ଼ଗୁଳ ଅଞ୍ଚଳ । ସେଠି ଋଷି ଦେବ ପାହାଡ଼ ଓ ଦେବକୋଟର ପ୍ରାଚୀନ ଅନାମ ମନୁଷ୍ୟର ବସତି । ସେଠି ରାମାୟଣଯୁଗର ମାଲ୍ୟବନ୍ତଗିରି, ପର୍ବତ ଓ ନଦୀ, ରାମଚନ୍ଦ୍ରଙ୍କ

ସଖା ନେଇ ପରଜା କୃଷାଣକୁଳ, ଖରଦୂଷଣ ତ୍ରିଶିରଙ୍କର ଆଧୁନିକ ସଂସ୍କରଣ ସଜାତୀୟ ସାଦୃଶ୍ୟବାଚକ । ରାଜନୈତିକ ପରିବର୍ତ୍ତନାଦି ଘଟିଛି ଆଜି ଗଙ୍ଗରାଜ ମାଡ଼୍‌ଗୁଲର ଓଡ଼ିଆ ପୁଅ ମାନ୍ଦ୍ରାଜର ପ୍ରଜା, ଡୁଡୁମା ଜଳପ୍ରପାତରୁ ମାନ୍ଦ୍ରାଜର ଅଧେ, କିନ୍ତୁ ସେଠି ମନୁଷ୍ୟ ସମାଜ ବିଶେଷ ବଦଳି ନାହିଁ । ହଜାରେ ବର୍ଷ ପୂର୍ବର ମନୁଷ୍ୟର ସ୍ମୃତି ସେହିପରି ରଖିଛି । ଆପଣା ଆପଣା ଜାତିର ପ୍ରକୃତି ସମ୍ପାଦ୍ୟ ପର୍ବତ ଖୋଲ ଭିତରେ ସେକାଳର ସମାଜକୁ ଜାଆଁଇ ରଖି ବସି ବହୁଜାତି ମନୁଷ୍ୟ, ଯେଉଁମାନେ ବୈଦିକ ପଦ୍ଧତିରେ ଅଗ୍ନିର ଗାଡ଼ିବେ ଗାଡ଼ି ରଖି ନାଆଁ ବାହାର କରନ୍ତି ଏବଂ ସେ ଦେଶରେ ଅଛି ପ୍ରାଚୀନ ଯୁଗର ସରଳତା, ସତ୍ୟପ୍ରିୟତା, ଶିଷ୍ଟାଚାର, ବିନୟ, ନିରାଡ଼ମ୍ବର ସୌନ୍ଦର୍ଯ୍ୟ । ଶ୍ରୀରାମଦେବଙ୍କର ସାହିତ୍ୟିକ ବ୍ୟକ୍ତିତ୍ୱର ପୃଷ୍ଠପଟ ଏହି, ସେ ପ୍ରାଚୀନ ଜନପଦର ଜୀବନଗତ ।

ସ୍ମୃତିବାନ୍ ପ୍ରାଚୀନ ସାହିତ୍ୟିକ, ସତସ୍ତରି ବର୍ଷ ବୟସ୍କ ଦୀର୍ଘକାୟ ବୃଦ୍ଧ, ଅଦ୍ୟାପି ସବଳ, ଅଦ୍ୟାପି କର୍ମଠ । ଘଣ୍ଟାପରେ ଘଣ୍ଟା ଠିଆ ହୋଇ କବିତା କହି ପାରନ୍ତି, ଏ ବୟସରେ ମୁଣ୍ଡା ଦୁଇକୋଶ ଚାଲନ୍ତି, ଅଦ୍ୟାପି ସାହିତ୍ୟଚର୍ଚ୍ଚା କରନ୍ତି, ରଚନା କରନ୍ତି । ପ୍ରାଚୀନ ଅଗ୍ନିର, ମସ୍ତକରେ ଶିଖା, ପରିଧେୟ ସାଧାରଣ ଓ ଅତି ନିରାଡ଼ମ୍ବର, ସାଦେକା ଖାଦ୍ୟ ଛୁଅନ୍ତି ନାହିଁ, ଚିନି ପରିବର୍ତ୍ତେ ଗୁଡ଼ ଖାଆନ୍ତି, ସିଗାରେଟ୍ ପରିବର୍ତ୍ତେ ପିକା ଟାଣନ୍ତି । ତାଙ୍କର ପ୍ରିୟ ଖାଦ୍ୟ ଓଡ଼ିଆ ପିଠାପଣା ଓ ଅଦାପିଆଜ ମିଶିଥିବା ଗୁଡ଼ଦିଆ କପି । ଯାହାକରେ ଅତି ନିଷ୍ଠାପର, ଏକାଦଶୀ, ବ୍ରତ, ଉପବାସ ଯଥା ନିୟମରେ କରନ୍ତି ଏବଂ ଯଥା ନିୟମରେ ପୂଜା କରନ୍ତି । ଆପଣା ଚରିତ୍ରରେ ପ୍ରାଚୀନ ସ୍ମୃତିର ପ୍ରତୀକ ନିୟମ ଓ ସଦ୍‌ଗୁଣ ଧାରଣ କରିବାକୁ ସେ ସଦା ପ୍ରୟାସୀ ଲୋଭ ନାହିଁ, ଦମ୍ଭ ନାହିଁ, ଅତି ସରଳ । ଆପଣାକୁ ତୁଚ୍ଛ ଜ୍ଞାନ କରନ୍ତି । ପରକୁ "ମହାଶୟ ! ମହାଶୟ !" ସମ୍ବୋଧନ କରି ବହୁମାନ କରନ୍ତି ତାଙ୍କ ପରି ଲୋକଙ୍କର ଅଦ୍ଭୁତ ବିନୟ ଦେଖି ଆଶ୍ଚର୍ଯ୍ୟ ଲାଗେ । ତାଙ୍କର ନାମ ଅତି ଦୂର, ସେ ନିଜର ଗୌରବ ବା ଖ୍ୟାତିକୁ ମୋଡ଼ି ତାହାର ପ୍ରଭାବରେ ପଡ଼ିବାକୁ ଚାହାନ୍ତି ନାହିଁ ଏବଂ ପରର ଉପକାର କରିବା ଛଡ଼ା ଅନ୍ୟ ସମୟରେ ଆପଣାର ସାହିତ୍ୟଚର୍ଚ୍ଚା ଓ ଭଗବଦ୍‌ଚିନ୍ତାରେ ବୁଡ଼ି ରହିଥାନ୍ତି । ତାଙ୍କର ଏହି ବ୍ୟକ୍ତିତ୍ୱର ପ୍ରଭାବ ତାଙ୍କର ରଚନାବଳୀର ରୁଚି, ବିଷୟ ବସ୍ତୁ, ଭାଷା, ଛନ୍ଦ ଓ ଶୈଳୀ ଉପରେ ପଡ଼ିଛି ଏବଂ ସେ ଗ୍ରନ୍ଥକୁ ବୁଝିବାକୁ ହେଲେ ଏହି ବ୍ୟକ୍ତିତ୍ୱର ପରିଚୟ ଆବଶ୍ୟକ ।

ଶ୍ରୀ ବିକ୍ରମଦେବ ବର୍ମାଙ୍କର ବ୍ୟକ୍ତିତ୍ୱର ଗଠନକୁ ଏବଂ ତାଙ୍କର ସାହିତ୍ୟକୁ ତାଙ୍କର ଜୀବନୀ ହିଁ ଗୋଟିଏ ବିଶିଷ୍ଟ ମୌଳିକ ରୂପ ଦେଇଅଛି । ତାଙ୍କର ପିତା ଶ୍ରୀକୃଷ୍ଣଚନ୍ଦ୍ର ଦେବ ଜୟପୁର ରାଜବଂଶଜ । ସେ ମାନ୍ଦ୍ରାଜର ଶିକାକୋଲ୍ ତାଲୁକାର ପର୍ବତାଲ୍‌ପେଠ ବ୍ରାହ୍ମଣଶାସନରେ ରହୁଥିଲା ସମୟରେ ସେଠାରେ ତା ୨୮।୬।୧୮୬୯ ରିଖରେ ବିକ୍ରମଦେବ ଜନ୍ମ ହୋଇଥିଲେ । ଅତଏବ ଜନ୍ମତାରିଖ ଅନୁସାରେ ସେ ଉନ୍ବିଂଶ ଯୁଗର, ଯେତେବେଳେ ଆମ ଦେଶରେ ନୀତି, ବିନୟ, ବ୍ରହ୍ମଚର୍ଯ୍ୟ, ଆଧ୍ୟାତ୍ମିକତା ପ୍ରଭୃତି ଆଦର୍ଶ ହୋଇଥିଲା ଓ ସଂସ୍କୃତ ହିଁ ସମ୍ମାନାର୍ହ ବିଦ୍ୟା ହୋଇଥିଲା । ଜନ୍ମକାଳରୁ ତାଙ୍କ ଉପରେ ଅନ୍ଧ୍ରପରିବେଷ୍ଟନୀର ପ୍ରଭାବ ପଡ଼ିଥିଲା । ସେଠାରେ ୩ବର୍ଷ କାଳ ସେ ତେଲୁଗୁ ପ୍ରାଥମିକ ବିଦ୍ୟାଳୟରେ ପଢ଼ିଥିଲେ ଏବଂ ଜଣେ ବୃତ୍ତିରାଜ ତାଙ୍କୁ ତେଲୁଗୁ ଭାଷାରେ ବାଲରାମାୟଣ, ନୀତିମଞ୍ଜରୀ ଓ କୃଷ୍ଣଶତକ ପଢ଼ାଇଥିଲେ । ବିକ୍ରମଦେବ ଘରେ କିଛି ଓଡ଼ିଆ ପଢ଼ିଥିଲେ । ତାଙ୍କ ପୁରୋହିତଙ୍କ ଭାଇ ରଘୁନାଥ ରଥ ତାଙ୍କୁ କେଶବ କୋଇଲି, ବାରମାସୀ କୋଇଲି, ଗୋପୀଭାଷା, ଗୋପଲୀଳା ପ୍ରଭୃତି ପଢ଼ାଇଥିଲେ । ପରେ ସାହି-ତ୍ୟରେ ବିକ୍ରମଦେବ ଆପଣାର କାବ୍ୟ ଓ କବିତାରେ ସରଳ ଓଡ଼ିଆ ଭାଷା ବ୍ୟବହାର କଲେ ଏବଂ ନିଜର ଅସାଧାରଣ ସଂସ୍କୃତଚର୍ଚ୍ଚା ଯୋଗୁଁ ସେଥିରେ ସଂସ୍କୃତ ସାହିତ୍ୟର ନୀତି ଏବଂ ବ୍ୟାକରଣ ଅବଲମ୍ବନ କଲେ । ୧୮୬୫ ରୁ ୧୮୭୫ ପର୍ଯ୍ୟନ୍ତ ସେ ମାଡ଼ୁଗୁଲ ସହରରେ ରହିଥିଲେ । ୧୮୮୫ ରୁ ୧୯୩୧ ପର୍ଯ୍ୟନ୍ତ ବିଶାଖପାଟଣାରେ ଥିଲେ ଏବଂ ତହିଁରୁ ପ୍ରଥମ ଦଶବର୍ଷ ଘରେ ପଢ଼ି ସଂସ୍କୃତ, ତେଲୁଗୁ, ଓଡ଼ିଆ ଓ ହିନ୍ଦୀସାହିତ୍ୟରେ ଦୁର୍ଦ୍ଧର୍ଷ ପଣ୍ଡିତ ହେଲେ ଏବଂ ସାହେବ ଶିକ୍ଷକ ରଖି ଇଂରେଜୀ ଶିଖିଲେ । ତେଲୁଗୁ ସାହିତ୍ୟ ମଧ୍ୟ ସଂସ୍କୃତ ସାହିତ୍ୟର ନିୟମର ଅନୁଗତ ଏବଂ ଅଦ୍ୟାବଧି ତେଲୁଗୁ କାବ୍ୟ ଦୀର୍ଘ-ସମାସ ଉପମା ମଣ୍ଡିତ ଏବଂ ତେଲୁଗୁ ନାଟ୍ୟକଳା ଭରତନାଟ୍ୟସୂତ୍ରରେ ଗ୍ରଥିତ । ଏହି ପ୍ରକାର ସଂସ୍କୃତ ନିୟମର ପ୍ରଭାବ ବିକ୍ରମଦେବଙ୍କ ସାହିତ୍ୟ ଉପରେ ପଡ଼ିଥିଲା । ତେଣୁ ସେଥିରେ ଯମକ, ଅନୁପ୍ରାସ, ଅଳଙ୍କାର ଆଦି, ଶୁଦ୍ଧ ରସ ଓ ସଂସ୍କୃତ ବ୍ୟାକରଣର ନିୟମ ବିଶିଷ୍ଟ ଭାବରେ ଅଛି । ଆପଣା ଜୀବନର ୬୨ ବର୍ଷ କାଳ ତେଲୁଗୁ ଦେଶରେ ରହି ସେ ଦେଶର କର୍ଣ୍ଣଧାର ହେବା ସଙ୍ଗେ ସଙ୍ଗେ ସେ ଅନ୍ଧ୍ର ସାହିତ୍ୟର ଯଶସ୍ୱୀ ଲେଖକ ହେଲେ ।

ତାଙ୍କର ସହଜ ମନରେ ଏହି ପ୍ରଭାବର ପ୍ରତିକ୍ରିୟା ସ୍ୱରୂପ ଆପଣାର ଜାତୀୟତା ବଜାୟ ରଖିବା ଉଦ୍ଦେଶ୍ୟ ସ୍ୱଭାବତଃ ପ୍ରବଳ ହୋଇଥିବ ଏବଂ

ସେହି ମନସ୍ତତ୍ତ୍ୱ ଅନୁଯାୟୀ ସେ ତେଲୁଗୁ ଅର୍ଥାତ୍ ସଂସ୍କୃତ ଶବ୍ଦ ପ୍ରୟୋଗରୁ ଆପଣାକୁ ମୁକ୍ତ କରି ନେଇ କଥିତ ସରଳ ଓଡ଼ିଆଭାଷାରେ ତାଙ୍କର ଅଧିକାଂଶ କାବ୍ୟ ଓ କବିତା ଲେଖିଛନ୍ତି ଏବଂ ପ୍ରାଚୀନ ଓଡ଼ିଆ କବିମାନଙ୍କର ଆଦର୍ଶ ତାଙ୍କୁ ପ୍ରଭାବିତ କରିଛି । ୯ବର୍ଷ ବୟସରେ ତାଙ୍କର ମାତାଙ୍କର ଏବଂ ୧୫ବର୍ଷ ବୟସରେ ତାଙ୍କର ପିତାଙ୍କର ଦେହାନ୍ତ ହୋଇଥିଲା । ତାଙ୍କର ଧର୍ମିକ ବୈଚିତ୍ର୍ୟ, ଉଦାସୀନତା ଓ ଅଧ୍ୟାତ୍ମ କଥା ସେହି ଦାରୁଣ ଆଘାତର ପ୍ରତିଫଳ । ୨୩ ବର୍ଷ ବୟସରେ ତା ୫।୫।୮୭୧ ଖରେ ସେ ଜୟପୁରର ମହାରାଜ ହେଲେ । ତାହା ପୂର୍ବରୁ ଅନେକ ସମୟରେ ଅନେକ ପ୍ରକାର ଭାଗ୍ୟବିପର୍ଯ୍ୟୟ ତାଙ୍କୁ ସହିବାକୁ ପଡ଼ିଥିଲା । ସେହି କାରଣରୁ ସାଧାରଣ ରାଜାମାନଙ୍କର କୌଣସି ପ୍ରକାର ବିଳାସ, ବ୍ୟସନ, ଗର୍ବ, ଆଡ଼ମ୍ବର ତାଙ୍କର ନାହିଁ । ତାଙ୍କ ଚରିତ୍ରରେ କ୍ରୂରତା ନାହିଁ ଏବଂ ସେ ଧୀର, ପ୍ରାଜ୍ଞ, ସମଦର୍ଶୀ ଓ ଅଭିମାନ-ଶୂନ୍ୟ ଏବଂ ପରଦୁଃଖକାତର । ରାଜପଦର ଲହଡ଼ି ଆସିବା ପୂର୍ବରୁ ସେ ଆପଣା ଚରିତ୍ରକୁ ଦୃଢ଼ କରି ଗଢ଼ି ସାରିଥିଲେ । ସେହି କାରଣରୁ ମଧ୍ୟ ସେ ରାଜକାର୍ଯ୍ୟର କୋଳାହଳରୁ ସମ୍ପୂର୍ଣ୍ଣ ନିର୍ଲିପ୍ତ ଏବଂ ଅଶୋର ସଂସ୍କୃତରେ ନିମଗ୍ନ ଏବଂ ତେଣୁ ସାହିତ୍ୟ ତାଙ୍କର ବ୍ୟସନ ନୁହେଁ, ତାଙ୍କର ଜୀବନ ।

କବିଙ୍କ ଏହି ପ୍ରକାର ବ୍ୟକ୍ତିତ୍ୱର ପରିଚୟ ମଧ୍ୟ ମିଳେ ତାଙ୍କ ସାହିତ୍ୟରୁ, କାରଣ ତାଙ୍କର ସାହିତ୍ୟ ସେହି ଜାତିର ସାହିତ୍ୟ, ଯହିଁରେ କବି ଆପଣାକୁ ହିଁ ପ୍ରକାଶ କରିଥାନ୍ତି । ସାଧାରଣ କୈଶୋରମନର ପ୍ରତିଛବି ପରି 'ଏବସଗୀତାବଳୀ', ସେଥିରେ ଦେହର ଆକାଂକ୍ଷା ଅତି ଉଗ୍ର ଏବଂ ଚେତନାର ଅଧିକାଂଶ ନାହିଁ ହିଁ । ଅପର ବୟସର କବିତା କିନ୍ତୁ ପ୍ରକୃତ ପ୍ରାଚୀନ କବିଙ୍କ ଛାଞ୍ଚରେ ଢଳା ହୋଇଛି । ସେ ସମୟର ଅଣଚିତ୍ର ସିଧା, ସଳଖ, ସରଳ ଓ ପ୍ରାକୃତ ଥିଲା ଏବଂ ତହିଁରେ ବଳ ଥିଲା । ଦୁର୍ବଳ ଦୀର୍ଘଶ୍ୱାସମୟ Neurotic କବିତାର ଉପାସକମାନେ ସେପରି ଅଭିବ୍ୟକ୍ତିକୁ ନାକ ଟେକି ଇଞ୍ଜସୁଗର କଳ ଠାରୁ ବହୁକାଳ ପଛରେ ରହିଲା ପରେ ସ୍ୱ.ଠ୍ମାନଙ୍କ ସାହିତ୍ୟ ଓ ଅଧୁନାତ Realism ବାଟେ ତାହାର ଜାଗରଣ ହୋଇଛି । ରାଜମଦେବଙ୍କ କବିତା ସ୍ଥାନେ ସ୍ଥାନେ Metaphysical ହୋଇଯାଇଛି । ତାହାର ଉଦାହରଣ ସ୍ୱରୂପ :—

"ହୃଦ୍ୟ ଏବେ ମୋର ଗତ କେ ନୁ ଅଟେ ରସବତୀ
ନିଧୁନ କରିବ ତୁହଁ, ଚୋ ଟେମୋଳ ପଣ୍ଡିତ"
( ମୁଁରେ ରମଣୀ ମନ୍ତ୍ର— )

ଏବଂ ଉପାସ୍ୟ ଚତୁଷ୍ଟୟର ଉଦାହରଣ ସ୍ୱରୂପ ଲେଖାହୋଇଥିବା—

"କି ରୂପାଦ୍ୟ ଅଙ୍ଗ ଭରବ ପ୍ରାଣବାନ୍ଧବା" ଗୀତଟି ଦେଖାଯାଇପାରେ । ଏପରି ଗୀତ ଖୁବ୍ ଅଳ୍ପ । ୧୯୦୮ ସାଲରେ କବିଙ୍କର ବିବାହ ହେଲା । ତେଉଁଥିରୁ ମାନସିକ ଦ୍ୱନ୍ଦ୍ୱପ୍ରତିକ୍ରିୟା ବିଚାର ଛଳରେ ଏହି ପ୍ରକାର ଦୈହିକ କ୍ଷୁଧାର, ସେଥିରୁ ସନ୍ତୋଷ ହେତୁ ରହିଲା ନାହିଁ । କ୍ରମେ ମନ ନାରୀଙ୍କୁ କେବଳ ଫଳଦାୟିକା ବୋଲି ନ ଭାବି ତା'ର ବିଧାତାସୃଷ୍ଟ ସୌନ୍ଦର୍ଯ୍ୟକୁ ସୌନ୍ଦର୍ଯ୍ୟ-ଗ୍ରାହୀପଣ ହୋଇ ଦେଖି ଲାଗିଲା । ଏପରି ମାନସିକ ଅବସ୍ଥାର ଫଳ ସ୍ୱରୂପ "କିଏ ଦେଖିଲାରେ ନୟନ ବେନି ମୋହର" ପ୍ରଭୃତି କବିତା । କବି ଲେଖିଲେ :—

''ଗେଲେ ନବବାଳୀ ମନେ ମନେ ଗୃହକୁ, ହରେ ମନ ଧୀରଙ୍କର<br>
ଧର୍ମରେ ଚପଳା ନିର୍ମିତ ପିତୁଳା ଧୀରେ କି କରେ ବିହାର ।<br>
ପ୍ରଲମ୍ବ କୁନ୍ତଳ ଖୋପାରେ ମଞ୍ଜୁଳ ଶୋଭିତ ମଲ୍ଲୀସର<br>
କାଳିନ୍ଦୀ ମଧ୍ୟରେ ବଳେ କି ସୁନ୍ଦରେ ଗଙ୍ଗା ହୋଇ ଧାର ଧାର ।"

ଜ୍ଞାନଚର୍ଚ୍ଚା ଓ ବୟୋବୃଦ୍ଧି ସଙ୍ଗେ ସଙ୍ଗେ କ୍ରମେ କବିଙ୍କ ମନ ଭଗବତ୍ ଭକ୍ତିକୁ ଆସିଲା । ତାହାପରେ ତାଙ୍କର ସମୁଦାୟ ସାହିତ୍ୟ ଧର୍ମ-ସମ୍ବନ୍ଧୀୟ ଅଥବା ନୀତିସମ୍ବନ୍ଧୀୟ । ଏଥିରେ ମଧ୍ୟ ମନର ଭିନ୍ନ ଭିନ୍ନ କ୍ରମରେ ଭିନ୍ନ ଭିନ୍ନ ସ୍ତରର କବିତା ଜନ୍ମ ହୋଇଛି । ପ୍ରଥମ ସ୍ତରରେ ନିଜର ଅନୁଭୂତ ରୂପରେ ଶାସ୍ତ୍ରରୁ ନେଇଥିବା ଧର୍ମଭାବର ପ୍ରଭାବ ଅଧିକ । ଏପରି ପଦ୍ୟାବଳୀରେ ସଂସ୍କୃତ ଭାଷା କିମ୍ବା ପ୍ରାଚୀନ ଓଡ଼ିଆ ଧର୍ମଗ୍ରନ୍ଥର ପ୍ରଭାବ ହିଁ ଅଧିକ ଦେଖାଯାଏ । ସଂସ୍କୃତ ଶ୍ଳୋକର ଓଡ଼ିଆ ଅର୍ଥ ବା ସଂସ୍କୃତ ଶାସ୍ତ୍ରର ଓଡ଼ିଆ ଅନୁବାଦଗୁଡ଼ିକ କବିଙ୍କର ଏହି ମାନସିକ ସ୍ତରର ମାନସପୁତ୍ର । 'ରତ୍ନରମାଳିକା' 'ଗୋବିନ୍ଦ ମାଧବ ଗୋପାଳ କେଶବ, 'ନେତ୍ର-ରହସ୍ୟ', ଅଷ୍ଟକ, କବଚ, ସ୍ତବ ପ୍ରଭୃତି, ଶ୍ରୀଗୋବିନ୍ଦସ୍ତବଚାବଳୀ, ତୁଳସୀ ରାମାୟଣ ପ୍ରଭୃତି ଏହି ଶ୍ରେଣୀର । କବି ପ୍ରବୀଣ ହୋଇଗଲେ, ଅନେକ ସମୟରେ ନାନା ରୂପରେ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ ଓ ଜଣାଣ କରିବାକୁ ଲାଗିଲେ । ନାମ-କୀର୍ତ୍ତନ ଓ ମହିମା-ବର୍ଣ୍ଣନର କବିତା ଗୁଡ଼ିକ ଏହି ସମୟର । ଅନାସକ୍ତି ବଢ଼ିଗଲା, ଧର୍ମ ଓ ଧ୍ୟାନ ଛଡ଼ା ଅନ୍ୟ କେଉଁଥିରେ ମନ ରହିଲା ନାହିଁ ! ଏହିପରି ମନୋଭାବର ଧର୍ମ-ସଙ୍ଗୀତ ଗୁଡ଼ିକ କ୍ଷୁଦ୍ର, ମୌଳିକ ଏବଂ ରୂପବହୁଳ । 'କରୁଣାକରେ କର କରୁଣାର ସାଗର," "ଗୋବିନ୍ଦ ମାଧବ ଗୋପାଳ କେଶବ ପାପସମୂହ ବିନାଶ," 'ଗୌରସ୍ତବ' ପ୍ରଭୃତି ପଦ୍ୟ ଏହି ପ୍ରକାରର । ଜୀବନରେ ଅନେକର

ଅତଏବ ସେ ଲୋକମାନଙ୍କର କଲ୍ୟାଣ ଲାଗି ଏହି ମାନସିକ ଅବସ୍ଥାରେ କଣ·
ପଦ୍ୟରେ ଓ ଗଦ୍ୟରେ ତାଙ୍କର ଅଧିକାଂଶ ରଚନାରେ ଅନେକ ନୀତିକଥା
ଲେଖିଛନ୍ତି । ଏହି ନୀତିକଥା ସୁକ୍ତ ସରଳ ଓ ଦୃଢ଼ ! ଜୀବନର ନାନାଦି·
ଅବସ୍ଥା ସହିତ ତାଙ୍କର ନିବିଡ଼ ପରିଚୟ ଥିବାରୁ ଭଲଠୁଁ ମନ୍ଦଯାକେ ସମସ୍ତଙ୍କ
ପ୍ରତି ତାଙ୍କର ସହାନୁଭୂତି ଅଛି । କୌଣସି ମନୁଷ୍ୟ ସମ୍ପୂର୍ଣ୍ଣ ମନ୍ଦ ଏପରି ମତ·
ତାଙ୍କର ନୁହେଁ । ତାଙ୍କର 'ଗୁରୁଦକ୍ଷିଣା' କବିତାରେ କାହାଣୀର ନାୟକ ଗୋଟିଏ
ଚୋର, ଏତେ ଦୋଷ ଥାଇ ତା'ର ଗୋଟିଏ ଗୁଣ ଥିଲା, ସେ ମିଛ କହୁ ନ ଥିଲା
ତା'ର ଏହି ସୁଗୁଣ ପାଇଁ କପରି ତା'ର ଉନ୍ନତି ହେଲା ତାହା ଏହି ଗଦ୍ୟରେ
ବର୍ଣ୍ଣିତ ହୋଇଅଛି । ସେହିପରି ସେ 'ସ୍ୱବଂଶୋପଦେଶ' ଲେଖିଛନ୍ତି । ସେ ନିଜର
କହିବାର ପ୍ରୟାସୀ ନୁହନ୍ତି । ଯେତେବେଳେ ତାଙ୍କର ବିଶ୍ୱାସ ଅସିଛି ଯେ·
କୌଣସି ରଚନାରେ ଲୋକଙ୍କର ଉପକାର ହୋଇପାରେ ସେତେବେଳେ
ସେ ଲେଖିଛନ୍ତି । ତୁଳସୀ ଦାସଙ୍କ ରାମାୟଣକୁ ସେ ଅନୁବାଦ କରୁଥିଲେ ।
ଅଯୋଧ୍ୟାକାଣ୍ଡ ସାରି ଯେତେବେଳେ ସେ ସମ୍ବାଦ ପାଇଲେ ଯେ ଓଡ଼ିଆ ଭାଷାରେ·
ଅନ୍ୟ କେହି ତୁଳସୀ ରାମାୟଣକୁ ଅନୁବାଦ କରି ଛାପି ସାରିଛନ୍ତି ସେତେ-
ବେଳେ ସେ ଅନୁବାଦ ବନ୍ଦ କଲେ ।

"ତା ଅନୁବାଦିତ ଅବର
ମୁଦ୍ରିତ ହୋଇବା ଖବର
ଶ୍ରୁତିରେ ପ୍ରବେଶି ଜାଣିଲି
ଉତ୍ତର କାଣ୍ଡ ନ ବଟିଲି ।"

ତାଙ୍କର ସହାନୁଭୂତି ଓ ସତ୍ୟବୋଧର ଦୃଷ୍ଟାନ୍ତ ତାଙ୍କର ଜୀବନୀ ।

"ନିର୍ହେତୁକା ପ୍ରୀତି କୃପା ବୋଲାଏ ଜଗତେ
... ... ...
କୃପାପୂର୍ଣ୍ଣ ହୃଦୟରେ ଭେଦାଭେଦ ଜ୍ଞାନ
ପାତ୍ରାପାତ୍ର ବିବେଚନ ନ ଲଭନ୍ତି ସ୍ଥାନ"

ଏହିପରି ସେ ଲେଖିଛନ୍ତି ଏବଂ ଏହିପରି ତାଙ୍କର ଚରିତ । ଅଳ୍ପ
କଥାରେ ସବୁ ଧର୍ମ ସାର ପ୍ରକାଶି ସେ ଲେଖିଛନ୍ତି :—

"ଅଦ୍ୱୈତେ ଜ୍ଞାନ, ସେବାଂରେ କର୍ମ ଦ୍ୱୈତେ ଭକ୍ତି
ଇଷ୍ଟାଙ୍ଗରେ ସମର୍ପଣ କୌଶଲେ ବୈରାଗ୍ୟ
ପରନିନ୍ଦା ଲାଭହୁକ୍ତେ ନପ୍ରଚ ସ୍ତୁତିମନେ
ଅହିଂସା କୈଳେ ସାଧୁତା ଇନ୍ଦ୍ରିୟାନ୍ତ ମନେ

ଏ ମତମାନଙ୍କରେ ଏ ନବକ ପ୍ରଧାନ
ସାଧାରଣ ଧର୍ମମାନ ସବୁରେ ସମାନ ॥

ଏହିପରି ଜ୍ଞାନୀ ଅଥଚ ଦୈନନ୍ଦିନ ଜୀବନରେ ଅତି ନମ୍ର ଅତି ବିନୟୀ କବି ନିହିତ ସତ୍ୟକୁ ଅବଲମ୍ବନ କରି ଆଡ଼ମ୍ବର ଶୂନ୍ୟ ହୋଇଛନ୍ତି । ତାଙ୍କର ଏହି ଚରିତ୍ରର ଆଦର୍ଶ ତାଙ୍କର ଗୋଟିଏ ପଦ୍ୟରୁ ଜଣାପଡ଼େ :—

"ପରମ ପବିତ୍ରଙ୍କୁ ଅଭିଷେକ କାହିଁକି
ଦିଗ୍‌ବସନଙ୍କୁ କିମ୍ପା ବସ୍ତ୍ରସୂତ୍ର
ଯଜ୍ଞନାଶଙ୍କୁ ଯଜ୍ଞସୂତ୍ର କି ହେତୁରୁ
ଚନ୍ଦ୍ରଲେପଙ୍କୁ କିପାଁ ମଳୟ ଗନ୍ଧ
ବ୍ୟୋମକେଶଙ୍କୁ ପୁଷ୍ପନିଚୟ କି ହେତୁରୁ
ଧୂପ କିପାଇଁ ଘ୍ରାଣ ଗ୍ରହଙ୍କୁ—…"

ବାସ୍ତବରେ ଓ କାର୍ଯ୍ୟରେ ଏହି ଆଦର୍ଶର ଉପାସକ ହୋଇଥିବାରୁ ପ୍ରତ୍ୟେକ ପ୍ରକାର ଭଣ୍ଡପଣିଆର ସେ ବିରୋଧୀ । 'ଭଣ୍ଡଧର୍ମୀ' ବୋଲି ତାଙ୍କର ଗୋଟିଏ ପ୍ରବନ୍ଧ ଅଛି ଏବଂ ସେମାନଙ୍କୁ ଶ୍ରେଣୀ ବିଭାଗ କରି ହାସ୍ୟରସରେ ପଖାଳିବା ପାଇଁ ସେ ଗୋଟିଏ ପଦ୍ୟ ଲେଖିଛନ୍ତି—

" ନାହିଁ ନାହିଁ ଟଳେ । ମୁକ୍ତି ଭାବିଲେ ।
ପ୍ରାତଃ ସମୟରେ କାଠର ପାଣିରେ ପାଣିକୁଅ ପରି ବୁଡ଼ିଲେ ହେଲେ"

ଯାହାକୁ ମୀରା ଭଜନ "ନାତ ନାହିଁନସେ ହରି ମିଲତୋ ଜଲଜନ୍ତୁ ହୋଇ" ସହିତ ତୁଳନା କରାଯାଇ ପାରେ । ଆଧୁନିକ ସଭ୍ୟତା ଅନେକ ପ୍ରକାର ଲଣ୍ଡାମୀ, ଅନାଚାରିତା, ଶଠତା ଆଣିଛି ଏବଂ ଏଥିରେ ସେ ବିବ୍ରତ ଏହା ତାଙ୍କର "ନବଚଳନ" ଓ "କିହେଲା" ଏହି ଦୁଇଟି ପଦ୍ୟରେ ପରିସ୍ଫୁଟ । ସେ ଲେଖିଛନ୍ତି:-

ସଂସ୍କୃତ ଭାଷାନଭିଜ୍ଞ ବେଦାର୍ଥ କହନ୍ତି
ବ୍ୟାକରଣ ଜ୍ଞାନହୀନ କାବ୍ୟ ବିରଚନ୍ତି
ସନ୍ଦର୍ଭଜ୍ଞାନ ବିହୀନ ନାଟକ ରଚନ୍ତି
କିଛି ନ ଜାଣିବା ବ୍ୟକ୍ତି ବୋଲାଏ ପଣ୍ଡିତ

… … …

ସନ୍ଧ୍ୟା ବନ୍ଦନାନଭିଜ୍ଞ ବିପ୍ରକୁଳ ଜ୍ୟେଷ୍ଠ
ବ୍ୟାଧି ବ୍ୟାପାର ତତ୍ପର ଖବିସ୍ୱାଳ ଶ୍ରେଷ୍ଠ

… … …

ପ୍ରଜାଗଣ ପ୍ରପୀଡକ ଅଟେ ସ୍ୱଜାତୋତ୍ତମ
ଅସ୍ପୃଶ୍ୟଦ୍ୱେଷୀ ବୋଲାଏ ବିବେକ ସତ୍ତମ
... ... ...
କଳୁଷ କର୍ମ ନିବୃତ୍ତି ଖ୍ରୀଷ୍ଟିଙ୍କ ଅଗ୍ରଣୀ
ଜଗଦୀଶ ଭକ୍ତିରତ ମୂଢ଼ ଚୂଡ଼ାମଣି”

ଯେଉଁମାନେ ପାଶ୍ଚାତ୍ୟ ସଭ୍ୟତାରୁ କେବଳ ଆଡ଼ମ୍ବର ଓ ଚରିତ୍ର-ଦୋଷ ହିଁ ଶିଖନ୍ତି ସେମାନେ ଏହି କବିଙ୍କର ହାସ୍ୟର ପାତ୍ର । ବିଲାତ ଯିବା ଲୋକଙ୍କ ସମ୍ବନ୍ଧେ ସେ ଲେଖିଛନ୍ତି :—

“ଖ୍ରୀଷ୍ଟ ଭକ୍ତ ପ୍ରବର ଯେ ହୁଅଇ
ଲର୍ଡ଼ସ୍ ସପର ମାତ୍ର ସେ ଲଭଇ ।
ଇଂଲଣ୍ଡକୁ ଯିବା ପ୍ରତ୍ୟେକ ନର
ସବୁ ସମୟରେ ଲର୍ଡ଼ସପର
ଲର୍ଡ଼ସ୍ ଲିଖି ଅଛ
ଲର୍ଡ଼ସ୍ ଡ଼ିନର ଲଭେ ଦେଇ ଭଜ ।”

ତାଙ୍କର ଗଳ୍ପ ‘ଗୁଣବତୀ ପତ୍ନୀ’ରେ ନାରାୟଣ ନାୟକର ପୁଅ ବିଲାତ ଫେରନ୍ତା ପୂର୍ଣ୍ଣ ଚନ୍ଦ୍ରର ଘର ବାହୁଡ଼ାରେ ସେ ଏହି ଭଳି ସମାଲୋଚନା କରିଛନ୍ତି—

“ନାରାୟଣ ଇଣ୍ଟର କ୍ଲାସ ଗାଡ଼ିରେ ଓ ସେକେଣ୍ଡ କ୍ଲାସ ଗାଡ଼ିରେ ଖୋଜି ନିଜ ତନୟଙ୍କୁ ନ ଦେଖି ଚିନ୍ତାନ୍ୱିତ ହୋଇ ଠିଆ ହୋଇଥାନ୍ତେ, ପାଦେ ବୁଟ୍, ଅଙ୍ଗେ ଓଭର କୋଟ୍, ଶିରେ ହ୍ୟାଟ୍ ଧାରଣ କରିଥିଲା ଏକ ବ୍ୟକ୍ତି ଫାଷ୍ଟ କ୍ଲାସ ଗାଡ଼ିରୁ ଓହ୍ଲାଇ ପ୍ଲାଟଫର୍ମରେ ତାର ପୂର୍ବ ପରିଚିତ ଜନୈକ ବ୍ୟକ୍ତି ଥିଲେ କେଧାରଣ କରେ ଅଙ୍ଗ୍ଲ ଭାଷାରେ ସମ୍ଭାଷଣ କରୁଥିଲା । ନାରାୟଣ ମଧ୍ୟ ସାହେବ ବୋଲିବା ଲୋକରେ କିଛି ଦୂର ଘୁଞ୍ଚିଲା । କଥୋପକଥନ କାଳେ ଥିଲା ବାକ୍ୟ ଦ୍ୱାରରେ ପ୍ରତିଷ୍ଠିତ ବ୍ୟକ୍ତି ଅପର ବ୍ୟକ୍ତିକୁ ହେଦେଶି “ଗୁଡ୍ ବାଇ ପୂର୍ଣ୍ଣଚନ୍ଦ୍ର” ବୋଲି ଯାନ୍ତେ ଅପର ବ୍ୟକ୍ତି ନିଜାସ୍ଥଳ ବୋଲି ଜାଣିବେ ତାଙ୍କ ତା କେତେକ ନାରାୟଣ ଯାଇ ସୁଦ୍ଧେତ୍ ଚହଳ ଇଲା ।

ଏହି ସବୁ ଉଦାହରଣ ଗୁଡ଼ିକରୁ ତାଙ୍କର ହାସ୍ୟପ୍ରିୟତାର ପରିଚୟ ମିଳେ । ସେ ରସପ୍ରିୟ, ଅଳଙ୍କାରୀ ଓ ହାସ୍ୟପ୍ରିୟ ଏବେ ତାଙ୍କର ପ୍ରତ୍ୟେକ ଗଦ୍ୟ ଅର୍ଥ ପୂର୍ଣ୍ଣ । ‘ନବଗୋବିନ୍ଦଚରିତ’ ବୋଲି ୫୦ ପୃଷ୍ଠ ପର୍ଯ୍ୟନ୍ତ ଯେଉଁ କଥାଗୁଡ଼ିକ ସେ ଠିକ କରିଛନ୍ତି ତହିଁରୁ ତାଙ୍କର ଏହି ଅର୍ଥପୂର୍ଣ୍ଣ ଗମ୍ଭୀର ରହସ୍ୟପ୍ରିୟତା ସ୍ପଷ୍ଟ ଜଣା ପଡ଼େ, ଉଦାହରଣ ସ୍ୱରୂପ :—

"ଅଳିଆ ଘରର ଘରେ; ପସରି ପୁରେ ପୁରେ ।
ଅଛ କାଟିବା ସୂତା ଅଜା ପଇତାକୁ ନଅଣ୍ଟ ।
ଏ ଗାଁକୁ ସେ ଗାଁ ଯେତେ ଦୂର, ସେ ଗାଁକୁ ଏ ଗାଁ ସେତେ ଦୂର ।
କଟକ ଯାଇଁ ଘୋଡ଼ାବାଲ ଅଣିଲୁ ।
ଟେଙ୍କା ମୋର, କଣ୍ଟା ତୋର ।
ଠକ ଖାଏ ଫାଙ୍କି, ରଜା ଖାଏ ଟଙ୍କି ।
ବଜାର ଖଜା, ଦେଉଳ ଦାଅଁକୁ ପୂଜା ।
ମାଙ୍କଡ଼କୁ ଦେଖି ଛୁଅ ଖେଳାଉ,
ସେ ତୋତେ ଖେଳାଏ ତୁ ଜାଣୁ ନାହୁଁ ।
ଯତ ଦେଢ଼ ସେର, ଜଠା ଅଢ଼ାଇ ସେର ।

କବି ବନମ ଦେବ ସଂସ୍କୃତ ସାହିତ୍ୟ ସୂତ୍ରକୁ ଅବଲମ୍ବନ କରନ୍ତି ଏବଂ ସେଥିରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ । ସଂସ୍କୃତ ସାହିତ୍ୟ-ସୂତ୍ର ଓ ସଂସ୍କୃତ ବ୍ୟାକରଣ ବିଷୟରେ ଚର୍ଚ୍ଚା କରି କରି ସେ କ୍ଲାନ୍ତ ହୁଅନ୍ତି ନାହିଁ । ଥରେ ଗୋଟିଏ ନାଟକର ଅଭିନୟ ଦେଖିବା ସମୟରେ ବାରମ୍ବାର ବୃନ୍ଦା ନାମଟି ଉଚ୍ଚାରିତ ହେଉଥିବା ଶୁଣି ସେ ଉଠି ପଡ଼ି ଅବର୍ଗୀବକାର ବିଷୟରେ ଗୋଟିଏ ବକ୍ତୃତା ଦେଇଥିଲେ । ଏ ବିଷୟରେ ତାଙ୍କର ରଚନାଟିଏ ମଧ୍ୟ ଅଛି । 'ନବରସ' ବିଷୟରେ ସେ ପଦ୍ୟ ଲେଖିଛନ୍ତି ଏବଂ 'ସମାସ' ବିଷୟରେ ଖଣ୍ଡିଏ ପୁସ୍ତିକା ଛପାଇଥିଲେ । ଅନେକ ଓଡ଼ିଆ ଶବ୍ଦ ବିଷୟରେ ସେ ବହୁତ ଲେଖିଛନ୍ତି ଏବଂ ନୃତ୍ୟକଳା ଶାସ୍ତ୍ରର ମତ ବିଷୟରେ ସେ ପ୍ରବନ୍ଧ ଲେଖିଛନ୍ତି । ତାଙ୍କ 'କୃଷ୍ଣ ଚରିତ' ନାଟକ ଭରତ ନାଟ୍ୟର ସବୁ ନିୟମ ମାନି ଲେଖା ହୋଇଛି । ଭାଷା ଉପରେ ସର୍ବଦା ତାଙ୍କର ବୈୟାକରଣିକର ଦୃଷ୍ଟି । ଶବ୍ଦକ୍ତିର ପ୍ରତ୍ୟୟ ଗୁଡ଼ିକ ଓଡ଼ିଆରେ ମଧ୍ୟ ସେ ବ୍ୟବହାର କରନ୍ତି, ତାର ଉଦାହରଣ ଦ୍ୱିତୀୟା ବିଭକ୍ତିରେ 'କୁ'—

"ହସନ୍ତି ଡାକ ଠାରେ ଦେଖି ଗାନ ଭକ୍ତକୁ ।
ପରେ ତାଙ୍କୁ କହିଲ ଶିବ ସ୍ନେ ଚରଣକୁ ।"

... ... ...

"ଅହେ ସୁଜନ ସେ ଦେବୀଙ୍କର ସମ୍ବାଦକୁ ।
କର୍ଣ୍ଣ ମୁଖେ ପାନ କର ଲଭ ଆନନ୍ଦକୁ ।"

... ... ...

"ଧୀରତାକୁ ତେଜିଣ ଥିବେ ରେ ତରୁଣୀ"
"ମୋରେର ଭକ୍ତିଣୀଙ୍କୁ ଭର ଶାଧର ।"

ନିଜେ ତେଲୁଗୁ ସାହିତ୍ୟରେ ଜଣେ ସୁପ୍ରସିଦ୍ଧ ଲେଖକ ହୋଇ-ଥିବାରୁ ତାହାର ପ୍ରଭାବ ମଧ୍ୟ ତାଙ୍କ ରଚନା ଉପରେ ସ୍ଥାନେ ସ୍ଥାନେ ପଡ଼ିଛି । ତେଲୁଗୁରେ ବହୁବଚନରେ 'ଲୁ' ପ୍ରତ୍ୟୟ ହୁଏ, ତାହା ସଂସ୍କୃତର 'ଳା' ପ୍ରତ୍ୟୟରୁ ସମ୍ଭୂତ । ଶ୍ରୀଯୁକ୍ତ ବିକ୍ରମଦେବ ବର୍ମା ଓଡ଼ିଆରେ ବହୁବଚନରେ 'ଳା' ପ୍ରତ୍ୟୟ ବ୍ୟବହାର କରିଛନ୍ତି, ଯଥା :—

ରଚନାଳି, ଋଷିସ୍ୱାଳା, ଦୂଷଣାଳା, ଭର୍ମିଳା, ପାପାଳି, ଦେବାଳି, ଦୀନାଳି ଇତ୍ୟାଦି ଏକବଚନ ବହୁବଚନର ଅପପ୍ରଯୁକ୍ତ ବ୍ୟବହାର, ହ୍ରସ୍ୱ ଦୀର୍ଘ ନିୟମ, ଭାଷାର ସଂସ୍କୃତ ବ୍ୟାକରଣ ସିଦ୍ଧ ଠେକ ଏସବୁ ମତ ତାଙ୍କର ତୀକ୍ଷ୍ଣ ନଥା ଅଛି । ପଦ୍ୟ ଓ ଗଦ୍ୟ ସରଳ ଓଡ଼ିଆରେ ଲେଖା ହୋଇଛି କିନ୍ତୁ ଅପଣାର ଭାଷା ସନୋଦନ ପାଇଁ ସ୍ଥାନେ ସ୍ଥାନେ ସମାସ ପ୍ରଭୃତ ବ୍ୟବହାର କରିହୋଇଛି । ସ୍ଥାନେ ସେ ଲେଖିଛନ୍ତି—

"ଧନ ତେଜ ସୁଖଦ । ଶ୍ରୀହରି ଚିନ୍ତନ ତେଜ ସୁଖଦ ।
ମନ ବଳେ ବୃନ୍ଦ ନାହିଁ ଭାବିଣ ।
... ... ...
ମୁକ୍ତିସଂପ୍ରୋତାର୍ଘ୍ୟ ବନ୍ଦନ ସୁଖଦ ...
... ... ...
ଶ୍ରୀପାର୍ବତେଶ୍ୱରାର୍ଚ୍ଚନ ସୁଖଦ ।"

ତାଙ୍କର ସାହିତ୍ୟିକ ଭାଷାର ଅନୁପମ ବିଶିଷ୍ଟତା ତାଙ୍କର ଚରମ ଉତ୍କର୍ଷ 'ବୃନ୍ଦ ବନ' ନାଟକର ଉଦ୍ଧୃତ ହୋଇଥିବା ଏହି ନିମ୍ନଲିଖିତ ଶ୍ଳୋକରୁ ଜଣାପଡ଼ିବ—

"ଯୋଗେଶ ବାଧା ଜଗତେ ନ ଥାଉ
କେବଳ ଅଜ୍ଞାନ ବିନଷ୍ଟ ହେଉ
ପ୍ରତ୍ୟେକେ ସନ୍ତାପ ଲୁଚନ୍ତୁ ଯାଉ
ଜୀବାଳି ନିର୍ବାଣ ଦଶାକୁ ପାଉ ।"

'ସ୍ୱପ୍ନପୋଡ଼ଶ ଗୃହସ୍ଥ' ଗ୍ରନ୍ଥରେ ନନ୍ଦପୁର ସହରକୁ ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି "ଯେ (ନନ୍ଦପୁର) ପୂର୍ବରେ ରାଜଶେଖର ଅଳଙ୍କୃତ ହୋଇ କୈଳାସ ପରି, ବେଦଚତୁଷ୍ଟୟ ସ୍ୱରୂପ ହୋଇ ଚତୁରାନନ-ଲୋଚନ ପରି, ଚତୁର୍ଥ ନିବାସ ହୋଇ ହିନ୍ଦୁର ପରି, ପୂର୍ଣ୍ଣଚନ୍ଦ୍ରାଗାର ହୋଇ

ଲଙ୍କାପୁର ପରି, କୁବଳୟ ହୃଦ୍ୟ ହୋଇ ଚନ୍ଦ୍ରମଣ୍ଡଳ ପରି, ବିଦ୍ୟାଧରଯୁକ୍ତ ହୋଇ ହିମାଚଳ ପରି, ହରିଲଳିତବଚନଲାଳିତ ହୋଇ କମଳାହୃଦୟ-କମଳ ପରି, ଶିଖିଗମନଯୁତ ହୋଇ ସୁରସେନାନୀ ପରି, ପରସ୍ତ୍ରୀ କଳିତ ହୋଇ ତ୍ରିପୁରସୁନ୍ଦର ପରି ଏବଂ ପ୍ରବାଳ ଭୂଷିତ ହୋଇ ଭଗବତୀହସ୍ତ ପରି ଦର୍ଶକ ମନୋହର ହୋଇଥିଲା ।”

କିନ୍ତୁ ତାଙ୍କର ଅଧିକାଂଶ ରଚନା ସରଳ ଓଡ଼ିଆରେ । ଯାହାଙ୍କର ଶିକ୍ଷା ଓ ଭାବନା ସଂସ୍କୃତରେ, ଯାହାଙ୍କର ଅଧିକାଂଶ ଦିନ ବିତିଲା ଅନ୍ୟ ଦେଶରେ, ସେ ଯେ କେଡ଼େ ସୁନ୍ଦର ସରଳ ଓ ଲଳିତ ଓଡ଼ିଆରେ କବିତା ଲେଖି ପାରିଛନ୍ତି ତାହା ହିଁ ଆଶ୍ଚର୍ଯ୍ୟର ବିଷୟ :—

“ଜୀବରେ ମୂଢ଼ ଜାତ । ଛାଡ଼େ ମମକାର ଭାବ ।
ଏ ଘଟକୁ ଛାଡ଼ି ଦିନେ ଯିବୁ ଉଡ଼ି
କେଉଁ ବୋଲିକି ତୁ ଜୀବ—।”

ତୁଳସୀ ରାମାୟଣରେ—

ଅନେକ ମାତା ରାମକୁ ମାଜଣା କରାଇ
ବେଶ କରି ଗଜଦନ୍ତ ଦୋଳାରେ ଶୁଆଇ । ୧୫୨୧
ଇଷ୍ଟ ଦେବତା ପୂଜା ନିମିତ୍ତ ନିଜ କରେ
ନାନାବିଧ ପିଷ୍ଟକ କରି ଚିତ୍ର ଭାବରେ । ୧୫୨୨
ଦେବତାଙ୍କୁ ପୂଜି ପାକଶାଳାକୁ ଗମିଲା
ସେଠାରେ କିଞ୍ଚିତ୍ ଥିଲା ପୁତ୍ରକୁ ବିଲୋକିଲା । ୧୫୨୩
ସେ ଚକିତା ହୋଇ ଦୋଳି କତକୁ ଗମନ
କରି ଅନାଇଁଲା ତହିଁ ଶୋଇଛି ନନ୍ଦନ । ୧୫୨୪

ତାଙ୍କର କଥିତ ଓଡ଼ିଆ ଗଞ୍ଜାମର ବୋଲି । ତାହାର ପ୍ରଭାବ ସ୍ଥାନେ ସ୍ଥାନେ ତାଙ୍କ ସାହିତ୍ୟିକ ଭାଷା ଉପରେ ପଡ଼ିଛି—

‘ଏକେଦନ’ ‘ତହୁଁ’ ‘କସ’ ‘ଦେଖିବାର’ ‘ପଗୁରନ୍ତେ’ ‘ବୋଇଲି’ ‘ଉଦେ’ ‘ମାଜ’ ‘ନିକଟେ’ ପ୍ରଭୃତି ତାହାର ପରିଚୟ । ଗଦ୍ୟରେ ଏହାର ପ୍ରଭାବ ଅଧିକ । ଉଦାହରଣ ସ୍ୱରୂପ—

ଏ କ୍ଷୁଦ୍ର ଗଳ୍ପ ତାହାର ନିଦର୍ଶନ । ଏହା କେବଳ କଳ୍ପିତ ନୋହି ସତେ ଚଳିଲା ବିଷୟ ଅଟେ ।

ଗୋଟିଏ ବୁଢ଼ୀ କବାଟ ପିଟାଉଛି । ତା'ର ବୟସ ପ୍ରାୟଶଃ ଷାଠିଏ, ବର୍ଣ୍ଣ ଗୋରିଆ ପରି, ମୁଣ୍ଡର ବାଳ ଚେନ୍ଦୁଳା ପାଚି ପଡ଼ିଯାଇ, ଅଖି ଦିଓଟି ଚେନ୍ଦୁଲା ପତର ପରି ଓସାର, ମୁହଁ ନେଇ ଭାଙ୍ଗ ପଡ଼ି, ଅଗରୁ ବାହାରିଥିଲା ଦିଓଟି ଦାନ୍ତ ଲଉ ଚକ୍ଷି ପରି ଦିଶେ ।

( 'ନାଗର.ଦ୍ବେ ନାଗେ ମଢ଼େ' )

ସେ ସନ୍ଧ୍ୟା ସମୟରେ ରଙ୍ଗାଚାର୍ଯ୍ୟ ମାଧବାଚାର୍ଯ୍ୟଙ୍କ ଗୃହରେ ପହଞ୍ଚି ଦେଖିଲେ ଯେ ଲଳିତା ଏକାକିନୀ ହୋଇ ମେଜ ନିକଟେ ଥିଲା । ...ସେ ଯୁବତୀ ସହସା ଚୌକିରୁ ଉଠି କେତେ ପାଦ ପଛକୁ ଘୁଞ୍ଚି ବୋଇଲାକି "ତୁମ୍ଭେ ଏପରି ଅନ୍ୟାୟାଚରଣ କର ନାହିଁ ।" "ରଙ୍ଗାଚାର୍ଯ୍ୟ ତତ୍‌କ୍ଷଣାତ୍ ଉପଯୁକ୍ତ ବ୍ୟକ୍ତିଙ୍କୁ ମାଧବାଚାର୍ଯ୍ୟ ନିକଟକୁ ପଠାଇ ଲଳିତାକୁ ପଠାଇଲେ" (ଲଳିତା)

ସେହିପରି ପଦ୍ୟରେ—

କେ ତୋର ମାଇପ    କେ ତୋର ଝିଅପ
କେ ତୋହର ସୁତାସୁତ —(ଯାଉଁଲେ ସଇଁଲେ ବୃତ୍ତି)

ଏହିସବୁ ବାକ୍ୟର ଗଠନରେ ମଧ୍ୟ ଗଞ୍ଜାମର ବୋଲି ଶୁଣାଯାଏ ।

ସୂକ୍ଷ୍ମ ଆଲୋଚନା କଲେ ଜଣାଯାଏ ଯେ ଓଡ଼ିଆ ଭାଷାର ପ୍ରାଚୀନ ବିଶେଷତ୍ୱସବୁ ଗଞ୍ଜାମର ଚଳନ୍ତି ବୋଲିରେ କେତେକ ପରିମାଣରେ ଅଛି ଏବଂ ଉତ୍ତର ଅଞ୍ଚଳରେ ସେସବୁ କାଳକ୍ରମେ ଲୋପ ହୋଇ ଯାଉଛି । ଆଧୁନିକ ଓଡ଼ିଆ ସାହିତ୍ୟରେ ଏପର୍ଯ୍ୟନ୍ତ ଅଧିକାଂଶ ଲେଖକ ଉତ୍ତର ଅଞ୍ଚଳର ହୋଇଥିବାରୁ ଗଞ୍ଜାମର ଏ ବିଶେଷତ୍ୱ ସେମାନଙ୍କ ଭାଷାରେ ନାହିଁ । ଦକ୍ଷିଣ ଅଞ୍ଚଳର କବିଙ୍କ ଭାଷାରେ ସ୍ଥାନେ ସ୍ଥାନେ ଦକ୍ଷିଣ ଦେଶର ବୋଲିର ପ୍ରଭାବ ଦେଖିବା ବିଚିତ୍ର ନୁହେଁ, କିନ୍ତୁ ଆଶ୍ଚର୍ଯ୍ୟ ଏହିକି ଯେ ତାଙ୍କର ଅଧିକାଂଶ ଲେଖା ସକଳ ସାର୍ବଜନୀନ ଓଡ଼ିଆ ଭାଷାରେ ଯାହା ଉତ୍ତର ଓଡ଼ିଶାର ସେତିକି ଦକ୍ଷିଣ ଓଡ଼ିଶାର ସେତିକି ।

ସେହି ଭାଷାରେ ବ୍ୟାକରଣର ସବୁ ନିୟମ ମାନି ସେ ତାଙ୍କର କଳ୍ପନା, ଗୁଣ, ଜ୍ଞାନ ଓ ଅଭିଜ୍ଞତାର ସାହିତ୍ୟ ସୃଷ୍ଟି କରିଛନ୍ତି । ଏପରି ସାହିତ୍ୟରେ ବସ୍ତୁ ହିଁ ପ୍ରଧାନ, ଅନ୍ୟ ବିଷୟ ପାଇଁ କବିଙ୍କର ଉତ୍କଟ ଚତୁରାଳି-ମନ ଓ ସଜାଗ ଚେଷ୍ଟାର ସମ୍ଭାବନା ନାହିଁ । ଭଗବାନଙ୍କ ଧ୍ୟାନରେ ବୁଡ଼ି ରହିଥିବାବେଳେ କବିଙ୍କ ଅଜାଣତରେ ଯେ ପଦସବୁ ରଚନା କରିଛନ୍ତି ସ୍ଥାନେ ସ୍ଥାନେ ତାହା ଗଞ୍ଜାମୀବାଲା ଶୈଳୀକୁ ଛୁଇଁଦେଇ ନୂଆ କଳେବର ନେଇଛି । ତାହାର କେତୋଟି ଉଦାହରଣ :—

" ରାମ ଜେ ଜେ । ପୁଣ୍ୟନାମ ଜେ ଜେ ।

... ... ...

ଦେବ ଜେ ଜେ । ବାସୁଦେବ ଜେ ଜେ ।

... ... ...

ଶ୍ରୀଶ ଜେ ଜେ । କୋଶଳେଶ ଜେ ଜେ ।"

" ଜୟ ! ରାଧା ମନୋହର । ଆନନ୍ଦ ସାଗର ।

ଗୋବିନ୍ଦ ଶ୍ରୀଧର । ଜେ । ଜେ । ଜେ ।

... ... ...

ରବିକୁଳନନ୍ଦନ । ନୀରଜ ଲୋଚନ ।

ପାପୌଘ ମୋଚନ । ଜେ । ଜେ । ଜେ ।"

ଏହି ପୁଣ୍ୟନାମ ଗାଇବା ସଙ୍ଗେ ନାନା ତାଳରେ ନାନା ରାଗିଣୀରେ ସେ ପଦ୍ୟ ରଚନା କରିଛନ୍ତି । ନିଜେ ସଂସ୍କୃତ, ଓଡ଼ିଆ, ତେଲୁଗୁ, ବଙ୍ଗଳା ଓ ହିନ୍ଦୀ ଭାଷାରେ ସେ ସୁପଣ୍ଡିତ ଏବଂ ରାଗରାଗିଣୀରେ ସେ ଅତି ନିପୁଣ । ତେଲୁଗୁ ସାହିତ୍ୟରେ ଭକ୍ତବରର 'ପଦ୍ୟାଲୁ' ନାନା ରାଗରାଗିଣୀ ସମ୍ବଳିତ ଏବଂ ମହାତ୍ମା ୬ ତ୍ୟାଗରାଜଙ୍କ କୃତ ଭାରତରେ ଅଦ୍ୱିତୀୟ । ତେଲୁଗୁ ସଙ୍ଗୀତ ଅନୁଶୀଳନରେ କବି ରାମଦେବ ମୋହନା, ମନୋହରୀ, ଚକ୍ରବାକ, ନାଥନାମକ୍ରିୟା, ନାଟକୁରଞ୍ଜି ପ୍ରଭୃତି ରାଗରେ ଗୀତ ବାନ୍ଧିଛନ୍ତି ଏବଂ 'ମକ୍ର-କୋଟି ସୁନ୍ଦରାଙ୍ଗ' 'ନିନ୍ନେ ନାମ୍ମିନାନୁ', 'କୋରାମା ପୋଷିଲ୍ଲବା' 'ଦେବ ଗଜାନନ' 'ମାଣ୍ଡି ସାମାନ୍ୟ ମିଦେବର' 'ଓ୍ୟାସମୁଲେଲବାରି' ପ୍ରଭୃତି ପ୍ରସିଦ୍ଧ ତେଲୁଗୁ ଗୀତକୁ ଅନୁସରଣ କରିଛନ୍ତି । ସେହିପରି ସେ ଝିଂଝୋଟି, ବେହାଗ, ଖମାଚ, ସିନ୍ଧୁ ଖମାଚ, ମାଲ୍ଲ ମାଳବଗୌଡ଼, ଆନନ୍ଦଭୈରବୀ ପ୍ରଭୃତି ହିନ୍ଦୀ ରାଗିଣୀରେ ପଦ୍ୟ ରଚିଛନ୍ତି । ପ୍ରାଚୀନ ଓଡ଼ିଶୀ ରାଗରାଗିଣୀରେ କବି ଅତି ପଣ୍ଡିତ । ଓଡ଼ିଶୀ କଲ୍ୟାଣୀ, କେଦାର, ହନୁମନ୍ତବୋଡ଼, ବରାଡ଼ି, ପାନ୍ତବରାଡ଼ି, ଅଷାଢ଼ ଶୁକ୍ଳବାଣୀ, ସାବେରୀ, ଧନାଶ୍ରୀ, କଳହଂସ, ଗୁଜ୍ଜରୀ ପ୍ରଭୃତି ରାଗରାଗିଣୀରେ ସେ ଅନେକ ପଦ୍ୟ ଲେଖିଛନ୍ତି । ଲୋପ ହୋଇ ଯାଉଥିବା ସଂସ୍କୃତି ଉପରେ ସତ୍ୟ ନ ହେଲେ ମଧ୍ୟ ଅନେକ କଥା ତାଙ୍କୁ ଭଲ ଲାଗେ ଏବଂ ସେହିପରି ଅନେକ ଜିନିଷ ସେ ସାଇତି ରଖିଛନ୍ତି ।

ଯଦି ସମାଲୋଚନାର ଉପାୟ ହୁଏ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଏବଂ ଯଦି ତାର ଉଦ୍ଦେଶ୍ୟ ହୁଏ ସାହିତ୍ୟରେ 'କ'ଣ' 'କିପରି' 'କାହିଁକି' ର ସମାଧାନ ତାହା ହେଲେ ଶ୍ରୀଯୁକ୍ତ ବିକ୍ରମଦେବ ବର୍ମାଙ୍କ 'ରଚନାଳୀ' ସମାଲୋଚକ—ପାଠମାନଙ୍କର ଗବେଷଣା ଓ ଅନନ୍ଦର ବିଷୟ ହେବ । ତାହା ସାଠିଏ ବର୍ଷର କଠୋର ସାଧନାର ଫଳ,—ଜାତୀୟ ସାହିତ୍ୟର ଇତିହାସରେ ଗୋଟିଏ ଯୁଗ । ୧୮୬୯ ରେ ଜନ୍ମ, ୧୯୩୭ କୁ ଅଦ୍ୟାପି ଲେଖୁଛନ୍ତି ! ଯଶ ଅର୍ଜିବା ପାଇଁ ଅନ୍ୟ ଉପାୟ ଥିଲା, ଜୀବନଧାରଣ ପାଇଁ ସାହିତ୍ୟ ଉପରେ ନିର୍ଭର କରିବାକୁ ପଡ଼ି ନାହିଁ । ତଥାପି ସାହିତ୍ୟ ଚର୍ଚ୍ଚାରେ ସେ ବ୍ରତବହିଛନ୍ତି । ତାହାର ମତକୁ ଅପେକ୍ଷା ରଖି ନାହାନ୍ତି, ତାହାର ପ୍ରଶଂସା ବା ନିନ୍ଦାକୁ ଅନେଇ ବସି ନାହାନ୍ତି, ଆପଣାର ରୁଚି ଅନୁଯାୟୀ ଆପଣାର ରଚନା ଗୁନ୍ଥିଛନ୍ତି, ଅଟକି ନାହାନ୍ତି । ୧୮୬୯ କୁ ଆମେ ଫେରିଯାଇ ପାରିବା ନାହିଁ, କିନ୍ତୁ ଏ ଆଦର୍ଶ—ନମସ୍ୟ । ଇତି ।

ବରଗଡ଼
୧ । ୬ । ୩୭ } ଶ୍ରୀ ଗୋପୀନାଥ ମହାନ୍ତି



ରାଜର୍ଷି, ମହାରାଜା ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା



## ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ ।

ଶ୍ଳୋକୌ:—

ହୃଦୟକମଲମଧ୍ୟେ ଚିନ୍ତୟେ ଭାନୁ ପୁତ୍ରୀଂ ।
ସଲ୍‌ଲଭବଜ୍ରଦାସ୍ୟାଂ ପଦ୍ମିନୀଂ ପଦ୍ମହସ୍ତାଂ ।
ଛବିବିଜିତସୁବର୍ଣ୍ଣାଂ ମୀର ଜାତାସୃତାକ୍ଷୀଂ ।
ଧରବରଧରପାର୍ଶ୍ୱସ୍ଥାୟିନୀଂ ମୁକ୍ତିଦାତ୍ରୀଂ ॥

●

ହୃଦୟକମଲମଧ୍ୟେ ଭାବୟେ ବାସୁଦେବଂ ।
ନବଜଲଧରବର୍ଣ୍ଣଂ ପୁଣ୍ଡରୀକାୟତାକ୍ଷଂ ।
ଅରିଜଲଜଗଦାମ୍ଭୋଜାତହସ୍ତଂ ସୁରେଡ୍ୟଂ
କନକବସନଯୁକ୍ତାଙ୍ଗଭାଗଂ ମୁକୁନ୍ଦଂ ।

●

ଶ୍ରୀ ବିକ୍ରମଦେବ ବର୍ମା

# ଶ୍ରୀ ବିକ୍ରମଦେବବର୍ମ-
# ରଚନାଳି

## ରାଗ ବସନ୍ତ—ଅଷାଢ଼ ଶୁକ୍ଳବାଣୀ

ଭ ଣ ବନ୍ଦ୍ୟ ! ଘେନ ମୋର ବିନୟ ।
ଚ ନ୍ଦ ଧର ! ମୋରେ ହୋଇ ସଦୟ ।
ନ ମେ ନେଇ ଶତ୍ରୁହଂସଙ୍କୁ ମୋର ।
ଶ୍ରୀ ଶ ! ରଖ ପଦପଙ୍କେରେ ତୋର
ଏତେ ସେ ମାଗଇ । ଦ୍ୱିତୀୟ ବର୍ଣ୍ଣେ ଯା ନାମ ରାଜଇ । ୧ ।

ଗୋ ଣ ନ । ହରେ ରାମ କୃଷ୍ଣ ବୋଲ ।
ସ ନ୍ଦ ମନେ ମୋର ଭ୍ରଣ୍ଡ ନାଶେଳ ।
ପ୍ରେ ମେ ସଦା କରୁଆଛ କୀର୍ତ୍ତନ ।
ଭେ ଶ ବ ! ନ ଉଚ୍ଚାରୁ କୁବଚନ ।
ଏତେ ସେ ମାଗଇ । ଦ୍ୱିତୀୟ ବର୍ଣ୍ଣେ ଯା ନାମ ରାଜଇ । ୨ ।

ଅ ଣ ରତ ମୋର ଅନ୍ତଃକରଣ ।
ଗ ନ୍ଦ ଗଞ୍ଜନ ! ମୁନୀଶରଞ୍ଜନ !
ତ ମେ ଅନୁରକ୍ତ ନୋହୁ ତୋହର ।
ଦ ଶ ରୂପଙ୍କୁ ଧ୍ୟାଉ ଦାମୋଦର !
ଏତେ ସେ ମାଗଇ । ଦ୍ୱିତୀୟ ବର୍ଣ୍ଣେ ଯା ନାମ ରାଜଇ । ୩ ।

ର ଣ ଶଶୀ ନେତ୍ର ! ହର ମୋହର ।
ବ ନ୍ଦ ପଥଗ ନୋହୁ ନିରନ୍ତର ।
ଭ ମେ ଶ ବନ୍ଦିତ ! ପରୋପକାର ।
ବ ଶ ହେଉ ଜଗନ୍ମୋହନାକାର !
ଏତେ ସେ ମାଗଇ । ଦ୍ୱିତୀୟ ବର୍ଣ୍ଣେ ଯା ନାମ ରାଜଇ । ୪ ।

ଛ ଣ ଛତ ତୋଟ କୁସୁମଶର !
ନ ନ୍ଦ ହର ମୋତେ ଭବସାଗର ।
କୁ ମେ ପଡାଇ ନାନ ନିଷ୍କଳଙ୍କ ।
ଯ ଶ ରେ ଲଗାଅ ନାହିଁ କଳଙ୍କ ।
ଏତେ ସେ ମାଗଇ । ଦ୍ୱିତୀୟ ବର୍ଣ୍ଣେ ଯା ନାମ ରାଜଇ । ୫ ।

# ସରସ ଗୀତାବଳୀ

(୧) ରାଗିଣୀ ଝିଁଝୋଟ । ରୂପକ ତାଳ ॥

( ଟେଲ୍ ରେଲ୍ଲେ ସଖି—ପ୍ରଭ )

ପାହି ଶଙ୍କର ! ପାଟଳାଧର !
ତ୍ରାହିମାଂ, ସମସ୍ତ ନିର୍ଜ୍ଜରଭୟଙ୍କର । ପଦ ।
କଞ୍ଜଲୋଚନ ! କଷ୍ଟମୋଚନ !
ଗୃହ୍ଣିଶାରଦାମ୍ବୁଜାତଶାସବାନନ । ୧ ।
ସର୍ବମଙ୍ଗଳେ ! ଭକ୍ତବତ୍ସଳେ !
ମତ୍ତଭୃଙ୍ଗଜାଳନୀଳଦିବ୍ୟକୁନ୍ତଳେ । ୨ ।
ପାପହାରିଣି ! ଶୂଳଧାରିଣି !
ସୁରଦାନବାଳିଗର୍ବଖର୍ବକାରିଣି । ୩ ।
ସିଂହବାହନ ! ଶମ୍ଭୁମୋହନ !
ବନ୍ଦମେଶଚଉନୀରଜାତବାସିନି । ୪ ।

---

(୨) ରାଗିଣୀ ଖରହରପ୍ରିୟା । ରୂପକ ତାଳ ।

( ବିନା ଦୋଷେ ନବୀନା—ପ୍ରଭ )

ରାଧାରମଣରମଣେଶ୍ୱର । ମୋ ପାପ ହର । ପଦ ।
ଗୋପୀନେତ୍ର ନୀଳୋତ୍ପଳାର୍ଚ୍ଚିତଶରୀର । ରାଧା ।
ନନ୍ଦଦାସମାନସ          ମାନସରାଜହଂସ
ଦନୁଜକୁଳସାରସବୈହଣୀବର । ୧ ।
ନବୀନଘନଶ୍ୟାମ          ଅଙ୍ଗକାନ୍ତିକାମ
ଉମାବାମଦେବବନ୍ଦିତପାଦ ଯୁଗଳ । ୨ ।
ମୁଖଜିତକଳଙ୍କ          ସ୍ୱାନରାଜାଣଶାଙ୍କ
ମୁନିହୃଦୟଚକୋରପ୍ରମୋଦକର । ୩ ।

ସୁଦରସୁବିଳାସ ଧୃତହରିତବାସ
ସତୀଅଙ୍ଗବଙ୍କର ମୁରଲୀଧର । ୪ ।
ନାଗରଚନ୍ଦ୍ରଲୀନ୍ଦ୍ରା କେକୀପୁଚ୍ଛଚୂଳୀୟା
ବ୍ରଜବନିତାପାଳିଠାବାସ ତସ୍କର । ୫ ।
ଶ୍ରୀଅଗ୍ନି ମହାଦେବୀ ଚାରୁ ଜଳଜ ରବି
ଶ୍ରୀମତୀ ବଦନ କଞ୍ଜ ମଉ ଭ୍ରମର । ୬ ।

---

(୩) ରାଗିଣୀ ଦେବଗିରିପ୍ରିୟା । ରୂପକ ତାଳ ।
( ବିନା ଦୋଷେ ନନ୍ଦନା—ସୁତ )

ଯଦା ନୟନେ ନାଚନ୍ତି ଝାପ-ମୁଳୀୟା
ଯାଧୋର ନୁହେତ ମନୁ ଧେନୁ-ଧୂଳିୟା । ପଦ ।
ଅଖଣ୍ଡ ସୁଧାକର ଜିଣି ମୁଖ ସୁନ୍ଦର
ମନ୍ଦ ମନ୍ଦରେ ହସିବା ସେ ମୁରଲୀୟା । ୧ ।
ତାର ବସନ ଭୂଷା ମୋ ହୃଦେ କଲେ ବସା
ରସାଭୂତା ସତୀ ଧୃତ ଧର ଠାଲୀୟା । ୨ ।
ନବୀନ ଜଳଧର ପର ଛବି ସୁନ୍ଦର
ଦଣ୍ଡେ ଦଣ୍ଡେ ଦଣ୍ଡେ ମୋତେ ବାନ୍ଧଟୁଳୀୟା । ୩ ।
ଝିଙ୍କି ଦିଅ ଠାଣି ମୋ ଦମ୍ଭ ଦିଏ ହାଣି
ନ ଜାଣି ଗୁନ୍ଥିଲି ଅବେ ଗୁଞ୍ଜମାଳୀୟା । ୪ ।
ଏ ମନୋହର ସେହୁ ବଚନେ ନୁହେ କହୁ
ଶ୍ରୀ ଅଗ୍ନି ମହାଦେବୀଙ୍କ ସେ ସଖାଳୀୟା । ୫ ।

---

(୪) ରାଗିଣୀ ଖରହରପ୍ରିୟା—ରୂପକ ତାଳ ।
( ବିନା ଦୋଷେ ନଦୀନାରେ—ସୁତ )

ଦେଖ ଥରେ ରୂପ ବର, ନନ୍ଦକୁମର । ପଦ ।
ଧନୁ ଧେନୁ ଅଣିବାର ନିଶିକି ତାର । ଦେଖ ।
ସୁବଳ ସଙ୍ଗେ ବନ୍ଧୁ ମୁରଲୀକି ବଜାଇ
ଗୋପାଳ ମେଳେ ତୁଲି ତୁଲି ନାଚିବାର । ୧ ।

ବନ ଧାତୁରେ ଚିତ୍ର    ବିଚିତ୍ର ତାର ଗାତ୍ର
ନେତ୍ର ଭୁଲ ବ୍ରଜ-ନାରୀଙ୍କି ଫିଙ୍ଗବାର । ୨ ।
ନାନା ଜାତି କୁସୁମ    ପିନ୍ଧନ୍ତି ଘନଶ୍ୟାମ
କୋଟି କାମ ସମ ତନୁ ଧୂଳି ଧୂସର । ୩ ।
ଗୋପୀ ନେତ୍ର କୁମୁଦ    କରିବା ପାଇଁ ମୋଦ
ବ୍ରଜ ଦାଣ୍ଡ ନଭେ ଉଦେ ଏ ନିଶାକର । ୪ ।
ଶୋଭା ଜାଲ ପକାଇ    ମନ ମୀନକୁ ସହି
ଘେନି ଯିବ ଏବେ ବୃଷଭାନୁ-ସୁତାର । ୫ ।
ଶ୍ରୀ ଅମ୍ବି ମହାଦେବୀ    ଦେଖିବା ପାଇଁ ଭାବି
ଭକ୍ତି ହୋଇଛନ୍ତି ଧରି ଲଳିତା କର । ୬ ।

---

(୫) ରାଗିଣୀ ବେହାଗ—ଅଦ୍ଧା ତାଳ ।

( ଯମୁନା ପୁଳିନେ—ପ୍ରଭୃତି )

କିଏ ସେ ନାଗର ସହି ଦିଶେ କେଡ଼େ ସୁନ୍ଦର । ପଦ ।
ବର ମାନବତୀ ଗଣ ଚିତ୍ତ ବିତ୍ତ ତସ୍କର । କିଏ ।
ଅକଳଙ୍କ କଳାକର    ସମ ମୁଖ ମନୋହର
ମତ୍ତ କଳାପି କଳାପ ମସ୍ତକରେ ଭାସୁର । ୧ ।
ସଜ ସରୋଜକୁ ଜିଣି    ଚାହାଣେ ନୟନ ବେନି
ଭନ୍ନ ହୀନ ପକ୍ୱ ବିମ୍ବ ଫଳ ପରି ଅଧର । ୨ ।
ସୁକୁମାର ଅପଘନ    ନବୀନ ଘନ ସମାନ
କଟି ତଟେ ପୀତ ପଟେ ସୌଦାମିନୀ ପ୍ରକାର । ୩ ।
ତାର ନିଶିତ କ୍ଷେଣି    ବଡ଼ିଶକୁ ପକାଇଣି
ବଳେ ଉଠାଇ ନେଲା ମୋ ମନୋମୀନ ସତ୍ୱର । ୪ ।
ଯେ ସର୍ବ ଲୋକ ଲୋଚନ    କୁମୁଦ ନିଶା ରମଣ
ଯାର ପାଦ-ପଦ୍ମେ ବର ଶ୍ରୀ ବିକ୍ରମ କିଙ୍କର । ୫ ।

(୬) ରାଗିଣୀ ମାଧ୍ୱୀମାଳବଗୌଡ଼ା—ରୂପକ ତାଳ

(ଜୋଖାନେ ଛୁଲ—ପ୍ରଭ)

ନ ଜାଣି ପୀରତ କଲି, ବାତୁଲୀ ହେଲି । ପଦ ।

ମୋର ଚିନ୍ତା ପାସୋରିବାରେ ଚିତ୍ତକୁ ବୁଡ଼ାଇ ଦେଲି । ନ ଜାଣି ।

ତାଙ୍କ ଶୃଙ୍ଗାର ରୂପକୁ ନ ବିଲୋକିବା ଲବକୁ
ଲୋଚନ ପୂର୍ଣ୍ଣ ଲୋଚନେ ଯୁଗ ପରିଏ ଗଣିଲି । ୧ ।
ନିରତେ ତାଙ୍କ ପ୍ରେମରେ ରତ ହୋଇ ମୁଁ କ୍ରମରେ
ଅଶନ ବାସ ଭୂଷଣ ବିଷ ସମାନ ମଣିଲି । ୨ ।
କୁଳ ଶୀଳ ଗୁରୁଜନ ଭୟ ଲାଜ ଅଭିମାନ
ସଜନୀ ସମାଜ ସ୍ନେହ ସକଳ ସୁଖ ତେଜିଲି । ୩ ।
ଭାନୁ କିରଣ ତାପକୁ ମଳୟ ବାତ ଘାତକୁ
ଅନଙ୍ଗ ବାଣ ଗଣକୁ ମୋର ତନୁ ସମର୍ପିଲି । ୪ ।
କୃଷ୍ଣଚନ୍ଦ୍ର ଦେବ ସୁତ ବିକ୍ରମଦେବ ବଦତ
ହରି ସଙ୍ଗ ନିତ୍ୟ ବୋଲି ମନରେ ଯା ଭାବିଥିଲି । ୫ ।

---

(୭) ରାଗିଣୀ କଲ୍ୟାଣୀ—ମିଶ୍ରରୂପ

(ପଦ୍ମର ପ୍ରିୟ ସଖି—ଛନ୍ଦ)

ଯେ ତେ ନାଗର ବର କେତେ ସୁନ୍ଦରତର
ଦେଖିନା ଶୁଣି ତାର ।
ବର୍ଣ୍ଣ୍ୟ ମାନସ ମୋର । ପଦ ।
ଚନ୍ଦନ କଳଙ୍କ ପୂର୍ଣ୍ଣ ଶଶି ନାୟକ
ଏହି କଳିତ ମୁଖ ।
ସମ ନୁହେ ନାଗର । ୧ ।
ଯତ୍ନ ଭିତ୍ତିକୁ ଜିଣି ତୋର ନୟନ ବେନି
ଖଞ୍ଜନ ସୁହାଣି ।
ସୁଲଭ ଦର୍ପଣ ଲେ । ୨ ।

ନୀଳ ମଣିଙ୍କ ବଳି    କୋମଳ, ତନୁ ଝଳି
ହୃଦସ୍ଥ ଗୁଞ୍ଜ ମାଳ ।
ଦିଶଇ ମନୋହର । ୩ ।
ମାନିନୀ ସମିତର    ମାନ କରନ୍ତେ ଚୂର
କିବା ମଦନ ବୀର ।
ନବୀନ ଅବତାର । ୪ ।
ବିଜେନ୍ଦ୍ର ମଣି ଦେବ    ଚିତ୍ତ ଧାରଧରବ ।
ବର୍ଣ୍ଣିବାକୁ ସୂକ୍ଷ୍ମବ ।
ମନକୁ ଅଗୋଚର । ୫ ।

---

(୮) ରାଗିଣୀ ପାନ୍ତବରାଡ଼ି—ରୂପକ ତାଳ

( ପଦ୍ମର ଲତାକୁ ସନ୍ଦେଶ—ପ୍ରତି )

କି ଉପାୟ ଆଜ କରିବି, ପ୍ରାଣ ବାନ୍ଧବୀ । ପଦ ।
ସଙ୍ଗିନୀ ମୋତେ ଚେତି ଦେ ରେ । ଚନ୍ଦ୍ରାବଳୀ ପ୍ରେମ ରଜ୍ଜୁରେ ।
ବନ୍ଧାହୋଇ ମାତଣି ତାରେ ।
ଏଠାକୁ ନ ଆସନ୍ତି ବାରେ । କି ଉପାୟ ।
ବାଲ୍ୟକାଳ କେଳି ପାସୋରି, ଭାମାକୁପାରେ ।
ମୋତେ ଫିଙ୍ଗିବାର ହେ ହରି । ନ୍ୟାୟ ନୁହେ ବୋଲି ଜଣାଇ ।
ଅଣେ ବୋଲି ଦୂତୀ ପଠାଇ ଥିଲି ମୁଁ କି କରିବି ସହି ।
ଆମୋ ପାଦ୍ୟେ ଆସିଲେ ନାହିଁ । ୧ ।
ତୁମ୍ଭରେ ଅନ୍ୱେଷି ନାଗରି, ମୋହନ ତୁମ୍ଭେ ।
ରସିବାର କ୍ଷଣେ ନୋହେ କି । ଏପରି କହି ଅଣେ ବୋଲି ।
ସଜନୀଙ୍କ ପଠାଇଥିଲି । ଅନୁତାପ ମାତ୍ର ପାଇଲି ।
ଭେଦୋପାୟେ ମୁଁ ନ ଲଭିଲି । ୨ ।
ବିମ୍ବ ସମାଧର ପୀୟୂଷ, ପ୍ରେମାଲିଙ୍ଗନ ।
ଚୁମ୍ବନ ହେମାଙ୍ଗ ସୁରସ, କହୁଣି ଦାନଦେବି ବୋଲି ।
ଅଣିବାକୁ ପେଷିଲି ବାଳୀ । ମିତଣି ! ଅକୃତକାର୍ଯ୍ୟ ହେଲି ।
ଦାନୋପାୟରେ ନ ପାଇଲି । ୩ ।

ବିକ୍ରମ ଚିତ୍ତାରୁ ଭିନ୍ନୁକୁ, ଅପେ ମୁଁ ଯାଇ ।
ଡାକିଲେ ଦେଖାଇ ଦୈନ୍ୟଙ୍କୁ । କି ହେଣା ଭାବି ଯାଇ ରହି ।
ଛାଡ଼ିଙ୍କ ତୁନ ହେବାକୁ ସହି । ଫୁଲ ମାଳେ ମାଇଲ ମୁହିଁ
ଦଣ୍ଡୋପାୟେ ପାଇଲି ନାହିଁ । ଅଇ । ୪ ।

—o—

## (୯) ରାଗିଣୀ ଖମ୍ବାଜ—ଅଦ୍ଧତାଳ

( ଅହା କି ଲପନ ମାଧୁରୀ—ପ୍ରଭ )

ସଜନୀ ଶ୍ୟାମ ଚରଣେ କି ପଡ଼ିଲି । କୁଳ ଧରମକୁ ଏଡ଼ିଲି ।
ମୁରଲୀ ଗାନେ ରସି । ଥାଇ ମୁଁ ଦାବା ନଶି ।
ଅନ ବଶପ୍ତ ଘୁଡ଼ିଲି । ୧ ।
କୁସୁମ ତୋଳିବା ଛଳେ । ଯାଇ ଯମୁନା କୂଳେ
ସେ ହନଙ୍କ ସଦା ଲୋଡ଼ିଲି । ୨ ।
ତା ଲାଗି ହେଲି ମୁଁ ବାଇ । ସଜନୀ ତାଙ୍କୁ ନ ପାଇ
ଅନବରତରେ ସଢ଼ିଲି । ୩ ।
ଶ୍ରୀ ବିକ୍ରମ ଦେବ ଜେନ, ନବ ନୀର ଜାତ ମିନ ।
ପଙ୍କରେ କେତେ ଦଉଡ଼ିଲି । ୪ ।

---

## (୧୦) ରାଗିଣୀ ହମ୍ବୀରା ଭଣି ଅଠତାଳ, ଅଣା ବାଣୀ ବୃନ୍ଦେ—ପ୍ରଭ

ନୋ ଧୂଷଣ କଣାଇ । ମାନସ ମଣାଇ । ଅଣେ ପ୍ରାଣେଶଙ୍କୁ ସହ୍ମା ।
ତୋଷିଲ ଏ ରେଳ ବଢ଼ିଲା । ମନ୍ଦ । ମଳୟ ମରୁତ ବହିଲା ।
ଗଭା ସୁଧାକର । ଜାଳେ ଦେହ ମୋର ।
ପ୍ରୀତାଙ୍କୁ ବୁଝ ଚିନ୍ତିଲା । ୧ ।
ରତ ଦେନ ପରଣ ଯାଇ ଅତ । ନର୍ଦ୍ଦୟ ହୃଦୟକୁ ବହ ।
ପାଦ ଚଣ୍ଡ ଭାଣ୍ଡ । ମୋ ଲଳିତ ପିଣ୍ଡ ।
ଖଣ୍ଡ ଖଣ୍ଡ ବଦାରଇ । ୨ ।
ପାଚନା ମାନସ ଚୋରଙ୍କୁ । ଶନ୍ତ । ନୀଳ ସମାନ ଶରୀରଙ୍କୁ ।
ନ ଦେଖିଲେ ଏବେ । ନ ବଞ୍ଚିବ ଲବେ ।
ବିକ୍ରମ ଚିତ୍ତାରୁ ସୁରଙ୍କୁ । ୩ ।

---

ରାଗିଣୀ ମୋହନା । ଅଦ୍ଧତାଳ ।

( ମାହ୍‌କୋଟସୁନ୍ଦ ରଙ୍ଗା—ପ୍ରଭ )

ତୁମ୍ଭ ପ୍ରେମେ ହୋଇ ଭୋଳ ରମା ପାଏ ଖେଦ ଗୂଳ । ପଦ ।
ଅନ୍ନ ନୀର ନିଦ୍ରା ବାଳା    ଛାଡ଼ି ଅତି କ୍ଷୀଣା ହେଲା
ବେଶ ଭୂଷା ଛାଡ଼ିଦେଲା ବାଞ୍ଛି ତୁମ୍ଭ ଗାଢ଼ କୋଳ । ୧ ।
ଅହେ ଗୋପୀ ଚିତ୍ତଚୋର    ଚଣ୍ଡ କାଣ୍ଡେ ମାର ବୀର ।
ନେତ୍ର ସାରିକାଳ ନୀର    ହୋଇଛନ୍ତି ତାର କାଳ । ୨ ।
ବସନ୍ତମେଘ ଚାତ କଞ୍ଜ    ସୁରଜାରବ୍ରଜରାଜ ।
ଦୂର ହେଲା ତାର ତେଜ ଏତେ ଦୁଃଖ ତାକୁ ଦେଲ । ୩ ।

---

ରାଗିଣୀ ମାଞ୍ଜି । ମିଶ୍ର ରୂପ ତାଳ ।

( ଜଣା ପଡ଼ିଲାରେ—ପ୍ରଭ )

ରୂପ ଦେଖିଲାରେ ନୟନ ନେଜା ମୋହର । ପଦ ।
ନବୀନ ସୃଷ୍ଟିକି କରିଅଛି ନିକ ପାଇଁ ପାଇଁ ବାଣୀବର ।
ଚମ୍ପାଗୋଷ୍ଠୀ ପୀତ ବସନ ପଣନ୍ତ୍ର, ଲମ୍ବ ଧଣେ ମନୋହର
ଦାମ ହେମ ଦଣ୍ଡେ    ପୀତ ପଟ ଖଣ୍ଡେ,
ଜଡ଼ୁଥିବା ପରକାର । ୧ ।
ଗେଲେ ନବବାଳୀ, ମନ୍ଦେ ମନ୍ଦେ ଗୂଳ, ହରେ ମନ ଧୀରଙ୍କର,
ଧରିରେ ଚପଳା    ନିର୍ମିତ ପିତୁଳା
ଧୀରେ କରେ କି ବିହାର । ୨ ।
ଗୃହେଁ ନେଇ ତୋଳା, ଖେଳାଇ ଅବଳା, ଚକ୍ରଦାଗ ବାରମ୍ବାର
ସୁବିଶଦ ଘନ    ନୀଳୋତ୍ପଳଗଣ,
ବୃଷ୍ଟି କରେ କି ଅପାର । ୩ ।
ପ୍ରଲମ୍ବ କୁନ୍ତଳ, ଖୋପାରେ ମଞ୍ଜୁଳ, ବକଟିତ ମଲ୍ଲୀ ସର,
କାଳନ୍ଦୀ ମଧ୍ୟରେ    ରାଜେ କି ସୁନ୍ଦରେ,
ଗଙ୍ଗା ହୋଇ ଧାର ଧାର । ୪ ।

ଏ ନାରୀ ସାହାରେ, ହରଙ୍କୁ ଜିଣିବରେ, ଏଥର ଜଣିବ ମାର,
ଶ୍ରୀ ବିକ୍ରମ ଦେବ    କବି ମନୋଭବ ।
ପ୍ରେମ ପୂର୍ଣ୍ଣ ନିଶାକର । ୫ ।

---

ରାଗିଣୀ ବେହାଗ । ଅଦ୍ଧ ତାଳ ।

( ଯମୁନା ପୁଲିନେ—ପ୍ରଭୃ )

ଶୁଣ ରେ ରମଣୀ ମଣି    ମୋ ବିନୟ ବାଣୀକି । ପଦ ।
କେତେ ତପେ ଲଭିଅଛୁ ସେବି ଶୂଳପାଣିଙ୍କି । ଶୁଣ ।
ଅକାରଣେ ମାନ କରି    କାହିଁକି କନକଗୋରୀ ।
ଭୂଷା ତେଜି ବସିଅଛୁ ଅନାଇ ଧରଣୀକି । ୧ ।
ତୁହି ଏକା ମୋର ଗତି    ବୋଲି ଥରେ ରସବତୀ !
ଜାଣିମ କରିବି ତୁହିଁ ତୋ ପ୍ରେମାଳ ଫଣୀକି । ୨ ।
ପିଇବି ତୋର ଅଧର    ଅମୃତକୁ ସମାଦର ।
ନେତ୍ରେ ଦେଖି ନାହୁଁ ବୋଲି ଇତର ତରୁଣୀକି । ୩ ।
ବଚନେ ପରବମଣି    କରି ରଖ ମୋର ପ୍ରାଣ ।
ନ ଦେଇ ମଦନ ଅବାରଣ ବାଣ ଶ୍ରେଣୀକି । ୪ ।
ଶ୍ରୀବୀରେନ୍ଦ୍ର ମଣି ଦେବୀ    ବନ୍ଦନୀ ଜୀବ ବାନ୍ଧବୀ ।
ତୋର ଅନାଦରେ କୃଷ୍ଣ ଲୋପ ହେବ ଏଣିକି । ୫ ।

---

ରାଗିଣୀ କାମୋଦ । ଅଦ୍ଧ ତାଳ ।

( ନିରେଖ ନାସ୍ତିକାନ୍ତି—ପ୍ରଭୃ )

ମାନ କି ଉଚିତ , ମୋ ପରାଣ ମିତ । ପ ।
ତୋର ନାରି ଜାତି , ପଦ ଦାସ ମୁଁ ତ । ମାନ କି ।
ମୋ ନେତ୍ର ସୁଖଦ , ତୋ ମୁଖ ବିଶଦ ।
ଚନ୍ଦ୍ର ଚୋରଜନଦ , ପତ୍ୟେ ଦଣେ ତ । ୧ ।

ନୟନରୁ ନୀର , ବହୁ ଧାର ଧାର ।
ଉରବାସ ତୋର , ହୁଏ ଅଭିଷିକ୍ତ । ୨ ।
ଯୋଷା ଶବେଭୂଷା , ଫୁଲ୍ଲ ସୁନାସା ।
ହସା ମିଶା ଭାଷା , ପ୍ରକାଶ କ୍ୱଚିତ । ୩ ।
ଅବନୀ ଢେଙ୍କଣ , ମୋ ଅଙ୍କ ମଣ୍ଡନ ।
ଭର ତୁ ବହନ , ମୋ ମାଗୁଣି ଏ ତ । ୪ ।
ବିକ୍ରମ ବନ୍ଦିତ , ରମା ପ୍ରାଣନାଥ ।
ନନ୍ଦନ ଶପଥ , ଦୋଷୀ ମୁଁ ନୁହେଁ ତ । ୫ ।

---

ବନଟା ବାଡାଇ , ସ୍ୱାଦୁ ଗୋଠାଯାଇ ।
ହେଲେ ମଧ୍ୟ ସ୍ୱଭାବରେ ।
ଜଳୁ ବୃନ୍ତ ମୂଳ , ହୋଇ ସୁକୋମଳ ।
ଅତ୍ୟନ୍ତ ସ୍ୱାଦୁ ଲାଗରେ ॥

---

ରାଗିଣୀ ସାବେରୀ । ମିଶ୍ର ରୂପ ତାଳ ।

( ପ୍ରାଣବନ୍ଧୁରେ—ପ୍ରଭ )

ରସବତୀ ରେ ! ଜାଣହାସୀ ଜମା ବସୁ ଶ୍ରୀମୁଖ ପୋଛ ରେ । ପ ।
ଦାସେ ବିନା ଦୋଷେ ମାନ କର । ବିସରୁହ ପାଣି ଗଣ୍ଡେ ଭର ।
ବସୁମତୀରେ ଲୁଟି ସୁନ୍ଦରୀ,
ବସି କାନ୍ଦୁ ଜର ତେଲ ଗଲାଣି ଚନ୍ଦ୍ରରେ । ୧ ।
ମାର ପ୍ରହାରୁଛି ମୋତେ ଶରେ, କର ନେଜ ପ୍ରଭ ବାଣ ତାରେ ।
ତୋର ଉରବାସ ଅଢଣୀରେ,
ତରେ ବର୍ଷ ନାଶ କରେ ମୋହର ଶ୍ରାନ୍ତରେ । ୨ ।
କର ଉଦେ ହାସ ରଜନୀଶ, ତୋଷି ଦେଇ ଅଧର ପୀୟୂଷ,
ସୂର କେଳାରେ ରସିଣ ନାଶ,
ମୋର କାମ ତମ ତୃଷା ଖେଦ ଝଟତରେ । ୩ ।

ତର୍ ଅଛୁ ଯେବେ ଦୋଷ ମୁହିଁ, ବର ବାହୁପାଶେ ବାନ୍ଧ ସହି ।
ଭିର ହୃଦୟ କାରାରେ ନେଇ,
କରଜ କୁନ୍ତରେ କର ଭୂଷ ସୁଦନ୍ତ ରେ । ୪ ।
ଶ୍ରୀ ବିକ୍ରମଦେବଙ୍କ ମିତ, ତଳେ ଅନାଦର ଆଉ ସତ ।
ଫୁଲ୍‌ବାଣେ ଅଜ୍ ଲୋପ କାନ୍ତ,
ବୋଲ୍ ହକାରିବା ହୋଇବଟି ସୁମତିରେ । ୫ ।

---

ରାଗିଣୀ ତୋଡ଼ି । ମିଶ୍ରରୂପ ତାଳ ।

( ଶ୍ୟାମ ସମ କମନୀୟ—ପ୍ରଭୃ )

ବାରେ ମୋରେ ଚାହେଁ କୃପାରେ ହେମଦେହି । ପ ।
ଚଣ୍ଡ କାମ କାଣ୍ଡ ଦଣ୍ଡୁ କରେ ନାହିଁ । ବାରେ ।
ଆନନରେ ମନ୍ଦ ହାସ ଚନ୍ଦ୍ରିକା କରି ପ୍ରକାଶ ।
ନାଶେ ମଦନ ଅନ୍ଧାର ପ୍ରାଣସହି । ୧ ।
ଦେଇ ଗାଢ଼ ଆଲିଙ୍ଗନ ମୋର ତପ୍ତ ଅପଘନ ।
ବେଗରେ ଶୀତଳ କରେ ଗୃନ୍ଦମୁହିଁ । ୨ ।
ଯାଉଛି ମୋର ଜୀବନ ରକ୍ଷା କରେ ଜୀବ.ଧନ ।
ବୃନ୍ଦୁ ବିମ୍ବାଧରୁ ସୁଧା ରସ ଦେଇ । ୩ ।
ବିକ୍ରମ ଦେବ ବଦତି ହରି ତନୁଜ ଶପଥ ।
ଆଉ ମୁହିଁ ସମ୍ଭାଳି ପାରିବି ନାହିଁ । ୪ ।

---

କନକ କାନ୍ତା କୀର୍ତ୍ତି ଅଟେ କ କାର ନୟ ।
ସେଥିରେ ଲଗ୍ନ ହେବା ମନ ସଦା ଅଥୟ ।।

---

ରାଗିଣୀ ହିନ୍ଦୁସ୍ଥାନୀ ଭୈରବୀ—ଅଦ୍ଧାତାଳ ।

ଯିବୁ ପରା ଗୃ'ଲେ ରେ ସଜନୀ ବହନେ ସୁଧାକରାନନୀ । ଯିବୁ ।
କୁଞ୍ଜରେ ମୋହନ ଏକଲା ହୋଇଣ ଭୋରେ ଚଉ ରହିଣ ।
ଧୀରତାକୁ ତେଜିଣ ଥିବେ ରେ ତରୁଣୀ । ଯିବୁ । ୧ ।
ନ ଗଲେ ବେଗରେ କେଳି ସମୟରେ ବିତି ଯାଇ ଯିବଟି ରେ ।
ଇଚ୍ଛା ବଳିଥିବ ରେ କୁଞ୍ଜର-ଗାମିନୀ । ଯିବୁ ।
ମାଧବ ମେଳନ ପ୍ରୀତିରେ କରଣ କାମନପବର୍ଦ୍ଧନ ।
କଞ୍ଜେ ଲଗା ଅଞ୍ଜନ ବିକ୍ରମ ବନ୍ଦିନୀ । ଯିବୁ । ୨ ।

---

ରାଗିଣୀ ମୁଖାରି । ଅଦ୍ଧାତାଳି ।

( ରାଧା ଦେ ସାଖୀ—ପ୍ରତି )

ପ୍ରାଣ ସଙ୍ଗିନୀ, ଶୁଣଇ ହୁଅ ତୁ ତୁନି । ପଦ

ମୋତେ ରତିପତିଙ୍କ ଦେଇ ସେ ଯାମିନୀକ,
ଅପେ ରହିଲେ ଶ୍ରୀକାନ୍ତ । ୧ ।
ତାଙ୍କ ଠାରେ ମୋ ମନ ଲାଗିବା ଠାରୁ ଅନ,
ପାଣି ବିଷ ହୋଇଲାଣି । ୨ ।
ଶ୍ୟାମ ଆଶାରେ ପ୍ରତି ରାତ୍ରି ମୋତେ ସୁମତି,
ହେଉଛି ହର ରଜନୀ । ୩ ।
ପୁରୁଷମାନଙ୍କର ପ୍ରୀତି ବାଣୀ ପ୍ରକାର,
ନୀରର ଗାର ତରୁଣୀ । ୪ ।
ବିଚ୍ଛେଦ ସବୁ କାଳେ ଯାଇବାକୁ ମୋ ଭାଲେ,
ଲେଖିଛନ୍ତି ତ ବାଣୀଜାନି । ୫ ।
ରାଜେନ୍ଦ୍ର ମଣି ଦେବୀ ମାନସ ଭଞ୍ଜି ରବି,
ବେଣୁଧର ଶଠାଗ୍ରଣୀ । ୬ ।

---

ରାଗିଣୀ ବେହାଗ । ଅଦ୍ଧାତାଳ ।

( ଯମୁନା ପୁଲୀନେ—ପ୍ରଭୃ )

ବନେ କୁଞ୍ଜ ଅଙ୍କ କେତିତ ରମ୍ୟରେ ବିରାଜୁଛି । ପଦ ।
ଯେଣୁ ରାଧା ବେଣୁପାଣି ସଙ୍ଗ ସେହ୍ ପାଇଛି । ବନେ ।
ମୂଳ ପ୍ରକୃତ ପୁରୁଷ ସେଥି ମାନବୀ ମାନୁଷ
ରୂପରେ ଲବବା ଖେଳା ନେତ୍ରାନନ୍ଦ ଦେଉଛି । ୧ ।
କିବା ମୀନକେତୁ ସ୍ୱର୍ଣ୍ଣ— କାର ଆପଣା ସୁବର୍ଣ୍ଣ
ରାଜ ପଟ୍ଟରେ କଷି ତା ବାନ୍ଦ ଭଲେ ଦେଖୁଛି । ୨ ।
କିବା ଦିବ୍ୟ ଶାଲଗ୍ରାମେ ହେମ ରେଖା ମହାଧାମେ
ଶୋଭି ଭକ୍ତବୃନ୍ଦ ଚିତ୍ତେ ଭକ୍ତିକି ଜନ୍ମାଉଛି । ୩ ।
କିବା କାଳ ନୀରଦରେ ଚଞ୍ଚଳା ପ୍ରକାଶି ସ୍ଥିରେ
ଭାରଦ୍ୱାଜ ଚାତକମନେ ମୋଦ ପ୍ରଦା ହେଉଛି । ୪ ।

---

ଅଷାଢ଼ ଶୁକ୍ଳବାଣୀ ।

ବାରାନିଧି ସୁତା ମାନସ ହର ।
ଗଜେନ୍ଦ୍ର ରକ୍ଷକ ଧୃତ ମନ୍ଦର ।
ଚନ୍ଦ୍ର ପୁର ଅଦ୍ୱ ନ ମାଗେ ହର ।
କୋମଳ ଚରଣେ କର କଙ୍କଣ ।
ମହିମା ମାଗୁଛି । ଦ୍ୱିତୀୟ ବର୍ଣ୍ଣେ ଯାର ନାମ ଅଛି । ୧ ।
ନାରାୟଣ ବସ୍ତ୍ର ତ୍ରିଲୋକେଶ୍ୱର ।
କଂଜେକ୍ଷଣ ଶଙ୍ଖରଥାଙ୍ଗଧର ।
ଚନ୍ଦ୍ର ମୁଖ ସେବାରେ ଥିବ ସଦା ।
କମଳା ସଙ୍ଗେ ହେଉ ଏତୁ ବାଦା ।
ମହିମା ମାଗୁଛି । ଦ୍ୱିତୀୟ ବର୍ଣ୍ଣେ ଯାର ନାମ ଅଛି । ୨ ।

ହେ ରାମ ସୀତା ମୁଖ ପଦ୍ମ ରବି ।
ସଟେଜଶ୍ୱର ପାତକ ଗିରି ପବି ।
ଇନ୍ଦ୍ର ନୀଳ ଛବି ତୋ ପାଦ ପଦ୍ମ ।
ମମ ହୃଦୟେ ସଦା କରୁ ସଦ୍ମ ।
ମଣିମା ମାଗୁଛି । ଦ୍ୱିତୀୟ ବର୍ଣ୍ଣେ ଯାର ନାମ ଅଛି । ୩ ।

ଧରାଧର ଶୌରି କରୁଣା କର ।
ସାଟେଜଣି ସାଙ୍ଗ ବୃଷଭାନୁଜାର ।
ସାନ୍ଦ୍ର ବୃନ୍ଦାବନ ନିକୁଞ୍ଜେ ନିତ ।
ସମସ୍ତେ କହୁଥିବ ଗୋପୀପତି ।
ମଣିମା ମାଗୁଛି । ଦ୍ୱିତୀୟ ବର୍ଣ୍ଣେ ଯାର ନାମ ଅଛି । ୪ ।

ଶ୍ରୀ ରାସେଶ୍ୱରୀ ରଞ୍ଜନ ଗୋବିନ୍ଦ ।
ଦ୍ୱିଜେନ୍ଦ୍ର ସନ୍ନୁତ ପଦାରବିନ୍ଦ ।
ଇନ୍ଦ୍ର ଆଦି ଦେବ ବୃନ୍ଦ ପୂଜିତ ।
ନାମ ଭଜନେ ରହୁ ମୋର ଚିତ୍ତ ।
ମଣିମା ମାଗୁଛି । ଦ୍ୱିତୀୟ ବର୍ଣ୍ଣେ ଯାର ନାମ ଅଛି । ୫ ।

---

କଲ୍ୟାଣ ଅହାରି ।

ପାର୍ବତୀ ମେଦିନୀ । ହରିପ୍ରିୟା ବହ୍ନି । ଏ ଚାରି ନାମ ପଞ୍ଚାକ୍ଷରେ ।
କହ ସେ ହେରମ୍ବ, ନାମ ପୂର୍ଣ୍ଣ ହେବ
ଧାତା ଅଦ୍ୟ ବର୍ଣ୍ଣ ଲୋପରେ ।
ଏହିଲେ । ବେନି ଅକ୍ଷର ଶକ୍ତିଧର ।
ହେବ ତିନି ବର୍ଣ୍ଣ । ଛାଡ଼ିଲେ ମଦନ । ଚାରି ବର୍ଣ୍ଣ ସ୍ଥାନେ ଉନ୍ଦୁର । ୦ ।
ଉତ୍ତର :—ଉମା କୁମାର ।

---

### ଅଷାଢ଼ ଶୁକ୍ଳବାଣୀ ।

କି ଅବା ଶରଦ ଶଶାଙ୍କ କଳା ।
କି ଅବା ସେବତଚମ୍ପକମାଳା ।
କଅବା ବଲ୍ଲରୀ ତପ୍ତ କାଞ୍ଚନ ।
କି ଅବା ଦାମିନୀ ନୁହେ ଏମାନ ।
ମୋର ପୂର୍ବ ତପ । ଜନ୍ମ ହୋଇଛି ଧରି ବାଳା ରୂପ । ୦ ।

---

### ଅଷାଢ ଶୁକ୍ଳବାଣୀ ।

ରମା ରତନ ମେଲାଣି କି କରି ।
ଘନକୁନ୍ତଳା ଯିବ ଦେଶାନ୍ତର ।
କନକପତ ଅଙ୍ଗ ଅବଙ୍କା ମୂର୍ତ୍ତି ।
ନ କରି ପାରି ଯାଉଅଛି ସଙ୍ଗୀ ।
କରିବର ଗତି । ଚତୁର ଧରୁଛି ଯେମନ ବନିତା ।
ମାଧବ ସୁତ ବାଧାରୁ ତୋହର ।
ଅନନ ମୁକୁର ମ୍ଳାନ ନ କର ।
ତମ୍ବାମ ଦନ ରତ ସଖୀ ସଙ୍ଗେ ।
ରେ ଗୁଣବତୀ ବଞ୍ଚିଥାଅ ରଙ୍ଗେ ।
ପୁଣି ଚିନ୍ତା ତେଜ । ଦଏ ସେଦ ନିକରେ ରୋଗ ବ୍ରଜ । ୨ ।
ମତି ମୋହନୀ ରୂପ ଜଣାଇବ ।
ତୁ କି ନ ଜାଣ ମୋ ପ୍ରାଣବାନ୍ଧବୀ ।
ପ୍ରତି ଚରଣର ଦ୍ୱିତୀୟ ବର୍ଣ୍ଣ ।
ଯେଣି ପାଳ ମୂର୍ତ୍ତି ଯାଅନ୍ତେ ଧନ ।
ବୋଲ ଏକ ଧୀର । କହୁଲ ଧରି ନିଜ ପ୍ରିୟା କର । ୩ ।
( ମାନ ନ କରବୁ ଧନ ମାଗୁଣି ଏତକ )

---

ଅଷାଢ଼ ଶୁକ୍ଳବାଣୀ

ତିନି ବର୍ଣ୍ଣେ ନାମ ରତ୍ନପଥର ।
ସେ ପୁଣି ପ୍ରାର୍ଥୀ ହେବ ଜଳଦର ।
ପ୍ରଥମବର୍ଣ୍ଣ ଲୋପେ ନାଟ୍ୟ ସ୍ଥାନ ।
ଦ୍ୱିତୀୟ ଲୋପେ ସବ୍ବାସ ଜାଣ ।
ତୃତୀୟ ଲୋପରେ ।
ବଳ ବୋଲି ଅର୍ଥ ହେବ ଲୋକରେ । ୦ ।

ଉତ୍ତର :—ସାରଙ୍ଗ ।

---

ଶ୍ଳୋ । କସ୍ମିନ୍ ଦେବେ ବେଦସ୍ତୁତଃ କିଂ ଜଲ୍ପତି ଚାତକୋତ୍ସୁକଃ ।
ସଂସ୍କୃତୋତ୍କଳ ଭାଷାଭ୍ୟାମେକମେବୋତ୍ତରଂ ବଦ ॥

ଉତ୍ତର :—ଧନଦେ ।

ଶ୍ଳୋ । କୁତୋଭୀତାନ୍ତ କୋଦଣ୍ଡଂ ତୃଷିତଃ କିନ୍ନୁ ଭାଷତେ ।
ସଂସ୍କୃତୋତ୍କଳ ଭାଷାଭ୍ୟାମେକମେବୋତ୍ତରଂ ବଦ ॥

ଉତ୍ତର :—ଜଳଦେ ।

ଶ୍ଳୋ । କସ୍ମିନ୍ ଦଧ୍ୟୋନ୍ନୃପଃ ଖ୍ୟାତୋ ଗୋପଂ କିଂ ବକ୍ତି କର୍ଷକଃ ।
ସଂସ୍କୃତୋତ୍କଳ ଭାଷାଭ୍ୟାମେକମେବୋତ୍ତରଂ ବଦ ॥

ଉତ୍ତର :—ପାଳନେ ।

---

ଅଷାଢ଼ ଶୁକ୍ଳବାଣୀ ।

ଶ୍ୟାମ ପୁରୀଣି ଶ୍ରବଣେ ପବନ । ଦାମ ବଢ଼ାଇଲେ ଆଦର ପାଏ ।
ଧର୍ମ ନିକଟ ବାସ ଜନପଦ । ଧାମ ଭାଙ୍ଗିଲେ ନରକ ସୁଖଦ ।
ମନରେ ବିଚାର । ଜଣା ନ ଗଲେ ଗୁରୁଙ୍କୁ ପଚାର । ୦ ।

## ଅଷାଢ଼ ଶୁକ୍ଳବାଣୀ ।

ବାତ ଅଗ୍ନି ଜଳକର ପରର ।
ଶତରେ ଜର୍ଜ୍ଜର ହୋଇବା ନର ।
ସାନ୍ତ ରାଜ ଯୋଗ ସାଧି ନ ପାରି ।
ଗତି ଭବ ସଂସାରେ ହୁଏ ଘାରି ।
ଉରରେ ଏହାର । ଭାବ ଯେ ଜାଣଇ ସେ ଅଟେ ଧୀର । ୦ ।

---

## ସୁଧାକର ତତ୍ତ୍ୱ ।

ଅଟେ ସୁଧାକର । ସୁଧା ପରି କର । ନୁହେ ସୁଧାର ଆକର ।
ତା କର ସମୂହ । ଉହ ସିନା ଗ୍ରହ । ହୁଏ କି ? ସୁଧାର ଘର ॥

---

## ଅଷାଢ଼ ଶୁକ୍ଳବାଣୀ ।

କିଏ ବେଳ ଲୋକେ ସୁଖ ଦାୟକ ।
କିସ ଇହ ପର ଭୋଗ ସାଧକ ।
କିସ ନ ଥିଲେ ବୃଥା ଏ ଜୀବନ ।
କିସ ଅଟଇ ଇନ୍ଦର୍ ସଦନ ।
ଉତ୍ତର ବଖାଣ । ନିବର୍ଣ୍ଣେ ସବ୍ୟାପ ସବ୍ୟେ ସମାନ । ୦ ।
ଉତ୍ତର :—ନନ୍ଦନ । କନକ । ନୟନ । ଜଳଜ ବା ନଳିନ ।

---

କିଏ ଦିଅଇ ଶାଶ୍ୱତ ସୁଖକୁ । କିଏ ଘାଣ୍ଟି ଚକଟଇ ମନକୁ ।
କିସ ନାରଖାର କରେ କରମ । କିସ ରମ୍ୟ ହୋଇ ଜନ୍ମାଏ ଭ୍ରମ ।
ଉତ୍ତର ବଖାଣ । ପଞ୍ଚବର୍ଣ୍ଣେ ସବ୍ୟାସବ୍ୟେ ସମାନ । ୦ ।
ଉତ୍ତର :—ନନ୍ଦନନ୍ଦନ । ରମାକୁମାର । ରତ୍ନସଭର । ନବଯୌବନ ।

---

ମର ମରନାହିଁ ଜଗତେ କିଏ ।
ବୀରେ କି କରୁଥିଲେ ରଣେ ଜୟେ ।
କିସ ତୋଷଇ ସାରଙ୍ଗ ମାନସ ।
ଜନେ ଧର୍ମ ଛାଡ଼ିବା ହେତୁ କିସ ।
ଉତ୍ତର ବଖାଣ ।
ସପ୍ତବର୍ଣ୍ଣେ ସବ୍ୟାସବ୍ୟେ ସମାନ । ୦ ।

ଉତ୍ତର :—ରମାନନ୍ଦନମାର । ବରଜଲଜରବ । ନବନଳିନବନ ।
ଧସ୍ୱପତ୍ୟପସ୍ୱଧ ।

---

କାହିଁକି ପୂଜାପାଏ କୁଳହୀନ ।
ପୂଜ୍ୟତର ହୁଏ ସୁକୁଳ ବନ ।
ମୂର୍ଖଜନ ଲଭେ ଜନସମ୍ମାନ ।
ମାନ୍ୟତର ହୋଇ ରାଜେ ବିଦ୍ୱାନ
ସେହେତୁ ବଖାଣ ।
ନବ ବର୍ଣ୍ଣେ ସବ୍ୟାସବ୍ୟେ ସମାନ ।

ଉତ୍ତର :—ରସାବରଗୌରବସାର ।

---

## ରାବଣ ଉକ୍ତି

ଦଶଶିରକଣ୍ଠନାଦେ କାନ୍ଦିଲା ସେ ଯେଣୁ ।
ଦଶକଣ୍ଠରାବଣ ନାମଟି ଦତ୍ତ ତେଣୁ । ୧ ।
ନମାର୍ଥ ବ୍ୟବହାରର ପ୍ରଥାତ ବିଦିତ ।
ଦଶକଣ୍ଠ ବୋଲି ରାବଣ ବୋଲି ବିଖ୍ୟାତ । ୨ ।
କଣ୍ଠ ପ୍ରତିପଦ ଗ୍ରୀବାଙ୍କବାଚୀ ଭାପରେ ।
ସମ୍ମିଳିତ ହେଲା ଦଶପଦ ସହିତରେ । ୩ ।

ତତ୍ତ୍ୱ ନ ବୁଝି ଦଶଶିର ଖଂଶେ ଭବ ।
ବୋଲଣ କଳ୍ପନା କଲେ ଅଣ୍ଡ ଗହ୍ୱର । ୪ ।

ନୋହିଲେ ପାଦଦ୍ୱୟ ତେତେ ଶରୀର ଭାର ।
ବହି ପାରନ୍ତା କି ? ଅହେ ପଣ୍ଡିତେ ବିଚାର । ୫ ।

ସେପରି ଚାର ସୁତ ପାଇ ଗର୍ଭ ଜନନୀ ।
ପ୍ରସବି ପାରନ୍ତା କି ? ଅତ୍ର ସନ୍ଧାନ ଭଣ । ୬ ।

ଜଗତେ ଚତୁଷ୍ପ ଶିଶୁ ଜନମିଲେ ହେଲେ ।
ବିଗତ ଗର୍ଭ ହେବ କାହିଁକି ? ଚଳାଙ୍କେ । ୭ ।

ସୁନା ରୁପା ବେନି କର ଘଟେ ଘେନିଥିବା ଜନକୁ କହିତ ।
ଜନଙ୍କୁ ସମ ରୁପାକୁ ବିଷମ ସଂଖ୍ୟାରେ ଗୁଣ ଚାହିଁଲ । ୧ ।

ଦକ୍ଷିଣ କରସ୍ଥ ପଦାର୍ଥ ଚାହିଁତ ଅଙ୍କକୁ ସମ ସଂଖ୍ୟାରେ ।
ବାମକର ଗତ ପଦାର୍ଥ ଚାହିଁତ ଅଙ୍କ ବିଷମ ସଂଖ୍ୟାରେ । ୨ ।

ଗୁଣି ଲବ୍ଧ ଦୁଇ ଯେତେକ ମିଶାଇ ହିସାବକୁ ବୁଝ ଜ୍ଞାନ ।
ସେ ଲବ୍ଧ ଅଙ୍କ ଯଦି ବିଷମାଙ୍କ ଦକ୍ଷିଣ ପାଣିରେ ସୁନା । ୩ ।

ଯଦି ସେ ସମାନ ସଂଖ୍ୟା ସୁଦକ୍ଷିଣ ହସ୍ତରେ ଥାଏ ରଜତ ।
ଦକ୍ଷିଣ କରସ୍ଥ ଦ୍ରବ୍ୟ ବ୍ୟତିରିକ୍ତ ଦ୍ରବ୍ୟ ବାମେ ଥାଏ ସତ । ୪ ।

ଶୀତଳପଦ୍ୟ :—

ଯେ କଲା ବ୍ରହ୍ମାର ଅନନ୍ତ କମଳକୁ ରମଣୀ ରମଣୀୟ ନୃତ୍ୟ ସଦନ ।
ଯେ କଲା ବିଷ୍ଣୁର ଦିବ୍ୟ ହୃତ୍ପୀଠକୁ ତାହାର କମଳାସୁ ସିଂହ ପୀଠ,
ଯେ କଲା ବାମଦେବର ଶୁଭ୍ରମଞ୍ଜୁଳ ଦେହକୁ ବାମାର ଅର୍ଦ୍ଧାଗ ।
ଯେ କଲା ଜନ୍ମକୁ ସମାପ୍ତକଷ୍ଟ, ଯା ହେତୁକୁ ଦାଶରଥିନନ୍ଦସୁକ୍ତ ।

ସେହୁ ଜଗଦେକବୀର ଜୀବାଳିତରୁ—
ମଥନକର ପୁଷ୍ପକାଣ୍ଡ୍ରଚକୋଦଣ୍ଡହସ୍ତ ।
ମୀନକେତନ ଦର୍ପକ ଶବ ଚରତ ।
ଜୟ ହୃଦୀଶ୍ୱର ବିକ୍ରମ ପ୍ରଣତ ପାଦ ॥

---

ରସ ବିଷୟ

ଶ୍ରୀରାଧାକୃଷ୍ଣାଭ୍ୟାଂ ନମଃ । ଶ୍ରୀସୀତାରାମାଭ୍ୟାଂ ନମଃ ॥

କଞ୍ଜ ବଦନର ଚୂତ ନାକର ନୀଲୋତ୍ପଳ ଲୋଚନ ଯୁଗଳର
ନବମାଳିକା କଳିକା ଦାନ୍ତର ଅଶୋକ କୁସୁମ ବରଧରର
ହେବାରୁ ସମାନ; ସେ ଫୁଲଙ୍କୁ ଶର କଲା ମଦନ ।

---

କୋଶଳା ମଞ୍ଜି ସୁବର୍ଣ୍ଣ ସ୍ଥାଳରେ ହୋଇ ସମ୍ପୂର୍ଣ୍ଣ
ମଧ୍ୟରେ ହରଣ ଖୁରି ପରସ୍ୟେ ତୋର ॥

---

କାମୋଦୀ । ଅଦ୍ଧତାଳ

ଚାହିଁ ଯାଇଁ ଏ ରୂପା ରମଣୀ । ବରପଟୀର ହାସିନୀ । ପଦ ।
ଅକାରଣେ ତେ ର । ମୁଖାମ୍ବୁଜାତର ।
ଅତୁଳ ସୁନ୍ଦର ଝଳ ହେଲା ଦୂର । ୧ ।
ନବୀନ ନଳିନ । ସମାନ ନୟନ ।
—ଯୁଗଳରୁ ବଳ ବହେ ଅନୁକ୍ଷଣ । ୨ ।
ବିକ୍ରମ ବିନୂତ । ମଦନ ଶପଥ ।
ନ କର ଗୁପତ । କାରଣ କହତ । ୩ ।

---

## ଋତୁ ବର୍ଣ୍ଣନ

( ରାଗିଣୀ—ପୁନ୍ନାଗ । ତାଳ—ଏକ )

ଦେଖ ହେମନ୍ତ ସମୟ,
ଅଖଣ୍ଡଳ ଚାପଶୂନ୍ୟ ଶୂନ୍ୟ ହିମମୟ ।ପ।
ସର ସ୍ୱଚ୍ଛ ଜଳେ ହଂସକୁଳ ସୁଖେ ରତ ।
ପୂରବ୍ରଜ ଉଦ୍ୱରତେ ହସନ୍ତୀ ସଂଯୁତ ।୧।
ନବ ଛଉ ଗୁରୁକଣ୍ଠ ଧାରଣେ ଅଧକ୍ତ ।
କର ଦେଇ କୃଷକାଳ ଋଣରୁ ବିମୁକ୍ତ ।୨।
ଅରବିନ୍ଦମିତ୍ର କରେ ମାନସ ସରାଗ ।
ସରସିଜାତ ଶୀତେବେ କରେ ସେ ବିରାଗ ।୩।
ବୀର ଶ୍ରୀ ବିକ୍ରମଦେବବର୍ମାର ମାନସ ।
ନୀରନ୍ତର ଶ୍ରୀ କେଶବ ଧ୍ୟାନେ ଲଭେ ତୋଷ ।୪।

---

( ରାଗିଣୀ—ହରିକାମୋଦୀ । ତାଳ—ରୂପକ )

ଶିଶିର ସମୟ—ପୀଡ଼ାର ଆଳୟ ।ପ।
ସେ ତ କଲା ଶତଦଳଙ୍କ ପ୍ରଳୟ ।ଶିଶିର।
ପିକ କଳସ୍ୱନ, ବର୍ଦ୍ଧନ ସାଧନ,
ବକୁଳ ରସାଳସାଳରେ ଶୋଭନ ।୧।
ରଜନୀ ପ୍ରମାଣ, ହୋଇ ପ୍ରବର୍ଦ୍ଧନ,
ବଳାରେ ଜନଙ୍କୁ କରାଏ ଶୟନ ।୨।
ହିମ ପାରାବାର, ମଚର ମକର,
ବିଯୋଗିଜୀବନ ନାଶନେ ତତ୍ପର ।୩।
ଛାୟାରେ ପ୍ରଚୁର, ରବ ଦିବାକର,
କରଇ ବିରହୀମାନଙ୍କୁ କାତର ।୪।

ବନମେଶ ଚିତ୍ତ, ହୋଇ ଭକ୍ତିଯୁତ,
ବିଧୁବା ମାଧବ ପୂଜନେ ନିରତ ।୫।

---

( ରାଗିଣୀ—ଆନନ୍ଦ ଭୈରବୀ—ତାଳ—ତ୍ରିପୁଟ )

ଏ ବସନ୍ତ ଋତୁବର
ଦେଖ କେଡ଼େ ମନୋହର । ପଦ ।
ବିଯୋଗୀ ସନ୍ତାପକର । ସଂଯୋଗୀ ସନ୍ତାପ ହର । ଏ ବସନ୍ତ ।
କୁନ୍ଦ କୁନ୍ତ ମାର ମିତ । ଶୁକ ସାରି ସେନାନ୍ୱିତ ।
ବସନ୍ତ ନୃପ ଉଦିତ । ବିରହୀ ହନନ କର ।୧।
ମାଧବୀ ଲତାରେ ଚୂତ । ସାଳ ହୋଇଛନ୍ତି ବେଷ୍ଟିତ ।
ସପ୍ରେମେ କାନ୍ତା'ରେ କାନ୍ତ । ତାଡ଼ାଲିଙ୍ଗିତ ପ୍ରକାର ।୨।
ନବମଲ୍ଲୀ ବାଳୀବ୍ରାତ । ରଙ୍ଗେ ହୋଇ କୁସୁମିତ ।
ହରେ ମଧୁବ୍ରତ କାନ୍ତ । ମନୋଧନକୁ ସତ୍ୱର ।୩।
ଦେଖି ରସାଳ ସୁଫଳ । ଆନନ୍ଦରେ କୋକିଳ ।
ଲପିବାନ୍ତି କଳ କଳ । ହୋଉଛି କର୍ଣ୍ଣ ମଧୁର ।୪।
ମାର ଶରେ ହୋଇ ଭୋଳ । ଖେଳୁଛନ୍ତି ନାନା ଖେଳ ।
ଅପ୍ରେମେ ତୋଷେ ସକଳ । ଯୁବା ନାଗରୀ ନାଗର ।୫।
କେ ବଦ ମେଦ ବର୍ଦ୍ଧନ । ଦେବୀ ନାଥଙ୍କ ରଚନ ।
କରଣେ ବିଦମ ମନ । ସିନ୍ଧୁଜା ଦୁଧାକର ।୬।

---

( ରାଗିଣୀ—ସୌରାଷ୍ଟ୍ରୀ । ତାଳ—ଅଠ )

ଗ୍ରୀଷ୍ମ ସମୟ । ପ ।

ଚନ୍ଦନ ଲେପନେ ଶୀତଳାମ୍ବୁ ପାନେ ଅସକ୍ତ ଜନ ହୃଦୟ । ଗ୍ରୀଷ୍ମ ।
ରଜନୀ ନିତାନ୍ତ ହୋଇ ସଙ୍କୁଚିତ ଦିବସ ବେଶୀ ବଢ଼ିଲା ।
ପରିଶ୍ରମ ସ୍ଥାନେ ଅଙ୍ଗ ପ୍ରତିକ୍ଷଣେ ଘର୍ମ ସଲିଳ ସ୍ରବିଲା ।୧।
ଶିରୀଷ କନକ ମଲ୍ଲିକା ଚମ୍ପକ କୁସୁମଚୟ ଫୁଟିଲା ।
ପନସ ରସାଳ ଜମ୍ବୁ ନିମ୍ବ-ଆଦି —ଫଳ ପ୍ରଚୁର ଫଳିଲା ।୨।

ଧରଣୀଧରରେ ତପିନ ଗର୍ଭରେ ଦାବାନଳ ପ୍ରଜ୍ୱଳିଲା ।
ମଳୟ ପବନ ହୋଇ ସଙ୍ଗୋପନ ଝଡାଘ ବାତ ବୋହିଲା । ୩ ।
ହୋଇ ଶୀଘ୍ରତର ବିଶୋଷିତ ନୀର ଝର୍ଣ୍ଣ ନଦ ଦହିଲା ।
ଧୂଳି ଗଗନକୁ ଅନ୍ଧଦ ନେତ୍ରକୁ ସହଜରେ ମୁଦାଇଲା । ୪ ।
ରସିକା ରସିକ ମାନସ ଉଦକ ହେଲା କରଣେ ରସିଲା ।
ବିକ୍ରମ ଦେବର ଶତ୍ରୁ ନରନ୍ତର ତ୍ରିବିକ୍ରମକୁ ଚିନ୍ତିଲା । ୫ ।

( ରାଗିଣୀ—ଧନାଶ୍ରୀ । ତାଳ—ଅଠ )

ଶ୍ରାବଣ ମାସ ଏବେ ଆସିଲାରେ । ପ ।
ଉତ୍ସାହ କୃଷକର ବଢ଼ିଲା ରେ । ଶ୍ରାବଣ···
କାଳ ଜଳଧର ।
ସଜ୍ଜ ପର ସ୍ତର ।
ଶଶାଙ୍କ ମଣ୍ଡଳକୁ ଗ୍ରାସିଲାରେ । ୧ ।
ସତତ ବିଜୁଳି ।
ଗଗନେ ପ୍ରବଳି ।
ଲୋଚନ ପ୍ରତିବନ୍ଧ ହୋଇଲା ରେ । ୨ ।
ଘୋରେ ମେଘରାଜି ।
ଗରଜି ଗରଜି ।
ହୃଦୟ କମ୍ପନକୁ କଲାରେ । ୩ ।
ଏ ବରଷା କାଳ ।
ବିରହୀଙ୍କ କାଳ ।
ବୋଲି ଭେକ ରବରେ କହିଲାରେ ।୪ ।
ଉଚିତ୍ୟ ପ୍ରବର ।
ବିକ୍ରମଦେବର ।
ମାନସ ରଚନାରେ ମଜ୍ଜିଲାରେ । ୫ ।

( ରାଗିଣୀ—ମନୋରମା । ତାଳ—ଏକ । )

ଦେଖ ଶାରଦ ସମୟ ହୋଇଲା ରେ । ପ ।
ଅମ୍ବୁଜାରବିମ୍ବ ସ୍ୱଚ୍ଛେ ଦିଶିଲା ରେ । ଦେଖ ।
ତଟାକ ନିର୍ମଳ ତୋୟ । ତୋୟଜାତ କୁବଳୟ ।
ଯୁତ ହୋଇ ଲୋଚନକୁ ମୋହିଲା ରେ । ୧ ।
ହୋଇ ନାତିଶୀତ ନାତି, ଖରକରକରକାନ୍ତି ।
ସକଳ ଜନମନକୁ ତୋଷିଲା ରେ । ୨ ।
ଶସ୍ୟରେ କେଦାର ରାଜି । ମରକତ ପର ରାଜି ।
କୃଷୀବଳପ୍ରକରକୁ ରଞ୍ଜିଲା ରେ । ୩ ।
ଶାରଦୀୟ ନବରାତ୍ର । ବଶରୁ ଅତି ପବିତ୍ର ।
ଲୋକଜନନୀପୂଜନ ବଢିଲା ରେ । ୪ ।
ଚଉ ବିକ୍ରମଦେବବର । ଶ୍ରୀ ରାଧିକାଦାମୋଦର ।
ପାଦକଞ୍ଜ ସେବନରେ ମଜ୍ଜିଲା ରେ । ୫ ।

---

( ରାଗିଣୀ—ଖମାଚ । ତାଳ—ଏକ । )

ରାଧାସ୍ୟସାରସଦିବାକର ପାହିମାଂ । ପ ।
‘ଗୋପୀନେତ୍ରନୀଲୋତ୍ପଳ ସୁଧାକର ପାହିମାଂ । ରାଧା ।
ନିଗମଚୟ ହାରକ । ଶଙ୍ଖାସୁର ବିଚ୍ଛେଦକ ।
କର୍ପର ଧୃତମନ୍ଦରଧରାଧର ପାହିମାଂ । ୧ ।
ଧରଣୀଧାରଣଦନ୍ତ । କୃତହେମଲୋଚନାନ୍ତ ।
ମନୁଜ କଣ୍ଠୀରବସ୍ୱରୂପଧର ପାହିମାଂ । ୨ ।
ବଳିଗର୍ବନାଶକ । ବସୁନ୍ଧରାଧିପାନ୍ତକ ।
ରାବଣବଂଶସରୋଜକରୀବର ପାହିମାଂ । ୩ ।
ତପନସୁତାଭେଦନ । ଅନ୍ତକକ୍ଲେଶାସଦନ ।
ବିକ୍ରମ ବନ୍ଦିତ କଳ୍କି ରୂପଧର ପାହିମାଂ । ୪ ।

---

କାଳଦୀର୍ଘ ଦେଶ ଚତୁରସ୍ର ଦ୍ରବ୍ୟଘନ ।
ଚତୁଃପାର୍ଶ୍ୱ ଅଟେ ସେହୁ ଯେ ସୃଷ୍ଟିକାରଣ ॥

---

## ନିଦାଘ ସମୟ

ଅହୋ ! ଭୀଷ୍ମ ଗ୍ରୀଷ୍ମ ଋତୁ ମଧ୍ୟାହ୍ନ ସମୟ ।
ପ୍ରପଞ୍ଚ ପ୍ରଚଣ୍ଡ ଚଣ୍ଡକର କରମୟ ॥
ସୂର-କର କର ଘାତ ଲଭି ଜନ୍ତୁମାନେ ।
ବିହ୍ୱଳ ବିକଳ ହୋଇ ସ୍ଥିତ ଅଣ୍ଡା ଥାନେ ॥
ଘର ଭିତରେ ଉତ୍ତାପ ଦାଣ୍ଡେ ଝାଞ୍ଜି ବାତ ।
ଯେସନେ ଆଗରେ କୂପ ପଛ ଆଡେ ଖାତ ॥
ବର୍ଷାକାଳେ ପ୍ରଭବିବା ତରୁ ଲତା ପାଇଁ ।
ପ୍ରଦେଶ ଯୋଗାଇବାକୁ ନିଜ ଶରେ ଧାଇ ॥
ପରହିତକର ଗୁଣ କଳିତ କାନନ ।
ଦାବାନଳରେ କରଇ ଆତ୍ମ ବିସର୍ଜନ ॥
ମାତ୍ର ଜନ୍ତୁଙ୍କ କଷ୍ଟ ସେ ମନେ ନ ଭାବଇ ।
ମମକାର ତ ଜଗତେ ପ୍ରବଳ ଅଟଇ ॥
ପ୍ରଭଞ୍ଜନ ପଶ୍ଚିମରୁ ପ୍ରଖରରେ ବହି ।
ନିଜ ବଳ ମହିମାକୁ ଲୋକେ ପ୍ରକଟଇ ॥
ଶୀତଳତା ବଶୁଁ କୁଅପାଣି ବଟ ଛାଇ ।
କୃତୀ ହେଲେ ମାନବଙ୍କ ପ୍ରଶଂସାକୁ ପାଇ ॥
ଜଳ ସଂଗ୍ରହ କରଣେ ମୃତ୍ତିକାର ପାତ୍ର ।
ହେମ ରୌପ୍ୟ ପାତ୍ରଠାରୁ ଅତ୍ୟାଦର ପାତ୍ର ॥
ତପନ ଅପଣା କରେ ଗ୍ରୀଷ୍ମ ପ୍ରଭାବରୁ ।
ଜଳ ପାନକରେ ଜଳସ୍ଥାନମାନଙ୍କରୁ ॥
ସଲିଳବିହୀନ ହେଲେ ତଟିନୀ ତଡ଼ାଗ ।
ଅତି ଦୁଃଖୀ ବାଟେ ଯାଉଥିବା ଲୋକଯାକ ॥
ଖରାରେ ଥିବା ମନୁଜେ ଛାୟାକୁ, ଛାୟାରେ ।
ଥିବା ଲୋକେ କୁଡ଼ିଅକୁ, ସାନ କୁଡ଼ିଅରେ ॥

ବାସ କରୁଥିବା ଜନେ ସୁନ୍ଦର ସୌଧକୁ ।
ସୌଧସ୍ଥ ନରେ ବାଞ୍ଛନ୍ତି ହେମ ପର୍ବତକୁ ॥

ସବୁଙ୍କର ଅନ୍ତ ଅଛି ନଶ୍ୱର ଜଗତେ ।
ମାତ୍ର ମାନବ ବାଞ୍ଛାର ଅନ୍ତ ନାହିଁ ସତେ ॥

କୁଟୀରନିବାସୀ ସୁଖେ ନିଦ୍ରିତ ସୌଧରେ ।
ଚନ୍ଦନଚର୍ଚ୍ଚିତ ବ୍ୟକ୍ତି କୋମଳ ତଳ୍ପରେ ॥

କଙ୍କର ସେବିତ ହୋଇ କରେ ଜାଗରଣ ।
ବୋଧହୁଏ ତୃପ୍ତି ମାତ୍ର ତାହାର କାରଣ ॥

ଅକର୍ମୀ କର୍ମୀ ସକଳେ ଝାଳେ ଜର୍ଜ୍ଜରିତ ।
ଘିମିର ଗୁଡ଼ିକେ ଅଙ୍ଗ ହୁଅଇ ପୂରିତ ॥

ଅଭୋକ୍ତା ଦୁର୍ବଳ, ଭୋକ୍ତା ପୀଡ଼ିତ ଶୋଷରେ ।
ମୃଗତୃଷ୍ଣା ପ୍ରସରଇ ମରୁ ପ୍ରଦେଶରେ ॥

କୁକୁରେ ଜିଭ ଲମ୍ବାଇ ସୁଶୀତଳ ସ୍ଥଳେ ।
ପଡ଼ି ରହି ଧଇଁ ସଇଁ ହୁଅନ୍ତି ବିକଳେ ॥

ଶିରୀଷ କେତକୀ ହେମପୁଷ୍ପକ ପୁଷ୍ପିତ ।
ଅମ୍ର ଜମ୍ବୁ ପନସାଦି ଫଳ ଶବ୍ଜାତ ॥

କୃଷକେ କର୍ମନିବୃତ୍ତି; କାରୁ କର୍ମିଗଣ ।
ପେଟ ପାଇଁ କାର୍ଯ୍ୟକର ସହଇ କଷଣ ॥

ଶୀତଳ ଜଳ ପ୍ରକୃତ ସାମାନ୍ୟ ପଦାର୍ଥ ।
ପଥିକଙ୍କୁ ଦେଇ ଜନେ ହୁଅନ୍ତି କୃତାର୍ଥ ॥

ଦୁଃଖଦ ଦିନବୃଦ୍ଧି ସୁଖଦକ୍ଷପାକ୍ଷୟ ।
"ପାପୀ ଚିରାୟୁଃ; ସୁକୃତୀ ଗତାୟୁଃ" ନିଶ୍ଚୟ ॥

ପାବକ ଯୁବକ; ଚନ୍ଦ୍ରକାତ ପଳାତକ ।
ଶୀତ ମୟୂଖ ମାତ୍ରିଅ ଦିଶେ ତେଜ ଝୁଙ୍କ ॥

ଦ୍ୱିବାଜମ ବାମନାଧିପତ୍ୟ ଋତୁବର ।
ଲୋକଖେଦପ୍ରଦ ହେବା ମହିମା କାଳର ॥

## ହେମନ୍ତ ସମୟ

କୃତାନ୍ତ ଦନ୍ତ ସମାନ ହେମନ୍ତ ସମୟ ।
ଉପଗତ ଭର ପ୍ରାଣିଶ୍ରେଣୀ ଚିତ୍ତେ ଭୟ ॥
ଶଷ୍ପଶୂନ୍ୟ ଶୂନ୍ୟ ହୋଇଛି ଧୋବଲ୍ଲ ।
ପୁଷ୍କରଣୀ ପରିଶୁଦ୍ଧ ସୁଶୀତଳଜଳା ॥
ନିର୍ଜୀବ ପ୍ରତିମା ମଧ୍ୟ ଜାଡ଼ ଡ଼ରକୁଳା ।
ଘୋଡ଼ଲାଗି ହୋଇ ବହ୍ନି ସେବନେ ଆକୁଳା ॥
ରଜା ପରଜା ସମସ୍ତେ ଶୀତରେ କମ୍ପିତ ।
ଦେହୁଁ ଖଦ କାଢ଼ିବାକୁ ନିତାନ୍ତ କୁଣ୍ଠିତ ॥
ସୌଧେ ମନ୍ଦିରେ କୁଟୀରେ ହସନ୍ତ ପଶଇ ।
ସକଳ ଜନମାନସ ଉଷ୍ଣକୁ ବାଞ୍ଛଇ ॥
ପାବକ ଦିନନାୟକ ହେଲେ ହୀନପ୍ରଭ ।
ଅତ୍ୟନ୍ତ ଶୀତଳ ହେଲା ରଜନୀବଲ୍ଲଭ ॥
ଲୋକଙ୍କର ପ୍ରିୟ ହେଲେ ଦିନ ହୁତାଶନ ।
ଅପ୍ରିୟ ହୋଇଲେ ହିମକରଣ ପବନ ॥
ଅହୋ ! ଦେଶ କାଳ କର୍ମ ପରିବର୍ତ୍ତନରେ ।
ପ୍ରିୟ ଅପ୍ରିୟ ଅପ୍ରିୟ ପ୍ରିୟ ଜଗତରେ ॥
ନର ଶରୀର ଖଦଡ଼ା କାକାଙ୍ଗ ଚକୁଣ ।
ନିଶାରେ ପ୍ରକଟେ ଗ୍ରାମପ୍ରାନ୍ତେ ଶିବାସ୍ୱନ ॥
ପଦ୍ମ ସାନ ପତ୍ରୀ ବଡ଼ ରହିବା ନିଳୟ ।
ପରା ଦିନ ହ୍ରାସ ରାତି ଅପୃତ ସମୟ ॥
ଫଳି ଅଛନ୍ତି ଆତପ୍ୟଫଳ କର୍ମରଙ୍ଗ ।
ନେଉଆ ବଦରୀ ଲେମ୍ବୁ କମଳା ନାରଙ୍ଗ ॥
ସଙ୍ଗୁ କୁନ୍ଦୁଡ଼ରେ ସବୁଆଡ଼ ଆଚ୍ଛାଦିତ ।
ସେବତୀ ଗୋଲାପ ଲୁବଲସ୍ୱ କୁସୁମିତ ॥

ଧାବା ଖଟିରେ ନିଶାରେ ଜାନୁ ଧରି କୋଳେ ।
ଦୀନହୀନ ଜନ କାଟେ ଏ କାଳ ନୀରୋଳେ ॥
କମ୍ବଳ ଉପରେ ଭରି ପାଳ ପାଣ୍ଡୁ ତଳେ ।
କ୍ଷେତରେ ଶୟନ କରେ କର୍ଷକ ନିଷ୍ଠଳେ ॥
ଅଧିକମୂଲ୍ୟ ରେଶମୀୟ ବିବିଧ ବସନ ।
ପିଧାନରେ ଧନୀ କରେ ସମସ୍ତ ଯାପନ ॥
ଯେତେକ ବଡ଼ଲୋକ ହେଲେ ନିତ ଶୟନରେ ।
ଭିକାରି ବାପୁଡ଼ା ଭିକ ଲଭେ ଅଧିକରେ ॥
ଶୀତବାଧା ସହି ମୃଗ ମାରିବା ଆଶାରେ ।
ମୃଗୟୁ ବନେ ପଲ୍ଲରେ ବସଇ ନିଶାରେ ॥
ଆଶାଦେବୀର କିଙ୍କର କଷ୍ଟକୁ ସହଇ ।
କୁଣ୍ଠିତ ନୋହି କୁତ୍ସିତ କର୍ମକୁ କରଇ ॥
ଶସ୍ୟଭରିତ କ୍ଷେତକୁ ବିଲୋକି କୃଷକ ।
ନିର୍ଭରାନନ୍ଦ ଲଭଇ ଚାଉଁ ତେଜି ଦନ୍ତ ॥
ଶ୍ରୀ କେଶବ ନାରାୟଣ ପାଳିତ ସମସ୍ତ ।
ଲୋକଭୟଙ୍କର ହେବା ଦୁଃଖର ବିପସ୍ତ ॥

—o—

## ଗୁରୁ ଦକ୍ଷିଣା

ପୂର୍ବ ଜନୈକ ଧରଣୀସୁର ବାସ କରେ ।
ଗୋଟିଏ ନଗର ପ୍ରାନ୍ତ କାନନ ମଧ୍ୟରେ ॥
ସେ ଶବର ସହବାସୁଁ ହୋଇ କର୍ମଭ୍ରଷ୍ଟ ।
ସମ୍ପତ୍ତି ହରି ପାନ୍ଥଙ୍କୁ ଦିଏ ନାନା କଷ୍ଟ ॥
ତା କର ଅନ୍ତରତ ହୃଦୟ ପାଷାଣ ।
ହତ୍ୟାକରଣରେ କରଯୁଗ ବଡ଼ ଠାଣି ॥
ଦିବସେ ସେ ଡକାଏତ, ରଜନୀରେ ଚୋର ।
ହୋଇଥାଏ ନିରନ୍ତର ମଦ-ନିଶା ଖୋର ॥
ସେ ପୁଣି ନିର୍ଭୀକ ସଦା ପାପକର୍ମ ରତ ।
କେବଳ କନକ ମାତ୍ର ତାହାର ଦୈବତ ॥

ସାହସ ବଳରେ ତାହାଠାରେ ଦିଣେ ନାହିଁ ।
ଆଉ କେଉଁ ଭଲଗୁଣ ଖୋଜିଲେ ତୁହାଇ ॥
ଦିନେ ପଥେ ଯାଉ ଯାଉ ଏକ ଯତିବର ।
ବିଧିବଶୁଁ ହୁଅନ୍ତେ ତା ନୟନ ଗୋଚର ॥
ତାହାର ହୃଦୟେ ଦେଣେ ସଦ୍ଭାବ ଜନ୍ମିଲା ।
ସେ ଯତିଙ୍କି ନମି ନମ୍ରେ ଏମନ୍ତ ଭାଷିଲା ॥
'କୃପା କର ମୋ ଅତିଥି ହୋଇ ତୁମ୍ଭେ ଆଜ ।
ମଦ୍ଦତ୍ତ ଭିକ୍ଷା ଗ୍ରହଣ କର ଯତିରାଜ' ॥
ଏତେ ଶୁଣି ଯତିବର ବୋଇଲା ଏପରି ।
ସନ୍ନ୍ୟାସୀ ହୋଇଲେ ସର୍ବ ସଙ୍ଗ ତ୍ୟାଗ କରି ॥
ପତିତ ଭିକ୍ଷା ଗ୍ରହଣ ନିଷିଦ୍ଧ ଅଟଇ ।
କିପରି ତାହା କରିବି ବୋଲି ମୁଁ ଭାବଇଁ ॥
ବ୍ରାହ୍ମଣ ହୋଇ ସ୍ୱକୀୟ ଧର୍ମକୁ ତେଜିଲୁ ।
ନିନ୍ଦିତ ଶବର-ସଙ୍ଘ ସଙ୍ଗ ଆଚରିଲୁ ॥
ଯେତକ ମାନଙ୍କ ନୂହେଁ, ସ୍ୱୈରବୃତ୍ତି କରୁ ।
ମାନବୀ ମାନବଙ୍କର ଧନ ପ୍ରାଣ ହରୁ ॥
ଏ ହେତୁରୁ ତୁ ହୋଇଲୁ ନିକୃଷ୍ଟ ପତିତ ।
ତୋ ଦତ୍ତ ଭିକ୍ଷା ଗ୍ରହଣ ନୁହଇ ଉଚିତ ॥
ଏତେ ଶୁଣି ସେ ବ୍ରାହ୍ମଣ ପ୍ରଣମି ଯତିଙ୍କି ।
ଅତ୍ୟନ୍ତାନୁରୋଧ କଲା ଭରି ବିନତିଙ୍କି ॥
ତେଣୁ ଯତିପ୍ରବରର ହୃଦୟ ତରଳିଲା ।
ବିଚାରି ବିଚାରି ସେ ଏ ରୀତିରେ ଭାଷିଲା ॥
ଦେଲେ ମୁଁ ବାଞ୍ଛା କରିବା ଗୁରୁ ଦକ୍ଷିଣାକୁ ।
ଗୁରୁରୂପେ ମଙ୍ଗିବି ତୋ ଘରେ ଭୁଞ୍ଜିବାକୁ ॥
ତା ଶୁଣି ବିପ୍ର ଭାଷିଲା ତୁମ୍ଭ ବାଞ୍ଛା ଯାହା ।
ନିବାର ସତ୍ୟ ଅବଶ୍ୟ ଦେବି ମୁହିଁ ତାହା ॥
ସେ ବଚନେ ତୁଷ୍ଟ ଯତି ବୋଇଲା ସତ୍ୱର ।
ଅନୃତ ଗୁରୁଦକ୍ଷିଣା ରୂପେ ଦାନ କର ॥

ମାତ୍ର ମନେ ରଖ ଭଲେ ଦତ୍ତ ହୁଏ ଯାହା ।
କେଉଁ ଅବସ୍ଥାରେ ମଧ୍ୟ ଗ୍ରାହ୍ୟ ନୁହେ ତାହା ॥
ପରେ ସେ ବିପ୍ର ବୋଇଲା, ଦେଲି ଅନୃତକୁ ।
ଯତି ଭୁଞ୍ଜି ହୃଷ୍ଟେ ଗଲା ଦେଇ ଆଶିଷକୁ ॥
ସେହି ଦିନଠାରୁ ବିପ୍ର ତେଜି ଅନୃତକୁ ।
ପୂର୍ବପରି କରେ ଅନ୍ୟ କାର୍ଯ୍ୟାନ୍ତରସ୍ତୁକୁ ॥
ଚୋରାଇବାକୁ ସେ ଏକ ଅନ୍ଧାର ରାତିରେ ।
ବୁଲୁଥିଲା ନଗରର ଗୋଟିଏ କନ୍ଦରେ ॥
ଜନମତ ଜାଣିବାକୁ ନୃପ ସେ ନଗରେ ।
ପ୍ରତ୍ୟେକ ରାତିରେ ବୁଲେ ପ୍ରଚ୍ଛନ୍ନ ବେଶରେ ॥
ନୃପତି ବିପ୍ରକୁ ଦେଖି, ଏଠାରେ କାହିଁକି ।
ବୁଲ ବୋଲି ପୁଚ୍ଛନ୍ତେ ସେ କହିଲା ଏତିକି ॥
ଏ ନଗରପ୍ରାନ୍ତ ବନେ ମୁଁ ବାସ କରଇଁ ।
ବିପ୍ର ହୋଇ ଚୋରପଣେ ଜୀବନ ଯାପଇଁ ॥
ଏଠାକୁ ଆସିଲି ଏବେ ଚୋରି କରିବାକୁ ।
ବୁଲୁଅଛି ମୁହିଁ ସ୍ଥାନ ଠଉରାଇବାକୁ ॥
ନୃପତି ଶୁଣି ନିରାଟ ସତ୍ୟବାଣୀ ତାର ।
ବୋଇଲା ମାନସେ ଲଭି ଅତି ଚମତ୍କାର ॥
ମୁହିଁ ମଧ୍ୟ ଚୋର, ଆସେ ମିଶି ଚୋରାଇବା ।
ଯାହା ଲଭ୍ୟ ହେବ ସମେ ବଣ୍ଟନ କରିବା ॥
ରାଜଶୟନ ମନ୍ଦିର ଗୁପ୍ତପଥ ମୁହିଁ ।
ଭଲେ ଜାଣଇଁ, ମୋ ସଙ୍ଗେ ଶୀଘ୍ର ଆସେ ତୁହି ॥
ଏତେ ବୋଲି ନୃପ ବିପ୍ର ସଙ୍ଗେ ସ୍ୱଶୟନ—
ଭବନରେ ପ୍ରବେଶିଲା ଅବାଧେ ବହନ ॥
ସେଠା ଏକ କରଣ୍ଡରେ ଥିଲା ରତ୍ନବସ୍ତୁ ।
ଦିଓଟିକି ବାଣ୍ଟିନେଇ ସେହି ଜନଦ୍ୱୟସ୍ତୁ ॥
କ୍ଷଣାସ୍ତେ ନୃହନ୍ତେ ବିଭାଜ୍ୟ, କରଣ୍ଡରେ ।
ତାକୁ ଛାଡ଼ି ପଳାୟନ କଲେ ତରତରେ ॥

ପରଦିନ ନରବର ବସି ଆସ୍ଥାନରେ ।
ଦୂତ ପେଷି ସେ ବିପ୍ରଙ୍କୁ ଅଣାଇ ଦର୍ପରେ ॥

ଗତ ରାତି କଥା କହ ବୋଲି ପଚାରିଲା ।
ସେ ବିପ୍ର ନିର୍ଭୟେ ସବୁ ସତ ବଖାଣିଲା ॥

ତା ଶୁଣି କୋଷାଧ୍ୟକ୍ଷଙ୍କୁ କହିଲା ନୃମଣି ।
ତୁ ଯାଇ ଦେଖ ମନ୍ଦିରେ ଅଛି ଦିବ୍ୟ ମଣି ॥

ରାଜାଦେଶରେ ସେ ଯାଇ କରଣ୍ଡ ଭିତରେ ।
ରତ୍ନକୁ ଦେଖି ଏମନ୍ତ ପାଞ୍ଚିଲା ଲୋଭରେ ॥

ଏହାକୁ ମୁଁ ଆତ୍ମାଧୀନ ସୁକରେ କରିବି ।
ସେ ତସ୍କର ମସ୍ତକରେ ଦୋଷକୁ ଲଦିବି ॥

ଏତେ ଭାବି ସେ ରତ୍ନକୁ ଅଣ୍ଟିରେ ଖୋସିଲା ।
ନୃପତି ଛାମୁକୁ ଯାଇ ଏମନ୍ତ ଭାଷିଲା ॥

ଦେବ ! ଏ ଚୋର ନିରାଟ ଅନୃତ୍ୟ କହିଲା ।
ତେଣୋଟି ରତ୍ନଯାକ ଏ ନିଶ୍ଚୟେ ହରିଲା ॥

ତାହା ଶୁଣି ସତ ଜାଣି ନୃପତି ବଚନ ।
ତାଙ୍କୁ ଶୋଧନ କରାଇ କଢ଼ାଇ ରତନ ॥

ବୋଇଲା ତୁହି ତସ୍କର ପୁଣି ମିଥ୍ୟାବାଦୀ ।
ସେ ବ୍ରାହ୍ମଣ ଚୋର ହେଲେ ମଧ୍ୟ ସତ୍ୟବାଦୀ ॥

ତୁହି ଏହିକ୍ଷଣି ଏହି ଦେଶ ତ୍ୟାଗ କର ।
ତୋହର କାର୍ଯ୍ୟ କରିବ ସେହି ବିପ୍ରବର ॥

ରାଜାଦେଶେ କୋଷାଧ୍ୟକ୍ଷ ଦେଶ ବର୍ଜିଲା ।
ବିପ୍ର କୋଷାଧ୍ୟକ୍ଷ ହୋଇ ସୁଖରେ ରହିଲା ॥

ସତ୍ୟ ବଚନ ମହିମା ଅସୀମ ଅଟଇ ।
ଲୋକଦ୍ୱୟରେ ଶାଶ୍ୱତ ସୁଖକୁ ଦିଅଇ ॥

## କି ହେଲା

ସମସ୍ତେ ହୋଇଲେ ସମାଲୋଚକ ।
ବାଳକେ ହୋଇଲେ ବଡ଼ ପାଠକ ।
ନୀଚ ଲୋକେ ହେଲେ କୁଳନାୟକ ।
ବୁଦ୍ଧିହୀନେ ହେଲେ ଭୂମିନାୟକ ।
କମଳଦାରକ—
ସୃଷ୍ଟି ବର୍ତ୍ତମାନ ବିପତ୍ତିଜନକ ॥

---

ହଳଧରେ ହେଲେ କଳମଧର ।
ବଣୁଆଏ ହେଲେ ପଣ୍ଡିତ ବର ।
ଅକୁଳୀନେ ହେଲେ ପ୍ରଭୁ ପ୍ରବର ।
କୁଳୀନେ ହୋଇଲେ ତାଙ୍କ କିଙ୍କର ।
ଏମାନ ନିକର ।
କଳି ମହିମା ବୋଲି ମନେକର ॥

---

## ଏବ ଚଳଣି

ସଂସ୍କୃତ ଭାଷାନଭିଜ୍ଞ ବେଦାର୍ଥ କହଇ ।
ବ୍ୟାକରଣ ଜ୍ଞାନହୀନ କାବ୍ୟ ବିରଚଇ ॥
ସନ୍ଦର୍ଭ ଜ୍ଞାନବିହୀନ ରଚଇ ଚରିତ ।
କିଛି ନ ଜାଣିବା ବ୍ୟକ୍ତି ବୋଲାଏ ପଣ୍ଡିତ ॥
ପରବନିତା ଲମ୍ପଟୀ ସନ୍ନ୍ୟାସୀ ଶେଖର ।
ପ୍ରାଣୀପ୍ରକର ହିଂସକ ବୈଷ୍ଣବ ପ୍ରବର ॥
ସନ୍ଧ୍ୟା ବନ୍ଦନାନଭିଜ୍ଞ ବିପ୍ରକୁଳ ଜ୍ୟେଷ୍ଠ ।
ବ୍ୟାଧ ବ୍ୟାପାର ଉପର କ୍ଷତ୍ରିୟକୁଳ ଶ୍ରେଷ୍ଠ ॥
ପରଧନାପହାରକ ବଦାନ୍ୟ ବୋଲାଏ ।
ଜନପ୍ରତାରଣା କରି ସମ୍ମାନକୁ ପାଏ ॥

ରାଗ-ତାଳ-ଜ୍ଞାନହୀନ ପ୍ରଶସ୍ତ ଗାୟକ ।
ଲୋକ ଜ୍ଞାନଶୂନ୍ୟ ବ୍ୟକ୍ତି ଦେଶର ନାୟକ ॥
ଅକ୍ଷର ଲେଖନଜ୍ଞାତା ସମାଲୋଚକେଶ ।
ଗଣିକା ରାଠ ଅନଙ୍ଗ ରସିକ ନରେଶ ॥
ଅଭକ୍ଷ୍ୟଭକ୍ଷକ ନର ଅଟେ ଭୋଗୀଶ୍ୱର ।
ବେଶାଡ଼ମ୍ବର ସଂଯୁକ୍ତ ସଭ୍ୟ ସ୍ତ୍ରୀରବର ॥
ପ୍ରଜାଗଣ ପ୍ରପୀଡ଼କ ଅଟେ ରାଜୋତ୍ତମ ।
ଅସତ୍ୟଭାଷୀ ବୋଲାଏ ବିବେକ ସତ୍ତମ ॥
ପରବନିତା ବିମୁଖ ଅଟେ ନପୁଂସକ ।
ସରଳଗାମୀ ବାତୁଳ କି ଅବା ବାଳକ ॥
କଳୁଷକର୍ମନିବୃତ୍ତ ଭୀରୁଙ୍କ ଅଗ୍ରଣୀ ।
ଜଗଦୀଶ ଭକ୍ତିରତ ମୂଢ଼ ଚୂଡ଼ାମଣି ॥
ଏପରି ମନୁଜପୂର୍ଣ୍ଣ ବର୍ତ୍ତମାନ ଲୋକ ।
ଭାବୁକ ହୃଦୟସ୍ଥଳେ ଜାତ ହୁଏ ଶୋକ ॥

—o—

ବେଦପୌରଷେୟ ଅଟେ ବିଶ୍ୱ ଦୁଃଖମୟ ।
ସବୁକ୍ଷଣିକ ପ୍ରାନ୍ତରେ ଅଭାବ ନାସ୍ତ୍ୟ ॥
କର୍ମସନ୍ୟାସରେ ଶୂନ୍ୟ ହୁଅଇ ଜନନ ।
ଅହିଂସା ପରମ ଧର୍ମ ବୋଲେ ବୌଦ୍ଧଜନ ॥

—*—

ଖ୍ରୀଷ୍ଟ ଭକ୍ତ ପ୍ରବର ଯେ ହୁଅଇ ।
ଲର୍ଡ୍ସ ସପ୍ପର ମାତ୍ର ସେ ଲଭଇ ।
ଇଂଲଣ୍ଡକୁ ଯିବା ପ୍ରତ୍ୟେକ ନର ।
ସବୁ ସମୟରେ ଲର୍ଡ୍ସ ସପ୍ପର ।
ଲର୍ଡ୍ସ ଲଞ୍ଚ ଅବ
ଲର୍ଡ୍ସ ଡିନର ଲଭେ ଦେଇ ଭାଉ ।

## ଗୀତ ରାଗିଣୀ ନାଥନାମକ୍ରିୟା—ଅଦାତାଳ

( ଓ ନବନାଗର ଢଙ୍କେ—ପ୍ରଭୃ )

ନାହିଁ ନାହିଁ ତଳେ । ମୁକ୍ତ ଭାବିଲେ । ପଦ ।
ପ୍ରାତଃ ସମୟରେ । ଢାଙ୍କର ପାଣିରେ
ପାଣିକୁଅ ପରି ବୁଡ଼ିଲେ ହେଲେ । ନାହିଁ । । ୧ ।
ପାଉଁଶ ଧୂସର । ହୋଇ ବୃକ୍ଷ ଖର
ସିତରେ ଚର୍ମରେ ଗଡ଼ିଲେ ହେଲେ । ନାହିଁ । ୨ ।
ନାମଭାଲକୁ । ଛାପରେ ଦେହକୁ
ମଣ୍ଡି ବାଘ ପରି ଦାଗିଲେ ହେଲେ । ନାହିଁ । ୩ ।
ଜଟାକୁ ମୁଣ୍ଡରେ । ଦାଢ଼ିକି ଥୋଡ଼ିରେ
ପୋଷି ଭାଲୁ ପରି ବୁଲିଲେ ହେଲେ । ନାହିଁ । ୪ ।
ଗୋଟି ଗୋଟି ଧରି । ମାଳି ଲେଖାକରି
ଗୋମୁଖୀ ଝୋଲିରେ ଜପିଲେ ହେଲେ । ନାହିଁ । ୫ ।
ହୋଇ ଜ୍ଞାନ ଯୁତ । ବିକ୍ରମ ବଦତ
ହରିରେ ଶରଣାପନ୍ନ ନୋହିଲେ । ନାହିଁ । ୬ ।

---

## ଅପୂଜିତ ବିଧାତା

ଥିବାରୁଟି ତୁଳସୀ ବିଲ୍ୱପତ୍ର
ପୂଜା ପାଉଛନ୍ତି ହରି ତ୍ରିନେତ୍ର ।
ପତ୍ରହୀନରୁ ବିଧି ଅପୂଜିତ ।
ସେହୁ ବିରଚି ସମଗ୍ର ଜଗତ ।
ନିଜ ପୂଜା ପାଇଁ ।
ପତ୍ର ଗୋଟି ରଚି ପାରିଲେ ନାହିଁ ॥

## ପ୍ରହେଳିକା

ଶ୍ଲୋକ :—ପ୍ରଜାଙ୍କ ସର୍ବଦା ଦୃଶ୍ୟ, କଦାବା ଦୃଶ୍ୟ ଭୂପର ।
ଅଦୃଶ୍ୟ ସର୍ବ କର୍ତ୍ତାର, ପଣ୍ଡିତେ କହ ତା କିଏ ?

—✻—

ରାଗିଣୀ—ତୋଡ଼ୀ । ତାଳ—ଅଦ୍ଧ

ମଦ ମହିଳା ମଞ୍ଚର । ମୂଳାଧାରଟି ଈଙ୍କର
ତାଙ୍କୁ ମୂଢ଼ ମାନ ଗ୍ଳତେ ବୋଲୁଛନ୍ତି କବି । ପ୍ର ।
ମଦ ଶିଶି ଥିଲେ କାଖେ । ମଦବତୀ ଥିଲେ ପାଖେ
ମଞ୍ଚମଣ୍ଡଳରେ ଚକ୍ରବର୍ତ୍ତୀ ହୋଇବି । ୧ ।
କବାବ ମୋ ତୁଣ୍ଡେ ଥିଲେ । ଶିଗରେଟ ହାତେ ଥିଲେ
ନିଶ୍ଚୟ ସରଗଭୋଗ ମୁହିଁ ପାଇବି । ୨ ।
ଶିଶି ଗୋଟା ଯାକ ପିଇ । ପଡେଁ ନାହିଁ ଗଡେଁ ନାହିଁ
ମୋ ସମରେ ବୀର କେହି ବୋଲ ବୋଲିବି । ୩ ।

—✻—

ବିଷ ସହଜାତା ଲକ୍ଷ୍ମୀ ରଖି ଜୀବନକୁ—
ମାନ କରେ ଅନ୍ଧ ମୂକ ବଧିର ଜନକୁ ॥

—✻—

# ଲୋକୋକ୍ତିଭଣ୍ଡ

## ଅ

ଅଛି ବ୍ୟାଧିର ସାଧନ; ନାହିଁ ବାଧିର ସାଧନ ।
ଅଧିକ ଜ୍ଞାନୀର ଅନୁମାନ ଅଧିକ ।
ଅବିବେକ ସ୍ନେହଠାରୁ ବିବେକ ବିରୋଧ ଶ୍ରେୟସ୍କର ।
ଅମିତ ହେଲେ ଅମୃତ ବିଷ ।
ଅରକ୍ଷିତ ଦୈବ ରକ୍ଷିତ ।
ଅମଙ୍ଗଳ ପାଞ୍ଚ ମଙ୍ଗଳ ପାଞ୍ଚ; ଗ୍ରାମରେ ଅରଜା ସମସ୍ତ ସଷ୍ଠ ।
ଅଧର ମଧୁର; ହୃଦୟ ଗର ।
ଅଳିଆ ଘରେ ଘରେ; ପସସ୍ୱ ପୁରେ ପୁରେ ।
ଅଥବା ଅଖୁ ବଙ୍କା ହେଲେ; ମାଧୁର୍ଯ୍ୟ ଗୁଣ ନୁହେ ଛାଡ଼ିଲ ।
ଅଗ୍ରେ ପିଠା ଦନ୍ତେ ଛଷା; ମୁଣ୍ଡେ ପାଦେ ତେଲ ଘଷା ।
ଅନ୍ନ ପାଇଁ ଏକ ପ୍ରାଣୀ ଅଧରୋଷ୍ଠ ଦୂର ହେଉଥିବା ଦେଖି;
ଜୀବିକା କାମି ଓ ବନ୍ଧୁ ମିତ୍ର ଦୂର ।
ହେଲେ କିଏ ହେବ ଦୁଃଖୀ ।

## ଆ

ଆଈ କାଟିବା ସୁତା; ଆଜା ପଇତାକୁ ନଅଣ୍ଟ ।
ଆଗରେ ଖାତ; ପଛରେ ଗାତ ।
ଆତୁରର ଅନ୍ଧ ନାହିଁ; ଅନାତୁରର ଅନ୍ତ ନାହିଁ ।
ଆପଦରେ ମନାସନ୍ତି; ସମ୍ପଦରେ ପାଶୋରନ୍ତି ।
ଆଶାର ଅନ୍ତ ନାହିଁ; ଆସ୍ୱାର ଅଧା ନାହିଁ ।
ଆସନ୍ତା କାଲଠାରୁ ଆସିଲା କାଲ ଭଲ ।
ଆହାରେ ବ୍ୟବହାରେ ଲଜ୍ଜା ରଖ ଦୂରେ ।
ଆପଣା ଅଜନ ଦର୍ପଣେ ଅଦର୍ଶେ; ଭବ ଦୋଷ ଦର୍ପଣେ ବୁଧ ବିମର୍ଷେ ।
ଆଶାଟା ଦୁଃଖର କାରଣ; ନିରାଶା ସୁଖର କାରଣ ।
ଆଶା କିଙ୍କରୀ ଅଟେ ଯାର; ଜଗତ କିଙ୍କର ତାହାର ।

ଇ

ଇଟାର ଘର, କୂଅର ନୀର, ଶୀତେ ତାତି ଖରା କାଳେ କାକର ।

ଈ

ଈର୍ଷାରେ ମାନବ ନଷ୍ଟ; ବର୍ଷାରେ ପାନ୍ଥର କଷ୍ଟ ।

ଉ

ଉତ୍ତମ କରେ ଅପକାରୀର ଉପକାର ।
ମଧ୍ୟମ କରେ ଉପକାରୀର ଉପକାର ।
ଅଧମ କରେ ଅପକାରୀର ଅପକାର ।
ନୃଶଂସ କରେ ଉପକାରୀର ଅପକାର ।
ଉପକାର କଲେ; ଅପକାର ଘଟେ ।
ଉପରେ ମାରିଲେ ବ୍ରହ୍ମହତ୍ୟା; ତଳେ ମାରିଲେ ଗୋ ହତ୍ୟା ।
ଭିତରୁ ଭ୍ରଷ୍ଟକୁ; ଉପର ସନ୍ନ୍ୟାସିକୁ ।

ଋ

ଋଣ ଶେଷ, ରୋଗ ଶେଷ, ବହ୍ନି ଶେଷ ନ ରଖ ।

ଏ

ଏଆଡ଼େ ହେଲେ ବୈଦ୍ୟ ସମ୍ମାନ; ସେଆଡ଼େ ହେଲେ
ବୈତରଣୀ ଗୋ ଦାନ ।
ଏ ଗାଁରୁ ସେ ଗାଁ ଯେତେ ଦୂର; ସେ ଗାଁ କୁ ଏ ଗାଁ ସେତେ ଦୂର ।
ଏ ସେ ଲାଉର ମଞ୍ଜି ମାନ ।
ଏକ ଦେଶର ନୃପୋତ୍ତମ, ଅନ୍ୟ ଦେଶରେ ପ୍ରଜା ସମ ।

ଐ

ଐଶ୍ୱର୍ଯ୍ୟର ଅବଧି ନାହିଁ ।

ଓ

ଓଠ ଡେଇଁଲେ ହାଟରେ ଥାଏ ।
ଓଦା ଗୋଡ଼ରେ ଖାଇବ; ଶୁଖିଲା ଗୋଡ଼ରେ ଶୋଇବ ।

## କ

କଟକ ଯାଇଁ ଘୋଡ଼ାବାଲ ଆଣିଲ ।
କଠାରି ଭୂଷାଠାରୁ କଲମଭୂଷା ଠାଣ ।
କଥାର କନ୍ଥାର ନାହିଁ ।
କନ୍ଧ, ପାଣ ସଭି ମଧ୍ୟେ କଣ୍ଡରା ବୈଷ୍ଣବୋତ୍ତମଃ ।
ଚୂକୁଣ୍ଡ୍ରା ବନଦେଶେଷୁ ଝିଙ୍କାର ମନ୍ତ୍ର କୋକିଳଃ ।
କରନ୍ତେ କରନ୍ତେ କାମ ସୁକର;
ଖାଆନ୍ତେ ଖାଆନ୍ତେ ପିଠା ମଧୁର ।
କରରକାଚ ଦେଖିବାକୁ ମୁକୁର କାହିଁକି ?
କଲ୍ଲ ପାପ କହିଲେ ଯାଏ ।
କପୂଁା ମଲେହେଁ. ଖଠା ମରେ ନାହିଁ ।
କଳ୍ପିତ ରତ୍ନର କାନ୍ତି ଅଧିକ ।

କଂସାର ଘର ବିଲେଇ, ପତର ଶବଦେ ଡ଼ରଇ ନାହିଁ ।
କାଣ୍ଟି କି ଜାଣଇ କନକବାଣି ? କାଲ କି ଜାଣଇ ବୀଣାର ଧ୍ୱନି ?
କାଣି ଶଏଜଣ କୂପରେ ମଗନ ।
କାର କରମରେ ଖିର ଖିରସା, ଲଡ଼ୁ କାର କରମରେ,
କାର କରମରେ ଖାରଆ ଖଡ଼ା, ଚୈତବାଇ ଚୈତବାଇ ମରେ ।
କିଏ କରେ ବନେ କଣ୍ଟାକୁ ସୂନ ? କେ ଶିଖାଏ ମୀନକୁ ସନ୍ତରଣ ?
କୁକୁର ଲଙ୍ଗୁଳ ବାଉଁଶ ନଳରେ ମାସ ସରଳ ।
କୁକୁରର ମା ହେଲେ, ମୁଖ ଯାକ ଚୁଟେ ।
କୁଟା ଲଞ୍ଜ ଧରି, ତରିବାକୁ ପାଞ୍ଚ ମହାନଦୀ ବାରି ?
କୁଟା ବସିଲେହେଁ ସିଂହାସନେ, ଖତକୁଡ଼ ଥାଏ ତାର ମନେ ।
କୁଳ ଜାଣି ବନ୍ଧୁ କର; ସ୍ଥଳ ଜାଣି ବାସ କର ।
କୋଟିଏ କାକରେ ଗୋଟିଏ ପିକ । କୋଟିଏ ଦୁଃଖରେ ଗୋଟିଏ ସୁଖ ।
କୋଟିଏ ବିଦ୍ୟା ପେଟ ପାଇଁ; କାଟିବା ସୂଆ ହାଟ ପାଇଁ ।
କବିତ୍ୱ ଲକ୍ଷଣ, ବଚନ ରଚନ, ତା ସର୍ବଜନଙ୍କୁ ଜଣା,
ମାସ ତା ରସରେ, ପୂର୍ଣ୍ଣ କରଣରେ ଯେଣିକେ ହୁଅନ୍ତି ବଣା ।

କାଉ ହୋଇ କାଳେ ଜୀଇଁବାଠାରୁ,
କୋଇଲି ହୋଇ କୋଡ଼ିଏ ଦିନ ଜୀଇଁବା ଭଲ ।
କାଢ଼ିଲି କଣ୍ଟା—ମାଡ଼ିଲି ଖୁଣ୍ଟା ।

## ଖ

ଖଜୁରି ମୂଳରେ ପିଇଲେ ଦୁଧ, ମଣିଷେ ବୋଲନ୍ତି ପିଉଛି ମଦ ।
ଖଣ୍ଡି ପୋଡ଼ି ଖଇ ଖାଇବା ଲୋକ ।
ଖସକୁ ଧର—ଗସିରେ ଭର ।
ଖାଦ୍ୟ ଅପ୍ରାପ୍ୟ ଦରିଦ୍ରର, ଭୋକ ଅପ୍ରାପ୍ୟ ଧନୀକର ।

## ଗ

ଗଉଡ଼ କାନ୍ଦେ ଗୋରୁ ପାଇଁ; ଚମାର କାନ୍ଦେ ଚମ ପାଇଁ ।
ଗଜ ହସ୍ତର ଦ୍ୱିଜ ହସ୍ତର ସ୍ଥିରତା ନାହିଁ ।
ଗତି ନ ଥିବା ମାଇପର ମତି ନ ଥିବା ମିଣିପ ।
ଗତିହୀନର ଗତି ଶ୍ରୀପତି ।
ଗଧର ଛୁଆ ଗଧକୁ ଗୋ[illegible] ।
ଗସି ଦେଇ ଗଡୁ ଅଣିବା ।
ଗଧ କି ଜାଣେ ଗନ୍ଧର ଗନ୍ଧ ?
ଗଲେ ବାଳ; ଆସିଲେ ତାଳ ।
ଗାଇବା ତୁଣ୍ଡ, ବାହିବା ହାତ, କେବେ ନୁହନ୍ତି ତୃପତ ।
ଗାଈ ହେଲେହେଁ କଳା, ଦୁଧ ତ ତାର ଧଳା ।
ଗାତର ବେଙ୍ଗର ଗାତ ଏକା ଜଗତ ।
ଗୋଟିଏ ମିଛ ଢାଙ୍କିବାକୁ କୋଡ଼ିଏ ମିଛ ଦରକାର ।
ଗୋଟିଏ ଖାପରେ ଦୁଇଟି ଖଣ୍ଡା ରହନ୍ତି ନାହିଁ ।
ଗୋଟିଏ ପଦ ଭଲ ନରକୁ, ଗୋଟିଏ ମାଡ଼ ଭଲ ଗୋରୁକୁ ।
ଗୋଡ଼ ଖସିଲେ କାଢ଼ି ହୁଏ, କଥା ଖସିଲେ କାଢ଼ି ନୁହେ ।
ଗୋବର୍ଦ୍ଧନଧର ଗୋବରଅ ହୁଏ, ଗୋବରଅ ଗୋବର୍ଦ୍ଧନଧର ହୁଏ ।
ଗ୍ରାସକୁ ନାହିଁ ଘୃତ; ନାସରେ ବାସ ଘୃତ ।

ଗଡ଼ୁଥିବା ଶିଳାରେ କାଦୁଅ ଲାଗେ ନାହିଁ।
ଗାଁଠି ପଦେ ନ ଗାଇବା ମିଣିପ ନାହିଁ ।
ଭାତ ମୁଠେ ନ ରନ୍ଧିବା ମାଇପ ନାହିଁ ।
ଗୌରବ ଦେଇ ଗୌରବ ଅଣ ।

## ଘ

ଘରକୁଣ୍ଠୀ; ଘରଣୀ ମର୍କଣ୍ଠୀ ।
ଘର ତୋଳି ଦେଖ, ବାହା କର ଦେଖ ।
ଘରର ଚୋର ପରମେଶ୍ୱରର ଅଗୋଚର ।
ଘରଣୀ ବାନ୍ଧଇ ଗୋଡ଼କୁ; ସନ୍ତାନ ବାନ୍ଧଇ ତୁଣ୍ଡକୁ ।
ଘରେ ଜଣି, ବାହାରେ ଜଣ ।
ଘରେ ମାର୍ଜାର; ବାହାରେ ମହାବଳ ।
ଘରଣୀ ନାହିଁ, ଗର୍ଭ ନାହିଁ, ପୁଅର ନାଁ ପୁରୁଷୋତ୍ତମ ।

## ଚ

ଚୁଟିଣ ଚଟୁକୁ, ଛାଉଣି ବ୍ରତକୁ ।
ଚୋର ଗଲା ଛ ମାସେ କୁକୁର ଭୁକିଲା ।
ଚୋର ଚୋରାଇ ବାହାରି ଗଲେ, ସଙ୍ଖୋଳି ଯିବା ଲୋକକୁ ସଜା ।
ଚୁହୁଲେ କଳନ୍ତର ସୃଷ୍ଟି, ମୂଳର ହୁଅଇ ବିନଷ୍ଟି ।
ଚୁଲ୍ଲୀ ଫୁଙ୍କା ନାରୀଙ୍କ ଫୁଲାଏ ହେଲେ ମିଳେ ।
ଚେଙ୍ଗା ମୋର; କଣ୍ଟା ତୋର ।

## ଛ

ଛଟକେ ଜୀବନ ଉଡ଼ିଯାଏ; ସବୁଦିନେ କଥା ରହିଥାଏ ।
ଛାଡ଼ ବୋଇଲେ ସାପର କୋପ,
ଗିଳ ବୋଇଲେ ବେଙ୍ଗର କୋପ ।

## ଜ

ଜଗତରେ ସ୍ୱଚ୍ଛତା—ପ୍ରଥମ ଦେବତା ।
ଜଗତେ ଜଣାଶୁଣା ଦ୍ୱିଜ, ପଇତା ଖୋଜା କି ଗରଜ ?
ଜାତ କଲା ଧାତା, ଭାତ ଦେବ ମନେ ନ କର ଚିନ୍ତା ।
ଜଠରେ ପୀୟୂଷ; ଗର୍ଭରେ ବିଷ ।

ଜାଣି ଗୁଡ଼ଇ ବିଜ୍ଞାନୀ, ନ ଜାଣି ଗୁଡ଼େ ଅଜ୍ଞାନୀ ।
କୁରୁବା ଶ୍ରେଣୀ ବ୍ରହ୍ମଗୃହସ୍ଥ, ହୁଅନ୍ତି ଲୋକାନିଷ୍ଟକାସ୍ତ ।

ଝ

ଝଲା ହୁଏ ଲୁହା ଲାଗି ଗଲେ; ଝଲା ନୁହେ ମନ ଲାଗି ଗଲେ ।

ଞ

ଜ୍ଞାନ ଧ୍ୟାନ ପଠନ—ଦାନ ସମ୍ମାନ ଧନ ।

ଟ

ଟାକୁଅଗାଲ୍କ କିଏ ରସିବ ?
ଲୋଭୀର ଦୁଆରେ କିଏ ବସିବ ?
ଟାଙ୍ଗସ୍ତ ମୁଣ୍ଡରେ ନ ଉଠେ କେଶ;
ଖାରଅ ବାଲିରେ ନ ବଢ଼େ ଶସ୍ୟ ।

ଠ

ଠକ ନାଏ ଫାଙ୍କି; ରଜା ନାଏ ଠକି ।

ଡ

ଡାଳର ଭାର ଫଳ ନୁହେ; ମାଆର ଭାର ପିଲା ନୁହେ ।
ଡାଳରେ ବସାଇ, ମୂଳକୁ ଛେଦଇ ।
ଡେଣା ଘା ରେ ଝେଙ୍କି ପାହାର ।

ଢ

ଢୋଲ ଫଟାଇବାକୁ ପୋଲ ଲୋକ ଚାହିଁକି ?

ତ

ତନୁ ବଳଠାରୁ ମନୋବଳ ବେଶୀ ।
ତାଳ ବାଜେ ନାହିଁ ଏକ କରେ
କଳି ହୁଏ ନାହିଁ ଏକ ନରେ ।
ତମ୍ଭାଗ ଚୂଟ ଏକ ହୁଏ; ତନୋଟ ଖୋପା ଏକ ନୁହେ ।
ତୁଳସୀ ବନରେ ଗଞ୍ଜାଇ ଗଛ ।

## ଥ

ଥଠା ବଚନ ଅଜାଙ୍କୁ; ବଠା ହଳଦୀ ଅଙ୍ଗକୁ ।

ଥିବାଲୋକ ଥିବାଲୋକଙ୍କୁ ଦିଏ;
ନ ଥିବାଲୋକ ଥିବାଲୋକଙ୍କୁ ଦିଏ

ଥିଲେ ଅଜ୍ଞାନରେ ଆନନ୍ଦ, ଜ୍ଞାନ ବାଢ଼ିବା ଅଟେ ମନ୍ଦ ।

## ଦ

ଦରିଦ୍ର କାନ୍ଦେ ଖାଦ୍ୟ ପାଇଁ, ଧନୀ କାନ୍ଦେ ଧନ ପାଇଁ ।

ଦାରିଦ୍ର୍ୟ ଦ୍ୱାରସ୍ଥ ହୋଇଲେ, ପ୍ରୀତି ଝିଡ଼କି ବାଟେ ଚଳେ ।

ଦିଅ ଯା ଦେଇପାର; ନିଅ ଯା ଦରକାର ।

ଦୁଷ୍ଟ ସଙ୍ଗେ କି ହାସ୍ୟ ? ବୈଦ୍ୟଠାରେ କି ରହସ୍ୟ ?

ଦୁଷ୍ଟ ହୋଇଲେ ଜିତ, ସୃଷ୍ଟିର ପରାଭବ ।

ଦୂରର ଅଚଳ; ଦୃଷ୍ଟିକି ନିର୍ମଳ ।

ଦୂରର ଦୁଇଟଠାରୁ କୋଡ଼ର ଗୋଟିଏ ଲାଭକର ।

ଦେଉଳର ଘଣ୍ଟି ଗଲେ, ଦେବଳର କି ନଷ୍ଟି ?

ଦେଲେ ଭୁବର; ନ ଦେଲେ ଶୂକର ।

ଦୋଷହୀନ ନର ଧରାରେ ଅଗୋଚର ।

ଦଶ ମଣିଷ ଗୁଲିଲେ ବାଠ ।
ଦଶ ଖଡ଼କା ବୁଣିଲେ ଚାଠ ।

ଦଶ ପସରା ବସିଲେ ହାଠ ।
ଦଶ ପାଇକ ମିଶିଲେ ଥାଠ ।

ଦିବା କାଣକୁ ଦୀପ କାହିଁକି ?
ନିଶାଖୋର ନୀତି କି ଜାଣେ କି ?

## ଧ

ଧନଲବ୍ଧ ଯତି, ଦଣ୍ଡ ପ୍ରଣାମରେ ନ ଲଭେ ତୃପ୍ତି ।

ଧରମ ପାଇଁ ଭରଣେ ଦେଲେ,
ଗୌଣୀ ସାନ ବୋଲି ଗୋଳ କଲା ।

ଧନ ଥିଲେ ନ ଥାଏ ମନ, ମନ ଥିଲେ ନ ଥାଏ ଧନ ।

## ନ

ନଷ୍ଟୀ ବେଶ ହେଉ ହେଉ, ନଗର ଲୋକେ ନିନ୍ଦିତ ।

ନଦୀ ତୀରରେ ନାବିକ ଭାଇ, ନଦୀ ତରିଲେ ନାବିକ ବାଇ ।

ନ ପୂରିବା ହାଣ୍ଡି ଚହଲଇ, ଅପୂରନ୍ତ ନାବ ଦୋହଲଇ !

ନାବ ସୋପାନ ପଣ୍ଡିତ, ପରକୁ ତାରନ୍ତି ନିଜେ ନ ତରନ୍ତି,
ଏହା ବଡ଼ ଅଚମ୍ବିତ ।

ନାମ ମୋଟ, ଗ୍ରାମ ଛୋଟ ।

ନିଜ ଗାଡ଼େ, ନିଜେ ପଡ଼େ ।

ନିଜ ଚୁଟରେ ହାସ, ପର ଚୁଟରେ ବେଶ ।

ନଷ୍ଟର ବେଦନ, ଭ୍ରଷ୍ଟର ପ୍ରମାଣ, ଶଠ ମିଷ୍ଟପଣ,
ଅଠିଙ୍କଟ ଜାଣ ।

ନଅରର କୁକୁର—ବାହାରରେ କୁଞ୍ଜର ।

ନହୁଣୀ ଧରି ଘିଅକୁ ଖୋଜଇ ।

ନିଜର ଅପରାଧ ଢଲେ; ପରର ଅପରାଧ ଭାଲେ ।

ନିବୁଝିଅ ବାନ୍ଧ ବସିଲେ. ନିଶ ପୋଡ଼ିଲା ।

ନୀର ଖୋଜେ ଖାଲକୁ, ଚୋର ଖୋଜେ ମାଲକୁ ।

## ପ

ପହଁରିବା ଲୋକର ଖାଲ ନାହିଁ,
ବାହାରିବା ଲୋକର ବେଗ ନାହିଁ ।

ପଙ୍କ ପୋତା ଖୁଣ୍ଟ, ଯୋଆଡ଼େ ଟାଣିଲେ ସେଆଡ଼େ ନଇ ।

ପଡ଼ି ଗଡ଼ୁଥିବା ପଥରରେ ପଙ୍କ ଲାଗେ ନାହିଁ ।

ପତ୍ନୀ ପତି ଭଲ—ପ୍ରହର ଗୃହ ।

ପତ୍ନୀର ଗୃହ ପ୍ରବେଶ; ପତିର ଶ୍ମଶାନେ ପ୍ରବେଶ ।

ପଥରରୁ ପଟ କାଢ଼ିବା ଲୋକ ।

ପଲମନ୍ଥୁ ଗଲା; ଚୁଲ୍ଲୀରେ ପଡ଼ିଲା ।

ପତି ବ୍ରାହ୍ମଣଙ୍କୁ ଦେଲେ, ପତ୍ନୀ ବୈଷ୍ଣବଙ୍କୁ ଦାନ ।

ପାଣିର ଗାର, ନୀଚର ଗିର ।

ପାଠ ପଢ଼ିବାକୁ ଦାଏ, ପଟା ଧରି ପଛେ ଧାଏଁ ।

ପାର ନାହିଁ ସମୁଦ୍ରର, ଧଡ଼ ନାହି ଅକାଶର ।
ପାତ୍ର ଦେଖି ଦାନ; କ୍ଷେତ୍ର ଦେଖି ଧାନ ।
ପିଠା ଯେଉଁଠାବେ, ପିମ୍ପୁଡ଼ି ସେ ଠାବେ ।
ପିଣ୍ଡ ବଢ଼ିଲେ ହାଣ୍ଡି ବଢ଼େ
ପୁରୁଷ ବାଞ୍ଛାର କରତା ପୁରୁଷୋତ୍ତମ ଫଳଦାତା ।
ପୂଜା ଦେଲେ ଜନ ଖାଇବ; ଗାଳିଦେଲେ କିଏ ସହିବ ?
ପେଜ ପିଇବା ଲୋକର ନାଣ ଠେକିବାକୁ ଗୃହର କି ଦରକାର ।
ପେଟ ଖଣୀ ସମାନ; ତୁଣ୍ଡ ଛୁଇଁ ମୂନ ।
ପେଟ ପୂରିଲେ, ଫେଣା ପିତା ।
ପୋକ ସାନ, ରଡ଼ ଠାଣ ।
ପ୍ରାଣଗଲେ ଯାଉ; ମାନ ମାତ୍ର ଥାଉ ।
ପିଠାଉ ପରମାଣେ ପିଠା; ପଦାର୍ଥ ଉତ୍ତମରୁ ମିଠା ।
ପୁତ୍ରର ବରଦେଲେ ହେଲେ, ପୂଜାରି ବରକୁ ନ ଦେଲେ ।
ପ୍ରଜାଙ୍କୁ ନ୍ୟାୟରେ ନ ପାଳିବା ନୃପ, ସିଂହାସନ ଖଡ କୁଟ ।
ବୋଇଭ କଖାରୁ କବା କନ୍ଦମୂଳ, ମିଶା ବେଶର ଭେଷତ୍ର ।

### ଫ

ଫଳିବା ଗଛକୁ ଶିଳା ପ୍ରହାର;
ଚଳିବା ଲୋକକୁ ଚଳାଏ ନର ।
ଫୁଲ ବିନା ଝଣ୍ଟା, ଧନ ବିନା ବଣ୍ଟା ।

### ବ

ବଜାର ଖଜା, ଦେଉଳ ଦିଅଁକୁ ପୂଜା ।
ବଜ୍ର କାଟେ ବଜ୍ରକୁ; ନିଜେ ନାଶେ ନିଜକୁ ।
ବଢ଼ିବାଠା ଛିଡ଼ିବା ପାଇଁ ।
ବଣ ବରାହ ଫସଲ ଖାଇଲେ, ଗାଁ ବରାହର କାନ କାଟିଲେ ।
ବଣିର ଉପରେ ବ୍ରହ୍ମାସ୍ତ୍ର ।
ବଳ ଯାର, ସ୍ଥଳ ତାର ।
ବଳଦ ତଡସେ; ଘୋଡ଼ା ଗରସେ ।
ବଳରେ କରିବାଠାରୁ କଳରେ କରିବା ସହଜ ।

ବଳହୀନର ମାଇପ ହେବାଠାରୁ
ବଳବାନର ପୋଇଲି ହେବା ଉଚିତ ।
ବଳଦ ପ୍ରସବିଲା ବୋଲନ୍ତେ; ବାଛୁରିକି ବାନ୍ଧ ବୋଲେ ।
ବଳୀର ଭୋଜ୍ୟ ଅଟେ ରାଜ୍ୟ, ଦୁର୍ବଳ ସବୁଠାରେ ତ୍ୟାଜ୍ୟ ।
ବାଜିଲା ଠାରେ ବାଜେ, ହଜିବା ଘରେ ହଜେ ।
ବାଡିବା ଲୋକ ବନ୍ଧୁ ହୋଇଥିଲେ,
କୋଠାରେ ହେଲେ ବସ ।
ବାମନର ବୁଦ୍ଧି ମହଣେ; ବାମାର ସାହସ ଭରଣେ ।
ବାସ୍ତାର ବଢାର ବାର, ଜାସ୍ତାର ବାଣ୍ଟା ହଜାର ।
ବାରଣସୀ ଗଲେ ସବୁ କୁକୁର; କିଏ ଗୃହିବ ଅଇଁଠା ପତର ।
ବାର ପାଠ ଭାତ ପାଇଁ, ସବୁ ଫାନ୍ଦ ସୁଖ ପାଇଁ ।
ବାହାରେ କଳି ହେଲେ ଘରେ ପଶିବ;
ଘରେ କଳି ହେଲେ କୋ'ଠାକୁ ଯିବ ?
ବିଛାର ଲାଙ୍ଗୁଳ, ସାପର ଶିର, ଖଳର ସର୍ବାଙ୍ଗ ବିଷର ଘର ।
ବିରାଡ଼ିର ଖେଳ—ମୂଷିକର କାଳ ।
ବିଷ ଦେଇ ହେବ ହେଲେ ସ୍ନେହରେ;
ଦୁଧ ଦେଇ ହେବ ନାହିଁ ବୈରରେ ।
ବେଶ୍ୟାର ଘରପୋଡ଼ି ଯାଉଥିଲେ;
ଖଟ ଖଟ ପକାଅ ବୋଲେ ।
ବାଇଗଣ ପରିବାରେ, ବିଦେହଜା ବନିତାରେ
ବୀର ରାଘବ ରାଜାରେ, ବର ଧର୍ମରେ ।
ବ୍ୟସନ ପରିତୃପ୍ତି ପାଇଁ, କୁବେର ଧନ ଅଣ୍ଟେ ନାହିଁ ।
ବାଙ୍କ ଭ୍ରମ କଦାବା । ହୁଅଇ ସମାଦୃତ ।
ମଧୁପ ମଧୁକର ନାମରେ ବ୍ୟବହୃତ ।

ଭ

ଭକତ ନ ଥିବା ଅର୍ଚ୍ଚନା, ପନ୍ଦ ପୁଷ୍ପଙ୍କ ଯତ ସିନା ।
ଭଲେ ଭର୍ତ୍ତୃବଲେ ନାରୀ ନୁହଇ ଅବଳା;
ତାର ଉପଯୁକ୍ତ ନାମ ଅଟଇ ସବଳା ।
ଭସ୍ମରେ ପଡ଼ିବା ଅହୁତ, ଲୋକଙ୍କର ମନର ସମ୍ମତ ।

ଭାତ ଖାଇବା ଘରେ ଗାତ ଖୋଳଇ ।
ଭାଇଁଆଙ୍କୁ ଭାତ ଦେଲେ, ଲୋକୋପକାର ହୁଏ କି ?
ଭିନ୍ନେ ମତି ମୁଣ୍ଡେ ମୁଣ୍ଡେ; ଭିନ୍ନେ କଥା ତୁଣ୍ଡେ ତୁଣ୍ଡେ ।
ଭୁକିବା କୁକୁର କାମୁଡ଼େ ନାହିଁ ।
ଭୋକ ସ୍ୱାଦ ନ ମଣେ; ନିଦ ସ୍ଥାନ ନ ଗଣେ ।
ଭୋଜରାଜ ପରି ରାଜା ଥିଲେ; କାଳିଦାସ ପରି କବି ଥାଏ ।
ଭକ୍ତି କ୍ଷେତ୍ରକୁ ତିନ୍ତାଇ ସୁଜ୍ଞାନ ସଲିଳେ,
କର୍ମବୀଜକୁ ରୋପିଲେ ମୁକ୍ତି ଶସ୍ୟ ମିଳେ ।
ଭାତ ନାହିଁ ଗରାସକୁ; ବାସନା ତେଲ ନିଶକୁ ।
ଭୁଞ୍ଜଇ ଏକଥର ଯୋଗୀ,
ଭୁଞ୍ଜଇ ଦୁଇଥର ଭୋଗୀ,
ଭୁଞ୍ଜଇ ତିନିଥର ରୋଗୀ,
ଚାରିଥର ଯେ ପ୍ରାଣ ତ୍ୟାଗୀ ।
ଭ୍ରମର କୀଟକାଖ୍ୟାନ୍ୟାୟ; ଭ୍ରମରୁ କଥିତ ନିଷ୍ଟାୟ ।

## ମ

ମଣ୍ଡା ଭାଙ୍ଗିବାକୁ ଖଣ୍ଡା କାହିଁକି ?
ମନୋବ୍ୟାଧିକୁ ନାହିଁ ଔଷ, ସାହସୀକକୁ ନାହିଁ ତ୍ରାସ ।
ମନୁଜ ପ୍ରକୃତି, ମଶାଣିରେ ସିନା ପାଏ ନିଷ୍କୃତି ।
ମସ୍ତକ କାକର, ତଳପା ତାତି;
ଆରୋଗ୍ୟ ଲକ୍ଷଣ ବୋଲି କହନ୍ତି ।
ମସ୍ତକ ଜାତ ବୁଦ୍ଧି—ମରଣାବଧି ।
ମାଆକୁ ଯେ ମାରେ, ମାଉସୀକି ସେ କି ପାଳେ ?
ମାଆକୁ ଦେଖି ଝିଅକୁ ଆଣ, ଦୁଧକୁ ଦେଖି ଗାଈକୁ କିଣ ।
ମାଆ ପେଟକୁ ଦେଖେ, ମାଇପ ପିଠିକୁ ଦେଖେ ।
ମାଆ ଥିବାଯାଏ ମାଆ ଘର, ମାଇପ ଥିଲେ ଶାଶୁଘର ।
ମାଇପ ହାତରେ ଧନ ନ ବଢ଼େ,
ମଣିଷ ହାତରେ ପିଲା ନ ବଢ଼େ ।
ମାଇପର ମିଛ ପଥର ପାଟେର,
ମଣିଷର ମିଛ ହାଟ ବାଟ ପର ।

ମାତା ଯେପରି ସୁତା ସେପରି, ବୀଜ ଯେପରି ବୃକ୍ଷ ସେପରି ।
ମାନବ ସେବା—ମାଧବ ସେବା ।
ମାନବ ବାଞ୍ଛଇ, ମାଧବ କରଇ ।
ମାଙ୍କଡ଼ ହାତର ପଇଡ଼ ପରି ଲୋଭୀର ଧନ ଚେଲା ।
ମାଙ୍କଡ଼କୁ ଦେଖି ତୁହି ଖେଚାଉ,
ସେ ତୋତେ ଖେଚାଏ ତୁ ଜାଣୁ ନାହୁଁ ।
ମିଳିଲେ ବାଘର ଆହାର, ନ ମିଳିଲେ ସାପର ଆହାର ।
ମୁଣ୍ଡ ମୁଣ୍ଡନ ଅକାରଣ, ମନୋମୁଣ୍ଡନ ପ୍ରୟୋଜନ ।
ମୂର୍ଖଜନ କି ଜାଣିବ ପୁରାଣ କଥା ?
ବନ୍ଧ୍ୟା ନାରୀ କି ଜାଣିବ ପ୍ରସୂତିର ବ୍ୟଥା ।
ମୂର୍ତ୍ତି ସାମାନ୍ୟ, କୀର୍ତ୍ତି ଅଗଣ୍ୟ ।
ମିତ୍ରଦୋଷ ଦେଖାଏ, ଶତ୍ରୁ ଗୁଣ ଦେଖାଏ ।
ମୂଦରେ ଦେବା ଦ୍ରବ୍ୟ ମୁଠାଏ ଅଣ୍ଟେ ।
ମୋତି ପଙ୍କରେ ପଡ଼ିଲେହେଁ ମୋତି,
ଧୂଳି ଗଗନରେ ଉଡ଼ିଲେହେଁ ଧୂଳି ।
ମାଙ୍କଡ଼ ହାତରେ ମାଣିକ, ଦିଅନ୍ତେ ହୁଏ କି ସାର୍ଥକ ।
ମିଛ କଥା ବଡ଼ ମିଠା, ତା'ର ସମେ ନାହିଁ ପିଠା ।

## ଯ

ଯତି ଦେଢ଼ ସେର, ଜଟା ଅଢ଼ାଇ ସେର ।
ଯଥାର୍ଥବାଦୀ ଲୋକ, ବିରୋଧୀ ।
ଯାର କାନ ଶଏ ମାନ ଲାଭ ଏକ,
ଜଗତରେ ସେହି ଏକା ବଡ଼ଲୋକ ।
ଯାହାର ଉନ୍ମାଦ, ତାହାର ପ୍ରମୋଦ ।
ଯାହାର ପ୍ରାଣ ତାକୁ ମଧୁର; ଯାହାର ଜାର ତାକୁ ସୁନ୍ଦର ।
ଯାହାଠି ଅନିଷ୍ଟ ତୋହର, ତାକୁ ଭିତରେ ନ ଆଚର ।
ଯାହା ଦିଏ ଯାହା ଖାଏ, ତାହା ମାତ୍ର ତା'ର ହୁଏ ।
ଯେଉଁ ଦେଶରେ ନର ଥିବ, ସେଠାଏ ଚଳଣି କରିବ ।
ଯେ ହାତ ନ ପସାରେ ସେହି ଗୋଡ଼ ପସାରେ,
ଯାହାର ବୃତ୍ତି ଥାଏ, ସେହି ଧନୀ ସଂସାରେ ।

ଯେଉଁ ଦେଶରେ ନର ଥିବ, ସେଠାର ଚଳଣି କରିବ ।
ଯେ ଖୋଜେ ପର ଦୋଷ, ତାର ହୁଏ ବିନାଶ ।
ଯେ ପାଞ୍ଚେ ପର ଭଲ, ତାର ହୁଏ ମଙ୍ଗଳ ।
ଯୋଗୀ ଯୋଗୀ ଅଲଗଙ୍କନେ ଝଡ଼ଇ ପଇଁଶ,
ଭୋଗୀ ଭୋଗୀ ସମ୍ମିଳନେ ବଢ଼ଇ ବିରସ ।
ଯେ ହୁଏ ଅଶାର କଙ୍କର, ସେହି କଙ୍କର ଜଗତର ।

## ର

ରଖିଲେ ନନ୍ଦୁଣୀ ବଇର ମଥାରେ,
ବକ ଧରିପଡ଼େ ଗୃହାଣି ବନାରେ ।
ରାଜା ଗଜ ଚଢ଼ିଲେ, ପରଜା ଗଛ ଚଢ଼ିଲା ।
ରାଗରୁ ଜାତ ହୁଏ ଦୁଃଖ, ତ୍ୟାଗରୁ ଜାତ ହୁଏ ସୁଖ ।
ରାଣ୍ଡିର ପୁଅ ଷଣ୍ଡକୁ ଠେଙ୍କେ ।
ରାମାୟଣ ଯାକ ଶୁଣି ସୀତା ରାମର କିସ ହେବ ବୋଲିଲା ।

## ଲ

ଲଙ୍କାରେ ଯେ ପ୍ରାଣୀ ଜାମନ, ବାଆନ ହାତ ପରମାଣ ।
ଲକ୍ଷାଧିପତି କିବା ଭିକ୍ଷାଧିପତି ।
ଲଜ୍ଜିବା ଘା ପୋଛିଲେ ଯିବ କି ?

## ଶ

ଶହେ ଯାଏ ଠକାକୁ ପୋଷ ।
ଶଏହେବା ପରେ ସୁଖରେ ବସ ।
ଶକ୍ତିହୀନ ସାଧୁ ରୂପ ଧରେ ।
ଶସ୍ତା ବୋଲି କାଣୀକି ଘରଣୀ କରିଲେ,
ଶହେ ହାଣ୍ଡି ଦିନକୁ ଭାଙ୍ଗିଦିଏ ହେଲେ ।
ଶାଶୁ ନ ଥିବା ବୋହୂ ଗୁଣବତୀ,
ବୋହୂ ନ ଥିବା ଶାଶୁ ଶୀଳବତୀ ।
ଶାଶୁ ଭାଙ୍ଗିଲା ହାଣ୍ଡି ଫଟାଠା,
ବୋହୂ ଭାଙ୍ଗିଲା ହାଣ୍ଡି ନୂଆଠା ।
ଶାଶୁ ମଲେ, ବୋହୂ କାନ୍ଦିବା ପରି ।

ଶାଶୁ କଥା ଠେକ, ବୋହୂ କଥା ଥାଳ ।
ଶୁଷ୍କ ବଚନ ଶୂନ୍ୟକର, ମାନବେ ଜଗତେ ପ୍ରଚୁର ।
ଶ୍ଳେଷ୍ମେ ଛିଙ୍କ, ପିତ୍ତେ ହାଇ; ବାତେ ହୁଙ୍କା ଜାଣ ଭାଇ ।

### ଷ

ଷଣ୍ଢ ପ୍ରସବିଲେ, ହାଣ୍ଡିଏ ଦୁଧ ଦେବ ।

### ସ

ସତ କହିଲେ; ସର୍ବାନାଶ ।
ସମ୍ପନ୍ନର ସମସ୍ତେ ବନ୍ଧୁ ।
ସମସ୍ତେ ସବାରି ଚଢ଼ିଲେ, ବୋହିବ କିଏ ?
ସମୁଦ୍ରରେ ପହଁରି ହୁଏ, ସଂସାରରେ ପହଁରି ନୁହେ ।
ସାନ ସାପକୁ ମଧ ବଡ଼ ବାଡ଼ିରେ ମାର ।
ସାବନ୍ତପୁଅ ହାତେ ସାପର ମାରଣ
ସୁଖିଙ୍କର ରୋଗ ନାହିଁ, ସୁମଧୁର ଔଷ ନାହିଁ ।
ସୁତାର ସୁନା ମଧ ସୁନାରି ହରେ ।
ସୁଖ ଦୁଃଖ ବେନି ଯମଳ; ଗୋଟିକ ପରେ ଗୋଟିଏ ପ୍ରଚଳ
ସନ୍ୟାସୀର ମାଇପ ରାଣ୍ଡ ନୁହେ; କିବା ଅହ୍ୟ ନୁହେ ।

### ହ

ହର୍ତ୍ତାକୁ କର୍ତ୍ତା; କର୍ତ୍ତାକୁ ବିଧାତା ।
ହାରିବା ଲୋକର ତୋଷ ନାହିଁ;
ମରିବା ରୋଗର ଔଷ ନାହିଁ ।
ହସ୍ତୀ ଜାଣେ ପାପ, ମାଅ ଜାଣେ ବାପ ।

—:o:—

ଅନାବଶ୍ୟକ ଚନ୍ଦ୍ରାପୁଧ, କାଠକୁ ଭରିବାକୁ ବଧ ।
ଅନ୍ଧକୁ ଆଦରଶ ଦେଖାଇବା ଯେମନ୍ତ;
କାଲକୁ ବୀଣା ଶୁଣାଇବା ତେମନ୍ତ ।

ଅନ୍ଧ ଗୋଡ଼ ହେବ କି ଖଞ୍ଜର ଲଗୁଡ଼ ।
ଅଧିକ ବନ୍ଧୁ ଅଧିକ ହେଲେ ଅମ୍ବିଲା ପାଉଳ ।
ଉପକାରର ଅପକାରୀ ଦାନବ,
ଉପକାରର ଉପକାରୀ ମାନବ,
ଅପକାରର ଉପକାରୀ ଦେବ ।
ଉଚ୍ଚ ହେଲେହେଁ କଣା ଦାନା ନ ହୁଏ ଉଣା ।
କଙ୍କଡ଼ାର ବାଠ, କୁତାର ଲାଙ୍ଗୁଳ ।
ଦୁଷ୍ଟର ଚଳନ ନୁହେ ସରଳ ।

କ

କାନ୍ଥର କାନ ଅଛି ।
କାଳକୁ କରିବାର ବୃଥା, ଅଳସୁଆଙ୍କର ପ୍ରଥା ।
କୁତ ର ଲଞ୍ଜ ଧର ହେବ କି ପଧଁର ।
କେତେଦିନ ଅନ୍ଧାର, କେତେଦିନ ଉଜ୍ଜ୍ୱଳ ।
ଖାତ ଖୋଳନ୍ତେ, ଭୂତ ବାହାରିଲା ।
ଖାଦକୁ ଅସୁର, କାମକୁ ଶୂକର ।
ଗୋଡ଼ ଖସିଲେ କାଢ଼ି ହୁଏ,
ତୁଣ୍ଡ ଖସିଲେ କାଢ଼ି ନୁହେ ।
ଘଉଡ଼ି ନ ପାର ଘରେ ଧୂଆଁ ଦେବା ପର ।
ଘରର ଚୋର ଗଣେଶର ଅଗୋଚର ।
ଘୁଷୁରି କି ଜାଣେ କସ୍ତୁରୀର ବାସ ।
ଚଢ଼େଇକୁ ଛତା ଅଢ଼େଇ ।
ଛାଇ ରୂପ ଅଙ୍ଗେ; କମିଯିବ ସାଙ୍ଗେ ।
ଛେଳିର ଦେହ ହେଲେ ଧୂମା, ବଢ଼ଇ ପାଳକ ଗାରିମା ।
ଜନନୀ ଦାତା.ଦାନା ଦେବତା ।
ଡାଳ ଦେଇ ଡାଳ ନିଏ ।
ତୁଣ୍ଡକୁ ତୁଳି ଖାଲ ପରକୁ ଦାଉ,
ହେଳରେ ଅଗ ମୁକେ ପଛ ହୁଅ ।
ତୁଣ୍ଡ ଭଲହେଲେ ମଣ୍ଡଳ ହଳ ।
ତୁଣ୍ଡ ମୁଣ୍ଡକୁ ବଂଶପାତକ ।

ଦଣ୍ଡବତ ମଧ୍ୟ, ଚଣ୍ଡୀ ଶାଶୁର ମୁଣ୍ଡ ଘାରେ ।
ଦରିଦ୍ର କାନ୍ଦେ ଖାଦ୍ୟ ପାଇଁ, ଧନୀ କାନ୍ଦେ ଧନ ପାଇଁ ।
ଦରିଦ୍ର ଲୋକେ ଜ୍ଞାନ ହୀନ, ନଗଣ୍ୟ ବାଳୁତ ସମାନ ।
ଦୁଷ ଉଚ୍ଚାଇତ ଧନେ ହୁଏ ଧୃତ ।
ଦାସ୍ୟର ଦୋଷ ଦଣ୍ଡବତେ ଶେଷ ।
ଧନଙ୍କଥା କାର୍ଯ୍ୟ ନାଶେ, କଣୀ କଥା ଧନ ନାଶେ ।
ଦେବା ଲୋକଙ୍କୁ ଦେଖିଲେ, ମଲ୍ଲ ଲୋକ ଉଠେ ।
ଧର୍ମକୁ ଧାନ ମାପିଦ୍ୟନ୍ତେ, ଗଉଣି ସାନ ବୋଲି ଗୋଳକଲ ।
ଧରମ ହୀନ, ଲଗାମ ନ ଥିବା ଘୋଡ଼ା ସମାନ ।
ନାରୀଧନ ସୁନ୍ଦରତ୍ୱ, ନରଧନ ବୁଦ୍ଧିତ୍ୱ ।
ନିଜେ ନ କହ ପ୍ରୀତି ଅର୍ଘଣାର,

ପର ମୁଖରୁ ତା ଶୁଣି ପାର ।

ପାପୁଲି ଘାରେ ପାହାର ମାଡ଼
ପାଷାଣକୁ ବଧା ମାରବ କାହିଁକି,
ପାପୁଲି ବଥା କରବ କାହିଁକି ।
ପିକ କାକ ଅଙ୍ଗାର ଝଲଝଲ,

ଶତଧୌତରେ ନୁହନ୍ତି ଶୁକ୍ଳ ।

ପୁରଥିଲେ ଉଦର, ଖିର ପିଠା ନରୁଚ ।
ପୁଷ୍ପକ ଗଲେହେଁ ପୂଜିତ ହେବକ ।
ପୋଇଲପୁଅ ମଧ୍ୟ ପଇସା ହେଲେ ପ୍ରଭୁ ।
ପ୍ରେମ ବିନା ଅନ୍ନ ପ୍ରେତାନ୍ନ ।
ବ୍ୟର୍ଥ ମୁଣ୍ଡ ମୁଣ୍ଡନ, ସାର୍ଥ ବାଞ୍ଛା ମୁଣ୍ଡନ ।
ବାଇ ନିଜର ଅନନ୍ଦ ଚର ।
ଚହଦଲୁ ବିଶ୍ୱାସ କର; ବନ୍ଧୁଡ଼ା ଭାଙ୍ଗିବା ପର ।
ବଣି ଉପରେ ବ୍ରହ୍ମାସ୍ତ୍ର ।
ବାଜେ ମାଡ଼ ମାଡ଼ରେ, ମିଶେ ଧନ ଧନରେ ।
ବାଡ଼ ନ ଥିଲେ ମେଣ୍ଢେ କାମଡେ ।
ବୁଧ ନାମ ଧାରଥାନ୍ତି, ଧୋବା କାଙ୍କଡ଼ାକେ ବୁଲୁ ।

ଭଜନ କରିବା ସମସ୍ତେ ଭକ୍ତ ନୁହନ୍ତି ।
ମଣିକର୍ଣ୍ଣିକାରେ ବୁଡ଼ିଲେହେଁ ଶନି ଛାଡ଼େ ନାହିଁ ।
( ମରେନାହିଁ ) ମରୁନାହିଁ କି ମସିଣା ଛାଡ଼ୁ ନାହିଁ ।
ମା ଦେଖେ ପେଟ, ମାଇପ ଦେଖେ ଗଣ୍ଠି ।
ମା ପରି ଝିଅ—ବାପ ପରି ପୁଅ ।
ମାର୍ଜାର ଖେଳ, ମୂଷାର କାଳ ।
ମୁଣ୍ଡମାଳାରେ ମୂର୍ଖନର, ଗୃହ ନିର୍ମିତ ଓଁକାଳର ।
ମୂଷା ମରେ ନାହିଁ ବେଶୀ ଲୋକରେ ।
କାର୍ଯ୍ୟ ହୁଏ ନାହିଁ ବେଶୀ ଦାସରେ ।
ଯାହା ଦିଏ ଯାହା ଖାଏ, ତାହା ମାତ୍ର ତାର ହୁଏ ।
ଯାହା କହ ତାହାଙ୍କର, ଯାହା ଭଲ ତାହା ବର ।
ରହସ୍ୟ ମେଲଇ ନିଶା—ସମସ୍ତ ହରଇ ପଶା ।
ରକ୍ଷକ ଭକ୍ଷଣ କରିବା ପରି ।
ଲଗୁଆ ଦେଲେ ଗ୍ରାହକ ବଢ଼ନ୍ତି ।
ମାନ ଧନ ହୋଇଯାଏ କମତି ।
ବଣଗ ହେଲେ ତୁ ପ୍ରଭୁର, ଖଟାଇ ପାରିବୁ ଶୂକର ।
ଶରଟ ବଢ଼ିଲେ ବିମ୍ବିକ ।
ଶାଶୁ ନ ଥିବା ବୋହୂ ସରଳା,
ବୋହୂ ନ ଥିବା ଶାଶୁ କୋମଳା ।
ଶୀଘ୍ର ଖାଇ ଶୀଘ୍ର ଶୁଅ, ବୈଦ୍ୟଙ୍କୁ ହାତ ନ ଦିଅ ।
ଶୋଇଥିଲେ ହେଲେ ଗଜ, ଘୋଡାଠାରୁ ହୁଏ ଉଚ୍ଚ ।
ସବୁ ସମୟରେ ମାତା ମାତା, ବିମାତୃ ଲଭଯାଏ ପିତା ।
ସ୍ୱଭାବ ବଦଳଇ ନାହିଁ—ଅପ୍ରାପ୍ୟ ପ୍ରାପ୍ୟ ହୁଏ ନାହିଁ ।
ହାଡ଼ ନ ଥିବା ଜିଭର ଅକଟ ନାହିଁ ।
ଯେଜାଣି ବୁଣ ବାହନ, ପାତ୍ରଜାଣି ଦିଅ ଦାନ ।

ସ୍ନେହକୁ ସୌଖ୍ୟକୁଦୟାକୁ । ଅଥବା ଜନକ ସୁତାକୁ ॥
ଲୋକଙ୍କ ଆରାଧନ ପାଇଁ । ତେଜିଲେ ବ୍ୟଥା ମୋର ନାହିଁ ॥

---

ସୁପ୍ତମାନବମାନଙ୍କୁ ଉଠାଇବା ପାଇଁ । ଶ୍ରୁତିହୃତସ୍ୱରେ ଖଗେ ଗାଆନ୍ତି ନଠାଇ ॥
ହୃତ କଳାତଶୀତଳ ମାରୁତ ମନ୍ଦରେ । ପ୍ରସବ ସକଳାଙ୍ଗ ପ୍ରତ୍ୟଙ୍ଗସ୍ପର୍ଶକରେ ॥

---

ବନ୍ଦେ ରାମଂ ମେଘଶ୍ୟାମଂ । ଶାନ୍ତ୍ୟାକାରଂ ସର୍ବାଧାରଂ ।
ସାକେତେନଂ ଦାସାଧୀନଂ । ରକ୍ଷଃକାଳଂ ସୀତାଲୋଲଂ ॥

---

ରାଗିଣୀ ଶଙ୍କରାଭରଣ—ଆଦିତାଳ ।

ସେ ଭାରତ ଅମ୍ବର । ପ୍ରପଞ୍ଚବର । ପ ।
ଧରଣୀରେ ଯେ ନନ୍ଦନ । ଯହିଁ ଅମ୍ଭେ ଖଗଗଣ ।
ଅଭାବ କର ଖଣ୍ଡନ । ସୁଖେ କରୁ ବିହରଣ । ୧ ।
ଦେଶରକ୍ଷଣ ନିମିତ୍ତ । ଦ୍ୱାସ୍ଥ ପରି ଅବିରତ ।
ଉତ୍ତରେ ଥିବା ଉନ୍ନତ । ହିମାଳୟଗିରିଯୁତ । ୨ ।
ଦକ୍ଷିଣ ମହାସାଗର । ପୂର୍ବାପରେ ପାରାବାର ।
ବାହୁଯୁଗେ ନିରନ୍ତର । ଆଲିଙ୍ଗି ଥିବା ଭୂସ୍ଥଳ । ୩ ।
ଭାଗୀରଥୀ ଗୋଦାବରୀ । କୃଷ୍ଣା ଯମୁନା କାବେରୀ ।
ପ୍ରଭୃତି ନଦୀଙ୍କ ବାରି । ଯହିଁ ଶସ୍ୟ ଦିଏ ଭରି । ୪ ।
ଯେ ସର୍ବଧର୍ମୀ ସୋଦର । ଭାବେ ଥିବା ପାଇଁ ପୁର ।
ପ୍ରଦ ଯେ ଶ୍ରୀ ବିକ୍ରମର । ଜନ୍ମସ୍ଥାନ ମନୋହର । ୫ ।

---

## ଅଦ୍ଭୁତ ସତ୍ୟ

ସମୁଦ୍ରଯାତ୍ରୀ ତୃଷାରେ ହୁଏ ପ୍ରପୀଡ଼ିତ ।
ଅଜୀର୍ଣ୍ଣଗ୍ରସ୍ତ ଧନୀ ମିଷ୍ଟ ଭୋଜନ ରହିତ ॥
ଦୁଷ୍ଟ ରାଜାର ସେବକ ସତ୍ୟବ୍ରତ ତ୍ୟାଗୀ ।
ଦୁଷ୍ଟାବନିତାର ପତି ସଦା ଦୁଃଖଭାଗୀ ॥
ମତ୍ସରଯୁକ୍ତଜନର ମନ ରଗରଗ ।
ସୁମଫଳହୀନ ନଗ ହୁଏ ଗଡଖଗ ॥
ଉଷର କ୍ଷେତ୍ର ହୁଅଇ ସର୍ବ ଶସ୍ୟହୀନ ।
ମହାଧନୀ ହେଲେ ମଧ୍ୟ ଲୋଭୀ ଅତି ଦୀନ ॥
ବଳୀ ମଧ୍ୟ ଧୃତିହୀନ ହୋଇଲେ ଦୁର୍ବଳ ।
ସୁଧୀ ମଧ୍ୟ ଦୁଷ୍ଟ ମୈତ୍ରୀବଶୁଁ ହୁଏ ଖଳ ॥
ହେମ ପଞ୍ଜରସ୍ଥ ଶୁକ ନୀଡ଼କୁ ବାଞ୍ଛଇ ।
ସାଧୁ ମଧ୍ୟସ୍ଥିତ ଶଠ ବାମାକୁ ପାଞ୍ଚଇ ॥

ସିଂହାସନସ୍ଥିତ ଶ୍ୱାନ ବାଞ୍ଛେ ଖାତଗଦା ।
ଅନ୍ତଃପୁରସ୍ଥିତା କାନ୍ତା ସଦା ଲୋଡ଼େ ପଦା ॥
ଧନୀ ବଢ଼ି ଧନାର୍ଜନେ ହୁଏ ଛଟପଟ ।
ଦୁର୍ବିଦଗ୍ଧ ହୃଦୟରେ ଗରବ ଉଲଟ ॥
କେବଳ ମଧୁରଭୋକ୍ତା ବାଞ୍ଛାକରେ ଖଟା ।
ଅଜ୍ଞ ମନାସେ ବିଜ୍ଞଙ୍କୁ ଜିତିବାକୁ ଅଟା ॥
କୁଳଟା ଲଜ୍ଜାଭୀତିବିହୀନା ହୋଇଥାଏ ।
ପ୍ରପଞ୍ଚସୁଖ ବିରାଗୀ ନିତ୍ୟ ସୁଖ ପାଏ ॥

---

## ରାବଣୋପଦେଶ

ବ୍ରହ୍ମାସ୍ତ୍ରରେ ବିଦ୍ଧ ହୋଇ ପଡ଼ନ୍ତେ ରାବଣ ।
ତାହା ଦେଖି ଲକ୍ଷ୍ମଣଙ୍କୁ ଜାନକୀରମଣ ॥
ଆପଣା ନିକଟ ଡାକି ବୋଇଲେ ଏମନ୍ତ ।
ଦଶକଣ୍ଠ ସମୀପକୁ ଯାଅ ତୁ ତୁରନ୍ତ ॥
ନୃପର ମୁଖ୍ୟ କର୍ତ୍ତବ୍ୟ କାର୍ଯ୍ୟନିଚୟକୁ ।
ତାଙ୍କୁ ପଚାରି ପ୍ରକଟି ଅତି ବିନୟକୁ ॥
ବହୁଶତାବ୍ଦି ଧରାକୁ ପାଳି ନିପୁଣରେ ।
ନୃପଧର୍ମ ମର୍ମବେତ୍ତା ସେ ମାତ୍ର ଜଗତରେ ॥
ଅହା ! କାଳବଶୁଁ ପରଭୁବନ ଗମନ ।
କରୁଅଛନ୍ତି ସେ ଏବେ ତେଜି ଅପଧନ ॥
ସେ ଗମନ୍ତେ ନୃପେ ନିଜ କରଣୀୟ କାର୍ଯ୍ୟ—
ଜ୍ଞାନରୁ ବଞ୍ଚିତ ହେବେ ଏହା ଅନିବାର୍ଯ୍ୟ ॥
ତେଣୁ ଅଳ୍ପ ବିଳମ୍ବ ନ କର ଯାଅ ତରେ ।
ଏତେ ଶୁଣି ସୁମିତ୍ରାଜ ରାବଣ ପାଶରେ ॥
ପ୍ରବେଶନ୍ତେ ତାଙ୍କୁ ଦେଖି ରାବଣ ନମିଲା ।
ଅଦ୍ୟ ଧନ୍ୟ ହେଲି ବୋଲି ଆନନ୍ଦେ ଭାଷିଲା ॥
ତାହା ଶୁଣି ରାମାନୁଜ ବୋଇଲେ ଏମନ୍ତ ।
ଅହେ ମହାରାଜ ତୁମ୍ଭେ ଅତି ପୁଣ୍ୟବନ୍ତ ॥

ନୃପ କର୍ତ୍ତବ୍ୟ କର୍ମାଳି ମୁଖରୁ ତୁମ୍ଭର ।
ମୋ ଦ୍ୱାରା ଜଣିବାକୁ ମୋ ଅଗ୍ରଜ ତତ୍ପର ॥
ତେଣୁ କୃପାରେ ମୋତେ ଏ ସବୁ ବିବରଣ ।
କରି କହ ଅହେ ପରାଜିତ-ଦେବଗଣ ॥
ଏତେ ଶୁଣି ଦନୁଜେଶ ଦୀର୍ଘଶ୍ୱାସ ତେଜି ।
ହୀନ ସ୍ୱରରେ ବଚନ ପ୍ରକାଶିଲା ହେଜି ॥
ରାମ ସର୍ବଜ୍ଞ ସର୍ବେଶ ସମସ୍ତ କାରଣ ।
ତାହାଙ୍କର ଅଜ୍ଞାତ ଏ ଜଗତେ କଅଣ ?
ସେ ମୋତେ କୃପା ପ୍ରକଟ କରନ୍ତି ମୋହର ।
ତୁମ୍ଭଙ୍କୁ ପ୍ରେରିଲେ ସିନା ଅହେ ବୀରବର ॥
ଅନେକ ତ ନୃପତିର ସ୍ୱଧର୍ମଚରିତ ।
ସେ ସବୁ କହି ପାରିବି ନାହିଁ ମୁଁ ସମ୍ପ୍ରତି ॥
ମୋର ପ୍ରାଣବଲ୍ଲଭସ୍ୱାମୀ ପ୍ରସ୍ଥାନ କଲେଣି ।
ଗୋଟିଏ ମାତର କହି ପାରିବି ସେ ଘେନି ॥
ଜଗତ୍ରେ ଗୋଟିଏ ଭାଗ ଭୂମି, ତିନି ଭାଗ
ସଲିଳ ପ୍ରବର୍ତ୍ତମାନ ଅହେ ମହାଭାଗ ॥
ସେପରି ସ୍ଥିତ ଅଯୁକ୍ତ ବୋଲି ବିଚାରିଲି ।
ଅବ୍ଧି ତୃତୀୟାଂଶ ପୋତିବାକୁ ନିରୂପିଲି ।
ପ୍ରାଣୀଙ୍କ ନରକ କଷ୍ଟ ଶୂନ୍ୟ କରିବାକୁ ।
ଅବଧାରିଲି ଶମନଲୋକ ଧ୍ୱଂସିବାକୁ ॥
ପୁଣି ସକଳେ ସ୍ୱର୍ଗରେ ନିର୍ଦ୍ୱନ୍ଦ୍ୱ ଯିବାକୁ ।
ସ୍ଥିର କଲି ସୋପାନାଳି ମୁଁ ଗଢ଼ାଇବାକୁ ॥
କରିବି କରିବି ବୋଲି ସେ କାର୍ଯ୍ୟନିଚୟ ।
ନ କରି କାଳ ଯାପି ମୁଁ ଲଭୁଅଛି ଲୟ ॥
ଏଣୁ ନୃପତି ସତର୍କ ହୋଇ ନିରୂପିତ—
କାର୍ଯ୍ୟମାନଙ୍କୁ ସେକ୍ଷଣି କରିବା ଉଚିତ ॥
ଏତିକି ମାତ୍ର କହନ୍ତେ ରାବଣର ପ୍ରାଣ ।
ଶରୀରକୁ ତେଜି କଲା ଶୂନ୍ୟକୁ ପ୍ରୟାଣ ॥

ପରମପବିତ୍ରଙ୍କୁ ଅଭିଷେକ କାହିଁକି ।
ଦିଗ୍‌ବସନଙ୍କୁ କିମ୍ବା ବସ୍ତ୍ର ଯୁଗ୍ମ ।
ଯଜ୍ଞ ନାଶକୁ ଯଜ୍ଞସୂତ୍ର କି ହେତୁରୁ ।
ଭସ୍ମଲେପଙ୍କୁ କିମ୍ବା ମଳୟଗନ୍ଧ ।
ବ୍ୟୋମକେଶଙ୍କୁ ପୁଷ୍ପ ନିଚୟ କି ହେତୁରୁ ।
ଧୂପ କିମ୍ବାଇଁ ଶ୍ମଶାନ ଗୃହକୁ ।
ଦୀପ କାହିଁକି ବହ୍ନି ସୂର୍ଯ୍ୟେନ୍ଦୁ ନେତ୍ରଙ୍କୁ ।
ବିଶ୍ୱ-ଭକ୍ଷକଙ୍କୁ କିମ୍ବା ମିଷ୍ଟ ଭୋଜ୍ୟ ।
ଈଶପାଦ ନୀରେଜରେ ଭକ୍ତ କଳିତ ।
ମାନସର ସମର୍ପଣ ମାତ୍ର ସମୁପଯୁକ୍ତ ।
ସମୁପଗ୍ରର ସମାରୋହ ଅନୁପଯୁକ୍ତ ।
ପଣ୍ଡିତେ ଶତ୍ରୁରେ ଭଲେ ଭାବନାକର ।

---

ଅଦ୍ୱୈତେ ଜ୍ଞାନ ମୈମାଂସେ କର୍ମ ଦ୍ୱୈତେଭକ୍ତି ।
ଇସ୍ଲାମରେ ସମର୍ପଣ ବୌଦ୍ଧେତ୍ୟାଗାସକ୍ତି ॥
ପବିତ୍ରତା ଜାରଥୁଷ୍ଟ୍ରେ ପ୍ରେମ ଖ୍ରୀଷ୍ଟମତେ ।
ଅହିଂସା ଜୈନେ ସାଧୁତା ଇହୁଦୀଙ୍କ ମତେ ॥
ଏ ମତମାନଙ୍କରେ ଏ କେବଳ ପ୍ରଧାନ ।
ସାଧାରଣ ଧର୍ମମାନ ସବୁରେ ସମାନ ॥

---

ମଥୁରାବାସ ସାଧୁସଙ୍ଗ ନାମ କୀର୍ତ୍ତନ ।
ଭାଗବତ ଶ୍ରବଣ ହରିମୂର୍ତ୍ତି ପୂଜନ ॥
ଏହି କର୍ମ ପଞ୍ଚକ ପ୍ରତ୍ୟେକ ବୈଷ୍ଣବର ।
କର୍ତ୍ତବ୍ୟ ତରିବାକୁ ଘୋର ଭବସାଗର ॥

ଶ୍ଲୋ । ମତଂ ଚୈତନ୍ୟଦେବସ୍ୟ ଭେଦାଭେଦାଖ୍ୟମୁତ୍ତମଂ ।
ନତୁକେବଳମଦ୍ୱୈତଂ ନଚଦ୍ୱୈତଂ ପ୍ରଭେଦକଂ ॥

---

କେତେ ଦେଶଭକ୍ତ ଦ୍ୱିଭାବେ ବିଭକ୍ତ
ନରମ ଚରମ ପନ୍ଥୀ ।
ଉଦାସୀନ କେତେ ଦେଶଦ୍ରୋହୀ କେତେ
ଏ ଦେଶେ ଏବେ ଅଛନ୍ତି ।

ନିର୍ହେତୁକା ପ୍ରୀତି କୃପା ବୋଲାଏ ଜଗତେ ।
କୃପା ବିତ୍ତ ସମ ବିତ୍ତ ନାହିଁ ନାହିଁ ସତେ । ୧ ।
ତା ହର୍ତ୍ତାର ଅଗୋଚର ଦାନେ କ୍ଷୀଣ ନୋହି ।
ପ୍ରକାଶ ଲଭଇ କ୍ରମେ ବିବର୍ଦ୍ଧିତ ହୋଇ । ୨ ।
ତା ଦାତାର ଗ୍ରହୀତାର ସମ୍ଭୋଷପ୍ରଦକ ।
ମାନସ ଶାନ୍ତି ଦାୟକ ପ୍ରମୋଦ ବର୍ଦ୍ଧକ । ୩ ।
ଈଶ୍ୱରାନନ୍ତ କଲ୍ୟାଣ ଗୁଣମାନଙ୍କରେ ।
କୃପା ଗୁଣ ଶ୍ରେଷ୍ଠତମ ଅଟଇ ନିଶ୍ଚରେ । ୪ ।
ଜଳଦରୁ ବର୍ଷାଧାରା ଖସିବା ବିଧରେ ।
ଈଶ୍ୱରଠାରୁ ଖସେ ସେ ଅଦୃଶ୍ୟରୂପରେ । ୫ ।
ମର୍ତ୍ତେ ତା ନିବାସସ୍ଥାନ ସଜ୍ଜନ ହୃଦୟ ।
ଯାହା ସରଳ କୋମଳ ସଦା ଧର୍ମମୟ । ୬ ।
କୃପାପୂର୍ଣ୍ଣ ହୃଦୟରେ ଭେଦାଭେଦ ଜ୍ଞାନ ।
ପାତ୍ରାପାତ୍ର ବିବେଚନ ନ ଲଭନ୍ତି ସ୍ଥାନ । ୭ ।
ଅଖଣ୍ଡେ ବହିଲେ କୃପାହଂସୀ ହୃଦୟରେ ।
ଲୋଭାଦି ଦୁର୍ଗୁଣଗଣ ଭାସିଯାଏ ତରେ । ୮ ।
ଜଗଦଧୀଶ୍ୱରଠାରେ ଗୁଣ କୃପାକର ।
କୃପାଇବାଇ ଅବିର କୃପା ରତ୍ନାକର । ୯ ।

ନୃପତିଙ୍କ ପ୍ରତିନିଧି ସଭକ୍ତିତଦୀୟ ।
ବୋଲି ନିରନ୍ତର ନରଗଣ ମାନନୀୟ । ୧୦ ।
ମାତ୍ର କୃପାହୀନ ହେଲେ ସେହି ବେନିଜନ ।
ହୋଇ ନ ପାରନ୍ତି ସେ ସେ ପଦବି ଭାଜନ । ୧୧ ।

---

ଶ୍ଳୋ । ସହସା ବିଦଧୀତନକ୍ରିୟାମ ବିବେକଃ ପରମାପଦାଂ ପଦଂ ।
ବୃଣତେହି ବିମୃଷ୍ୟକାରିଣଂ ଗୁଣଲୁବ୍ଧାସ୍ୱୟମେବସମ୍ପଦଃ । ୦ ।

ଅନୁବାଦ—

କାର୍ଯ୍ୟକୁ କରିବ ନାହିଁ ସତ୍ୱର ।
ଘୋର ବିପତ୍ତି ଲଭେ ଅଜ୍ଞନର ।
ଗୁଣଲୁବ୍ଧ ସମ୍ପଦ ନିଜେ ତରେ ।
ବିବେକବାନକୁ ବରଣ କରେ ।
ଅହେ ସୁପଣ୍ଡିତ ।
ଏହା ଭାରବି କବୀଶ କଥିତ । ୦ ।

---

ଶ୍ଳୋ । ଦୁରାଶା ଦୁର୍ଦ୍ଦଶାଚୈବ ମମଭାର୍ଯେ ପତିବ୍ରତେ ।
ଦୁରାଶା ପୁରତୋଯାତି ଦୁର୍ଦ୍ଦଶାମାଂନମୁଞ୍ଚତି । ୨ ।

ଅନୁବାଦ—

ଦୁରାଶା ମୋର ପ୍ରଥମ କଳତ୍ର ।
ଦୁର୍ଦ୍ଦଶା ଅଟେ ଦ୍ୱିତୀୟ କଳତ୍ର ।
ପ୍ରଥମା ମୋ ଆଗେ ଗମନକରେ ।
ଦ୍ୱିତୀୟା ମୋତେ ନ ଛାଡ଼େ ପ୍ରେମରେ ।
ହେ ନରପ୍ରବର ।
ଏହି ବ୍ୟବସ୍ଥା ମୋର କୁଟୁମ୍ବର । ୦ ।

---

ଭବେଦ୍ଵର୍ଣ୍ଣାଗମାଦ୍ଧଂସଃ ସିଂହୋବର୍ଣ୍ଣବିପର୍ଯ୍ୟୟାତ୍ ।
ଗୂଢ଼ୋତ୍ମା ବର୍ଣ୍ଣ ବିକୃତେ ର୍ବର୍ଣ୍ଣଲୋପାତ୍ପୃଷୋଦରଃ ॥

ଅପାର ସଂସାରେ ସୁକୃତକୁ ମିଳେ
ପଞ୍ଚଲବ୍ଧାରାପ୍ରାଜାୟା ।
ଅନୁକୂଳାଶୀଳ— ଯୁକ୍ତା ସୁକୁଳଜା
କୁଶଳା ବିମଳ କାୟା । ୦ ।

---

କିସ ଭୃଙ୍ଗାକର କିଏ ମକରନ୍ଦ ପାୟୀ ?
ବୃନ୍ଦା କାନନରେ କିସ କଲେ କହ୍ନାଇ ?
ଶିଶୁ କି ସଦ୍ ଏ ବିଷ ପ୍ରତି ପଦ କିସ ?
ଉଲ୍ଲାସ କରଇ କିସ ଦେବତା ମାନସ ?
ସୁଧୀ ସମ୍ବୋଧନାବ୍ୟୟ କିସ କଣଇଲା ?
ସୁରେଶ ଚଉଦ୍ଦର୍ଶ ହେମ ସାରଙ୍ଗ ଲୀଳା ।୦।

---

## ନୀତି-ବାକ୍ୟାବଳୀ

ଶ୍ରୀରାଧା କୃଷ୍ଣାଭ୍ୟାଂ ନମଃ

ଜନକ ଉପନୟନକର ଭୟ-ତ୍ରାତା ।
ଅନ୍ନଦ ଉପାଧ୍ୟାୟ ଏ ପାଞ୍ଚଜଣ ପିତା ॥
ଜନନୀ ଜ୍ୟେଷ୍ଠଜ-ପତ୍ନୀ କଳନର ମାତା ।
ଗୁରୁପତ୍ନୀ ନୃପପତ୍ନୀ ଏ ଅଟନ୍ତି ମାତା ॥
ଅନାଥ ପ୍ରେତ ସଂସ୍କାର ଦରିଦ୍ରରେ ଦାନ ।
ଆର୍ତ୍ତରକ୍ଷଣ ଏ ତିନି ଯଜ୍ଞର ସମାନ ॥
ଦୁଷ୍ଟାଭାର୍ଯ୍ୟା କୂଟମିତ୍ର ସର୍ପସ୍ଥିତପୁର ।
ଅବଶୀଭୂତ କିଙ୍କର ପ୍ରାଣ ନାଶ କର ॥

ମିତ୍ର ଧନ ଜଳାଶୟ ପଣ୍ଡିତ ବିହୀନ ।
ଜନପଦ ହୁଏ ନାହିଁ ବାସ ଯୋଗ୍ୟ ସ୍ଥାନ ॥
ବେଦ ପଠନର ଫଳ ଅଗ୍ନିକାର୍ଯ୍ୟ ଜାଣି ।
ଧନ ସମ୍ପାଦନ ଫଳ ଭୋଗ ଏବଂ ଦାନ ॥
ଦାର ଗ୍ରହଣର ଫଳ ସନ୍ତାନୋତ୍ପାଦନ ।
ଶାସ୍ତ୍ର ପଠନର ଫଳ ସତ୍କ୍ରିୟାଚରଣ ॥
ମୂଢ଼ ଗୃହେ ଗ୍ରାମଣୀ ସ୍ୱଗ୍ରାମେ ଧନିବର ।
ସ୍ୱଦେଶେ ଧୀର ସବଂଶ ପୂଜିତ ନୃପବର ॥
ନଖି ଦନ୍ତି ଶୃଙ୍ଗି ଲଜ୍ଜାହୀନା ବିଦ୍ୟାଯୁତ ।
ଦୁର୍ଜନ ସବଂଶ ତ୍ୟାଜ୍ୟ ହେବା ସମୁଚିତ ॥
ମାତୃହୀନ ଶିଶୁପ୍ରାଣ କଳଶ ରହିତ ।
ଯୌବନ ଶାନ୍ତ ବିହୀନ ତପ ବ୍ୟର୍ଥ ସତ ॥
ମନ୍ତ୍ରନକୁ ବସ୍ତ୍ର ଜନ ତନ୍ତକ ସୁଗୁଣି ।
ସ୍ତ୍ରୀ-କ ଲଜ୍ଜା ବ୍ୟଞ୍ଜନକୁ ଲବଣ ପ୍ରଧାନ ।
ଗୁଣବତୀ ଜାୟା ଶିଶୁ ମୃଦୁଲ ବଚନ ।
ପ୍ରୀତି ପ୍ରଦତ୍ତ ଭୋଜନ ଅମୃତ ସମାନ ॥
ଦାରିଦ୍ର୍ୟ ବାର୍ଦ୍ଧକ୍ୟ ଚୌର୍ଯ୍ୟ ଭିକ୍ଷା ରୋଗ ଋଣ ।
ବାର୍ଦ୍ଧକ୍ୟେ ଯୁବତୀ ଭାର୍ଯ୍ୟା ଉଚ୍ଛିଷ୍ଟ ଭୋଜନ ॥
ଏ ଅଠୋଟି ଅଷ୍ଟ କଷ୍ଟ ବୋଲି ମର୍ତ୍ତ୍ୟେ ଖ୍ୟାତ ।
ଏମାନଙ୍କରୁ ବର୍ଜିତ ନର ପୁଣ୍ୟବନ୍ତ ॥
ମଶା ମାଛି ଝଡ଼ ବେଶ୍ୟା ଭିକ୍ଷୁକ ମୂଷିକ ।
କରଗ୍ରାହୀ ଚୋର ନରମାନଙ୍କ ପୀଡ଼କ ॥
ସତୀଭାର୍ଯ୍ୟା କୀର୍ତ୍ତିଯୁତ ସୁତ ହିତକର ।
ଜ୍ଞାତ କଷ୍ଟହର ମିତ୍ର ବିଶ୍ୱସ୍ତ କିଙ୍କର ॥
ଆବଶ୍ୟକ ବିତ୍ତ କ୍ଷୀର ସମ୍ପଦ ଗୋ-ବ୍ରାତ ।
ଜଗତର ଯେତେ ଏ ଅଠ ଅଷ୍ଟୈଶ୍ୱର୍ଯ୍ୟ ସତ ॥
ଧନୀ କୁଟୁମ୍ବରେ ପ୍ରଭୁ ସଭାରେ ଅଧ୍ୟକ୍ଷ ।
ବନ୍ଧୁ ବାନ୍ଧବ ଦୃଷ୍ଟିରେ ଅଟେ ଅତି ଦକ୍ଷ ॥

ହର ବୋଲିବା ବର୍ଣ୍ଣ ଦ୍ୱୟ   ଯେତେକ ହର ପାରେ ।
ସେତେକ ପାତକ ପ୍ରକର   ନାହିଁତ ଏ ସଂସାରେ ॥
ସେହି ବର୍ଣ୍ଣ ଦ୍ୱୟ ସଂଯୁତ   ନାମ ଆନ୍ତେ କାହିଁକି ?
ପାତକୀ ଡ଼ରଇ ସମନ   ଘୋର ଦଣ୍ଡ ଡ଼ରିକି ॥

---

ହେ ଦ୍ୱିତୀୟ ମତି   ଯୁକ୍ତ, ସେହି ଷଷ୍ଠୀ
ପଞ୍ଚମ ଙ୍କର ଶୋଭିତା ।
ଏକାଦଶ ପତ୍ନୀ—   ଧରି ନବମଙ୍କୁ,
ଲୋକେ ସପ୍ତମ ବର୍ଜିତା ॥
ଦଶମ ଧ୍ୱଜାଦି   ଗଢରେ ଅକ୍ରାନ୍ତା
ହୋଇ ନିର୍ଜଲେ ଦ୍ୱାଦଶ ।
ଚତୁର୍ଥ ପରିଏ   ସମ୍ମୂର୍ଚ୍ଛିତା ଲଭେ
ଅଷ୍ଟମ ବେଦନାଭୃଶ ॥
ଏବେ ତୁମ୍ଭେ ଆଉ   ବିଳମ୍ବ ନ କରି
ସତ୍ୱର ହୁଅ ତୃତୀୟ ।
ଜଗତେ ପରର   ଉପକାର ନିଷ୍ଟେ
ବାଞ୍ଛଜନ କରଣୀୟ ॥

---

## ଗୌରୀ ସ୍ତବ

ବେଦଘନବନ—   ମୟୂରୀ, ବେଦାନ୍ତ-
ମଞ୍ଜୁଲାରାମ ଭ୍ରମରୀ,
ପ୍ରଣବ ପଞ୍ଜର—   କୀରୀ, ଜୟ ଜୟ
ଗୌରୀ ତ୍ରିପୁର ସୁନ୍ଦରୀ ।

---

ଶ୍ଳୋକଃ—ବନ୍ଦେଽହଂ ବୃଷଭାନୁଜାଂ ବ୍ରଜବଧୂବର୍ଗାଧିକାଂ ରାଧିକାଂ ।
ଗୋବିନ୍ଦାନନ୍ଦମୁଦାକରାଂ ସୁରନୁତାଂ ଗୋଲୋକଧାମସ୍ଥିତାଂ ।
ବୃନ୍ଦାରଣ୍ୟ ବିହାରିଣୀଂ ଭଗବତୀଂ ପଦ୍ମାନନାଂ ପଦ୍ମିନୀଂ ।
ନୀଳାମ୍ଭୋଜଦଳେକ୍ଷଣାଂ ଶ୍ରିତଜନବ୍ରାତାବନୀଂ ଶ୍ରୀମତୀଂ ॥

---

## ସ୍ତୁତିମାଳିକା ( ମୁନିବରବାଣୀ )

ନମେ ଷଡ଼ାନନ ତାତ ! ବନ୍ଦ୍ୟ ! ନେଇ ମୋର ଶିର ।
ସ୍ୱପାଦେ କରେ ସ୍ଥାପନ ! ନନ୍ଦନନ୍ଦନ ଏ । ୧ ।
ବୃଷଭାନୁସୁତାବର । ସତ୍ୟେଁ ନୋହୁ ଅନ୍ତର ।
କେବେ ହେଁ ମୋହର ମନ । ନନ୍ଦନନ୍ଦନ ଏ । ୨ ।
ସୁରମିଥୁନ ପୂଜିତ । ମୋ ହୃଦକୁ ଅବିରତ ।
କରେ କ୍ରୀଡ଼ାସୁସଦନ । ନନ୍ଦନନ୍ଦନ ଏ । ୩ ।
ଯଦୁକୁଳୀର ତନୁଜ । ହୋଇ ବୋଲାଉ ଗୋପଜ ।
ଭବବନ୍ଧ ନିଦାନ । ନନ୍ଦନନ୍ଦନ ଏ । ୪ ।
ଅସୁରେଭ କଣ୍ଠୀରବ । ମୋର ହୃଦୟରୁ ଜୀବ—
ହିଂସାକୁ କରେ ନାଶନ । ନନ୍ଦନନ୍ଦନ ଏ । ୫ ।
ଗୋପକନ୍ୟା ପିନ୍ଧା ଶାଢ଼ୀ । ଚୋର ! ସତ୍ପଥ ନ ଛାଡ଼ି ।
ମୋଚିତ୍ତ କରୁ ଗମନ । ନନ୍ଦନନ୍ଦନ ଏ । ୬ ।
ନ କର ରକ୍ଷଣ ମୋର । ଅତୁଳାକୀର୍ତ୍ତିରେ ତୋର ।
ନ କରେ ମସି ଲେପନ । ନନ୍ଦନନ୍ଦନ ଏ । ୭ ।
ପବିତ୍ର ନାମକୁ ତୋର । ସଦା ଜପୁ ତୁଣ୍ଡ ମୋର ।
ଗୋପୀମୁଖ କଞ୍ଜଦ୍ରୁମଣି । ନନ୍ଦନନ୍ଦନ ଏ । ୮ ।
ଦ୍ରବ୍ୟଶାର୍ଙ୍ଗ ଧନୁର୍ଦ୍ଧର । ମୋତେ ତାପତ୍ରୟୁଁ ତାର ।
ମୋରେ ହୋଇ ସକରୁଣ । ନନ୍ଦନନ୍ଦନ ଏ । ୯ ।
ମକରକଣ୍ଠ ଛେଦିଲୁ । ବାରଣ ପ୍ରାଣ ରଖିଲୁ ।
କୃପା କୃଷ୍ଣାନ୍ତଃକରଣ । ନନ୍ଦନନ୍ଦନ ଏ । ୧୦ ।

ପାପାବ୍ଧି କୁମ୍ଭକୁମାର । ମୋ ପାପ ଲକ୍ଷ ସତ୍ୱର ।
କୃପାରେ କରେ ଦମନ । ନନ୍ଦନନ୍ଦନ ଏ ! ୧୧ ।
ମୀନାଦିରୂପଧାରକ । ବିକ୍ରମବର୍ମ ପାଳକ ।
କରେ ମୋତେ ଭକ୍ତି ଦାନ । ନନ୍ଦନନ୍ଦନ ଏ । ୧୨ ।

---

## ଶ୍ଳୋକପଞ୍ଚକ

ଶ୍ରୀଧର ପୀତପଟାନ୍ୱିତ ଶୌରେ
ନୂତନନୀରଜନେତ୍ର ମୁରାରେ !
କେଶବ ମାଧବ କୃଷ୍ଣ ସୁରାରେ
ବାମନ ପାହି ଶିଖଣ୍ଡକମୌଳେ । ୧ ।
ଜୟ ନୀରଜନାଭ ହରେ ଶୌରେ
ନରସିଂହ ଜନାର୍ଦ୍ଦନ କଂସାରେ
କମଳାନନ ସାରସମାଳେ
ଦନୁଜ ସୁମ୍ଭ ଭୂଧର ଦମ୍ଭୋଳେ । ୨ ।
କରୀଶପ୍ରପାଳଂ ସୁହାସାଢ଼କାଳଂ
ସରୋଜାତନେତ୍ରଂ ଘନଶ୍ୟାମଗାତ୍ରଂ
ରମାଜୀବିତେଶଂ ନତାଜାମରେଶଂ
ଚିଦାନନ୍ଦରୂପଂ ସଦାହଂ ପ୍ରପଦ୍ୟେ । ୩ ।
ଅଭ୍ରବର୍ଣ୍ଣାବ୍ଜନେତ୍ରାଭିରାମ
ଗୋପାଳ ଗୋବର୍ଦ୍ଧନ ଜୀମୂତ ଭୀମ
ବ୍ରଜେଶ ରାଧେଶ ଯୋଗୀଶପାଳ
ରକ୍ଷସ୍ୱ ମାଂ କୃଷ୍ଣ ଦୈତ୍ୟାଳିକାଳ । ୪ ।
କୀର୍ତ୍ତିଦାନନ୍ଦନୀ ଦେବତାବନ୍ଦନୀ
ପୂର୍ଣ୍ଣଚନ୍ଦ୍ରାନନା ପୁଣ୍ଡରୀକେକ୍ଷଣା
କୃଷ୍ଣସନ୍ତୋଷିଣୀ ଭକ୍ତସମ୍ଭାବନୀ
ଗୋପରାମାଧିକା ରାଧିକା ପାତୁ ମାଂ । ୫ ।

---

### ଅଦ୍ଧ ତାଳ

ଗୋବିନ୍ଦ ମାଧବ । ଗୋପାଳ କେଶବ ।
ଶ୍ରୀମୁଖ କଂଜଭ୍ରମ । ବନ୍ଦଇଁ ରାମ । ୧ ।
ସାରସ ଲୋଚନ । ପାତକ ମୋଚନ ।
ଅନନ୍ତକ୍ଷିତ ଯୋଗ । ବନ୍ଦଇଁ ରାମ । ୨ ।
କୌସ୍ତୁଭ ଭୂଷଣ । ତାପ ବିମୋଚନ ।
ରୂପ ବିଜିତ କାମ । ବନ୍ଦଇଁ ରାମ । ୩ ।
କିଙ୍କର କଳ୍ପକ । ସଂସୃତ ତାରକ ।
ପୂତ ମଧୁର ନାମ । ବନ୍ଦଇଁ ରାମ । ୪ ।
ପୀତପଟାବୃତ । ଦେହ ବିରାଜିତ
ନିତ୍ୟ ପରମ ଧାମ । ବନ୍ଦଇଁ ରାମ । ୫ ।
ଶଙ୍କର ରଞ୍ଜନ । ସଙ୍କଟ ଭଞ୍ଜନ ।
ନୀଳ-ଜଳଦ ଶ୍ୟାମ । ବନ୍ଦଇଁ ରାମ । ୬ ।
ଶୂରକୁଳୋଦ୍ଭବ । ଭୂମିସୁତାଧବ ।
ଭୂଷିତ ବନ ଦାମ । ବନ୍ଦଇ ରାମ । ୭ ।
ନିର୍ଜର ସେବିତ । ବିକ୍ରମ ପୂଜିତ ।
ଦାନବକୁଳ ଭୀମ । ବନ୍ଦଇଁ ରାମ । ୮ ।

---

ଅରୁଣାଧର କନକାମ୍ବର କରୁଣାର୍ଣ୍ଣବ ମୂଦରେ ।
ବରୁଣାଳୟ ତନୂଜାପ୍ରିୟ କରୁଣାକର ଭରବେ । ପ ।
ଶରଣାଗତ ଜନ ପାଳକ ଚରଣାଙ୍କିତ କଳା ହେ ।
ମରଣାନ୍ତକ ଭୟ ନାଶନ କାରଣ ତ ଚତୁର ହେ । ୧ ।
କମଳାସନ ବିନୁତାଖ୍ୟସୁ କମଳାମୃତ ସୁଗ ହେ ।
କମଳାନନ ନତ ବିକ୍ରମ କମଳାମତ ହର ହେ । ୨ ।

---

ଶ୍ରୀରାଧା କୃଷ୍ଣାଭ୍ୟାଂ ନମଃ

ପାଙ୍କହାଣ୍ଡ ସୁବ୍ଳା ବନ୍ଦିତ ଦିବ୍ୟ ପୀତପଟାବୃତ ।
  ଦୀନ ଦାସ ବିଷାଦ ମୋଚନ୍ ସୋମଭାସ୍କର ଲୋଚନ ।—
ମୌନି ପାଳମନୋବ ଶଙ୍କର ଦୁଷ୍ଟ ଦୈତ୍ୟ ଭୟଙ୍କର ।
  ନୀଳ ନୀରଦଭା କଳେବର ରାଧିକାବର ପାହିମାଂ ।—
ଗୋପୀକାଜନ ଚର୍ଚ୍ଚ ଚନ୍ଦନ ଗୋକୁଳାଧିପନନ୍ଦନ ।
  ଘୋର ପାତକରାଶି ନାଶନ ନୂତନାମ୍ବୁରୁହାନନ ।—
ଯାମଳାର୍ଜୁନ ଭୂଜ ଭଞ୍ଜନ ସାମ୍ବ ମାନସ ରଞ୍ଜନ ।
  ନୀଳ ନୀରଦଭା କଳେବର ରାଧିକାବର ପାହିମାଂ ।—
ବ୍ରହ୍ମଗର୍ବ ପୟୋଧି ଶୋଷଣ ରମ୍ୟ କୌସ୍ତୁଭ ଭୂଷଣ ।
  ବେଣୁ ଗାନ କଳା ବିଶାରଦ ଜୀବ ଶାଶ୍ୱତ ମୋଦଦ ।—
ସାମ ଗାନ କଲ୍ଲୋଲ ମାନସ ପାଦ ନନ୍ଦିତ ସାରସ ।
  ନୀଳ ନୀରଦଭା କଳେବର ରାଧିକାବର ପାହିମାଂ ।—

---

ଅତସୀ ଚମ୍ପକ  ନୀଳ କୁବଳୟ  ଜବା ମଲ୍ଲିକା କୋରକ ।
ପୁଣ୍ଡରୀକ କଞ୍ଜ  ମୁକୁଳ ସବିସ  କୋକନଦ ପୁନ୍ନାଗକ ।।
ସଂଯୁତ ବିଚିତ୍ର  ବଲ୍ଲରୀ ଧରିରେ  ମନ୍ଦେ କର ବିହରଣ ।
ଯୋଗୀ ବିୟୋଗୀଙ୍କ  ନିଶ୍ଚଳ ଚଞ୍ଚଳ  ମାନସ କରେ ହରଣ ।।

—:0:—

## ବସ୍ତ୍ରର ମାଳକା

( ଅଷାଢ଼ ଶୁକ୍ଳବାଣୀ )

ଜୟ ବପ୍ରଭବ ପ୍ରାଣଦାୟକ । ରତ୍ନଭବ ଘୋରଦଣ୍ଡ ମୋଚକ
ଶୁକ୍ଳସଲିଳଜଦଳଲୋଚନ । ଯଶୋମତୀ ପ୍ରମୋଦ ପ୍ରବର୍ଦ୍ଧନ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧ ।

ଆତ୍ମସ୍ୱରୂପ ପ୍ରଜାପତି ତାତ । ଆଙ୍ଗୀରସନୁତପାଦକଞ୍ଜାତ
ଜୟ ଶ୍ରୀମୁଖ ଶଶାଙ୍କ ଚକୋର । ଯୋଗିଜନ ଭାବତସ୍ୱା ଗୋଚର
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୨ ।

ବାୟୁବାଳକ ସେବିତ ଚରଣ । ଜୟ ବିଧାତୃଗର୍ବ ସଂହରଣ
ଜଗଦୀଶ୍ୱର ସୁଦାମାର କଷ୍ଟ । ବନ୍ଧୁ ଧାନ୍ୟ ଧନରେ କଲୁ ନଷ୍ଟ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୩ ।

ଖଳପ୍ରମାଥୀ ତୁହି ଧର୍ମପାଇଁ । ନିବନ୍ଧନ ହିଂସା ତୋହଠେ ନାହିଁ
ବୃଷଧ୍ୱଜଜପିତନାମ ବର । ଚନ୍ଦ୍ରଭାନୁସୁତାଭେଦ୍ୟ ସୋଦର
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୪ ।

ସ୍ୱଭାନୁଦୀପ୍ତସମସ୍ତ ଭୁବନ । ଘୋରଭବାବ୍ଧି ତାରଣ କାରଣ
ଦିନକରବଂଶପାର୍ଥିବବର । ନିରଞ୍ଜନ ଅବ୍ୟୟ ପରାତ୍ପର
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୫ ।

ତୁଏ ତୋ କୃପାପାତ୍ର ସର୍ବଜ୍ଞତ । ସର୍ବକର୍ତ୍ତା ସର୍ବଧାରୀ ତୁହି ତ
ବାସକରେ ତୋ ବତେଧୀ ନାକରେ । ତୁଏ ପ୍ରକୃତି ବିକୃତ ତୋହରେ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୬ ।

ଖର ଦୂଷଣ ତ୍ରିମସ୍ତସୂଦନ । ଦଶରଥ ନୃପ ଜ୍ୟେଷ୍ଠ ନନ୍ଦନ
କଜୟୁଦବ୍ୟଶତାଙ୍ଗ ଗୃଲକ । ପଣ୍ଡୁ ତନୟ ଜୟସହାୟକ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୭ ।

ରୂପେ କୋଟିମନ୍ମଥଙ୍କୁ ଜିଣିଲୁ । ସୂର୍ପଣଖାକୁ ଦୁର୍ମୁଖୀ କରିଲୁ
ଚେଲଜିତହେମ ଲମ୍ବିତ ସର । ବିଳମ୍ବୀ ନ ଲଭେ ଫଳ କାର୍ଯ୍ୟର
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୮ ।

ଷଡ୍‌ବିକାରିକ ଶାର୍ବରୀତମର । ଦ୍ରବ୍ୟ ପରିଏ ତୁହି ଅଗୋଚର
ତୋର ନାମ ଭବାବ୍ଧିପ୍ଳବ ସତ । ମଧ୍ୟ ଶୁଭକୃତ ଶୋଭକୃତ ତ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୯ ।

କ୍ରୋଧୀ ହୁଡ଼େ ବିଶ୍ୱାମିତ୍ରବଧରେ । ବିଶ୍ୱବନ୍ଧୁ ବିଶ୍ୱାବସୁ ରୂପରେ
ଶକ୍ରକୁ ତୁ ପରାଭବ କରିଲୁ । ପ୍ଲବଙ୍ଗଙ୍କରେ ସେତୁ ବନ୍ଧାଇଲୁ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧୦ ।

ଜ୍ଞାନଭକ୍ତିକର୍ମଙ୍କ କୀଳକକୁ । ଭଲେ ବୁଝାଇଲୁ ଧନଞ୍ଜୟଙ୍କୁ
ସୌମ୍ୟରୂପେ କରୁ ଜଗତ୍ପାଳନ । ରୌଦ୍ରରୂପେ ତୁ କରୁ ତନ୍ନାଶନ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧୧ ।

ଜ୍ଞାନୀଏ ବିନା ସାଧାରଣନରେ । ତୋତେ ଜାଣି ନ ପାରିଲେ ମୋହରେ
ତୁ ବିସୋଢ଼କୃତଦୋଷଯମାକର । ତେଣୁ ବୋଲାଉଛୁ ଯମାସାଗର
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧୨ ।

ତୁ ଅପରଧାବିତ ବୃଷଭଙ୍କୁ । ବାନ୍ଧି ଦେଲୁ ସୁଦନ୍ତାହସ୍ତକୁ
ନୁହେ ପ୍ରମାଦୀ ତୋହର କିଙ୍କର । ସଚ୍ଚିଦାନନ୍ଦ ଧୃତ ଧରାଧର
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧୩ ।

ରାକ୍ଷସକୁଳ ବନଦାବାନଳ । ପାତକ ତୂଳକରାଶି ପିଙ୍ଗଳ
ବିନତକାଳ ସୂକ୍ତରେ ତାର୍କିକ । ତୋର ସ୍ଥିତିକି କରୁଥାଏ ଠିକ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧୪ ।

ତୋ ଦାସ କରେ ସିଦ୍ଧାର୍ଥୀ ଜନକୁ । ବୈଦ୍ୱୀ ଲଭଇ ନାହିଁ ମଙ୍ଗଳକୁ
ଦେବ ତୋ କୃପା ବିହୀନେ ଦୁର୍ମତି । କେବେ ହୋଇ ପାରେ ନାହିଁ ସୁମତି
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧୫ ।

ହୋଇ ଆନକଦୁନ୍ଦୁଭିର ସୁତ । ବୋଲାଇଲ ତୁହି ଗଉଡ଼ ପୁତ
ରୁଧିରୋଦ୍ଗାରୀ କର ମାଗଧକୁ । ପ୍ରେଷଣ କଲ ଦେବ ଭୁବନକୁ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧୬ ।

ପୁଣ୍ଡ୍ରସ୍ୱକାଷ୍ଠ ରକ୍ଷ୍ୟାସି ହୋଇଲ । ଯେଉଁ ସମୟେ କଂସକୁ ଦମିଲ
ନୋଧ ନ କର ଭୃଗୁ ମୁନିଠାରେ । ପାଦଚିହ୍ନକୁ ବହିଲ ହୃଅରେ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧୭ ।

ଉଚ୍ଛାବିତ ହେଲେ ତୋନାମ ଥରେ । ଜନ୍ମପରମ୍ପରାକୁ କ୍ଷୟ କରେ
ତୋ ପଦରେ ବିକ୍ରମବର୍ମାର୍ପିତ । ବହୁରମାଳିକା ଗୀତ ପୂରିତ
ଇନ୍ଦିରାତୋଷଣ । ମଞ୍ଜୁଳକୌସ୍ତୁଭମଣିଭୂଷଣ । ୧୮ ।

## ଶ୍ରୀକୃଷ୍ଣ ପଞ୍ଚରତ୍ନ ସ୍ତୋତ୍ରଂ

ଶ୍ରୀଯଶୋଦାସୁତଂ । ଶଙ୍ଖନୀଳଦ୍ୟୁତିଂ । ପୂର୍ଣ୍ଣଚନ୍ଦ୍ରାନନଂ ।
ପୁଣ୍ଡରୀକେକ୍ଷଣଂ । ବଲ୍ଲବୀ ବଲ୍ଲଭଂ । ବେଣୁଗାନ ପ୍ରିୟଂ ।
ରାଧିକାରଞ୍ଜନଂ କୃଷ୍ଣଚନ୍ଦ୍ରଂ ଭଜେ । ୧ ।

କେଶବଂ ମାଧବଂ । କଂସ ବଂଶାନ୍ତକଂ । କୋଟିମାରଚ୍ଛବିଂ
ରାମପାଲାନୁଜଂ । ଗୋପିକାବ୍ରାତ୍ରଣଂ । ଗୋପଗୋପୀଶ୍ୱରଂ
ରାଧିକାରଞ୍ଜନଂ କୃଷ୍ଣଚନ୍ଦ୍ରଂ ଭଜେ । ୨ ।

ମଞ୍ଜୁପାଦାମ୍ବୁଜଂ । ମେରୁଧୀରଂହରଂ । ସ୍ୱର୍ଗନାଥାର୍ଚ୍ଚିତଂ
ସର୍ବଦେବେଶ୍ୱରଂ । ଦାନ କଳ୍ପଦ୍ରୁମଂ । ଦାନବାରିଂ ବିଭୁଂ
ରାଧିକାରଞ୍ଜନଂ କୃଷ୍ଣଚନ୍ଦ୍ରଂ ଭଜେ । ୩ ।

ଅଚ୍ୟୁତଂ ଗୋପତିଂ । ଯାଦବେନ୍ଦ୍ରଂ ବିଧୁଂ । ପୀତବାସାନ୍ୱିତଂ
ପାପତୂଲାନଳଂ । ବିଶ୍ୱସୃଡ୍‌ବନ୍ଦିତଂ । ବେଦବେଦ୍ୟଂପରଂ
ରାଧିକାରଞ୍ଜନଂ କୃଷ୍ଣଚନ୍ଦ୍ରଂ ଭଜେ । ୪ ।

ବାମଦେବାର୍ଚ୍ଚିତଂ । ବାଞ୍ଛିତାର୍ଥପ୍ରଦଂ । ମନ୍ଦହାସାନ୍ୱିତଂ
ମୁକ୍ତିଦଂ ସୁନ୍ଦରଂ । ଶ୍ରୀଧରଂ ଭୂଧରଂ । ଶ୍ରୀକରଂ ବିକ୍ରମଂ
ରାଧିକାରଞ୍ଜନଂ କୃଷ୍ଣଚନ୍ଦ୍ରଂ ଭଜେ । ୫ ।

ଇତି ଶ୍ରୀ ମଦ୍ଦିକ୍ରମଦେବବର୍ମ ବିରଚିତଂ ଶ୍ରୀକୃଷ୍ଣଚନ୍ଦ୍ରପଞ୍ଚରତ୍ନସ୍ତୋତ୍ରଂ ସମ୍ପୂର୍ଣ୍ଣଂ ॥

---

## ଶ୍ରୀରାଧିକାଧବ ପଞ୍ଚରତ୍ନ ସ୍ତୋତ୍ରଂ

ଶ୍ରୀଜନାର୍ଦ୍ଦନ । ସର୍ବକାରଣ । ନିଷ୍କଳଙ୍କ ନିରଞ୍ଜନ ।
ଦେବ କେଶବ । କୃଷ୍ଣମାଧବ । ଯାମଳାର୍ଜୁନଭଞ୍ଜନ ।
ନୀଳକନ୍ଧର । ପିଞ୍ଛିଶେଖର । ପାର୍ବତୀପତି ରଞ୍ଜନ ।
ରାଧିକାଧବ । ଦୀନବାନ୍ଧବ । ପାହିମାଂ ଭବ ସାଗରାତ୍ । ୧ ।

ପୂର୍ଣ୍ଣରୁଯପ । ମଣ୍ଡଲାନନ । ଶ୍ରୀହରେ ମୁରଲ୍ୟଧର ।
ମାରମୋହନ । ନୀରଜେକ୍ଷଣ । ଗୋପିକା ପଠତସ୍କର ।
ଦେବ ପୂଜିତ । ପାଦପଙ୍କଜ । ପଦ୍ମନାଭ କୃପାକର ।
ରାଧିକାଧବ । ଦୀନବାନ୍ଧବ । ପାହିମାଂ ଭବ ସାଗରାତ୍ । ୨ ।
ରାମ ସୋଦର । ହାଟକାମ୍ବର । ଗୁଞ୍ଜହାର ସୁଶୋଭିତ ।
ବଲ୍ଲବୀମୁଖ । କଞ୍ଜଷଟ୍ପଦ । ଦାସ କାମ୍ୟଫଳ ପ୍ରଦ ।
ଦୈତ୍ୟ ଖିଙ୍କର । ମଙ୍ଗଳାକର । କୋଟିଦର୍ପକ ସୁନ୍ଦର ।
ରାଧିକାଧବ । ଦୀନବାନ୍ଧବ । ପାହିମାଂ ଭବ ସାଗରାତ୍ । ୩ ।
ମେରୁ ଭୂଧର । ଧୀର ଶଙ୍କର । ମୌନିମାନସ ଚନ୍ଦନ ।
ନିତ୍ୟ ନିର୍ମଳ । ଭକ୍ତବତ୍ସଳ । ନିର୍ବିକଳ୍ପ ନିରାମୟ ।
ସୃଷ୍ଟି ପାଳନ । ବିଶ୍ୱନାଶନ । ହେତୁ ଭୂତ ପରାତ୍ପର ।
ରାଧିକାଧବ । ଦୀନବାନ୍ଧବ । ପାହିମାଂ ଭବ ସାଗରାତ୍ । ୪ ।
ସୁରରକ୍ଷକ । ବୈରିମାରକ । ବିଷ୍ଣୁପାବନୀ ନାୟକ ।
ମୁକ୍ତିଦାୟକ । ଦୁଃଖ ନାଶକ । ଘୋର ପାତକ ହାରକ ।
ନନ୍ଦବାଳକ । ପୂତନାନ୍ତକ । ରାସମଣ୍ଡଳ ମଧ୍ୟଗ ।
ରାଧିକାଧବ । ଦୀନବାନ୍ଧବ । ପାହିମାଂ ଭବ ସାଗରାତ୍ । ୫ ।

ଇତି ଶ୍ରୀ ମଦ୍ବିକ୍ରମଦେବବର୍ମ୍ମଣା ବିରଚିତଂ ରାଧିକାଧବ ପଞ୍ଚରତ୍ନ ସ୍ତୋତ୍ରଂ ସମ୍ପୂର୍ଣ୍ଣଂ ।

---

## ଶ୍ରୀକୃପାମ୍ଭୋଧ୍ୟଷ୍ଟକଂ

ଶ୍ରୀ ସୀତାପ୍ରାଣନାଥୋ ବା ରାଧିକା ଚିତ୍ତବଲ୍ଲଭଃ ।
କୃପାବାରିନିଧିର୍ଭୂତ୍ୱା ପାତୁମାଂ ପାପପୀଡ଼ିତଂ । ୧ ।
କୋଶଲେଶ୍ୱର ପୁତ୍ରୋ ବା ଗୋପଭୂପତି ନନ୍ଦନଃ ।
କୃପାବାରିନିଧିର୍ଭୂତ୍ୱା ପାତୁମାଂ ପାପପୀଡ଼ିତଂ । ୨ ।

---

ବୃନ୍ଦାବନସ୍ଥ ଦୀପୋ ବା ଯାଦବାନ୍ୱୟ ଭୂଷଣଃ ।
କୃପାବାରିନିଧିର୍ଭୂତ୍ୱା ପାତୁମାଂ ପାପପୀଡ଼ିତଂ । ୩ ।

କୋଦଣ୍ଡ କାଣ୍ଡ ହସ୍ତୋ ବା ବଚସ ମୁରଲୀଧରଃ ।
କୃପାବାରିନିଧିର୍ଭୂତ୍ୱା ପାତୁମାଂ ପାପପୀଡ଼ିତଂ । ୪ ।

ପୌଲସ୍ତ୍ୟ ଗୋତ୍ରହର୍ତ୍ତା ବା କଂସବଂଶ ବିନାଶକଃ ।
କୃପାବାରିନିଧିର୍ଭୂତ୍ୱା ପାତୁମାଂ ପାପପୀଡ଼ିତଂ । ୫ ।

ଯୋଗିଚିତ୍ତନିବାସୋ ବା ଗୋପୀମାନସମନ୍ଦିରଃ ।
କୃପାବାରିନିଧିର୍ଭୂତ୍ୱା ପାତୁମାଂ ପାପପୀଡ଼ିତଂ । ୬ ।

କିରୀଟ ଯୁକ୍ତମସ୍ତୋ ବା ଶିଖଣ୍ଡାନ୍ୱିତମସ୍ତକଃ ।
କୃପାବାରିନିଧିର୍ଭୂତ୍ୱା ପାତୁମାଂ ପାପପୀଡ଼ିତଂ । ୭ ।

ସୁଦୂର୍ବାଦଳବର୍ଣ୍ଣୋ ବା ଶକ୍ରନୀଳସମପ୍ରଭଃ ।
କୃପାବାରିନିଧିର୍ଭୂତ୍ୱା ପାତୁମାଂ ପାପପୀଡ଼ିତଂ । ୮ ।

କୃପାମ୍ଭୋଧ୍ୟଷ୍ଟକଂ ଦିବ୍ୟଂ ସର୍ବପାପ ପ୍ରଣାଶନଂ ।
ରଚିତଂ ବିକ୍ରମେଶେନ ଭାରଦ୍ୱାଜେନ ଭକ୍ତିତଃ । ୯ ।

---

## ଶ୍ରୀ ସହିତାଷ୍ଟକଂ

ଗିର୍ବାଣନନ୍ଦନୀଶୋ ବା କ୍ଷୀରାବ୍ଧିତନୟାବରଃ ।
ଶ୍ରୀଦେବୀ ସହିତୋ ଭୂତ୍ୱା ପାତୁମାଂ ଶରଣାଗତଂ । ୧ ।

ଧୃତଶାର୍ଦ୍ଦୂଳଚର୍ମୋ ବା କୃତହେମାମ୍ବରାବୃତଃ ।
ଶ୍ରୀଦେବୀ ସହିତୋ ଭୂତ୍ୱା ପାତୁମାଂ ଶରଣାଗତଂ । ୨ ।

ବାଜୀଭୂତ ମହୋକ୍ଷୋ ବା ବିହଙ୍ଗପତିବାହନଃ ।
ଶ୍ରୀଦେବୀ ସହିତୋ ଭୂତ୍ୱା ପାତୁମାଂ ଶରଣାଗତଂ । ୩ ।

କପର୍ଦ୍ଦଚନ୍ଦ୍ରଚୂଡ଼ୋ ବା କସ୍ୱଠବରରାଜିତଃ ।
ଶ୍ରୀଦେବୀ ସହିତୋ ଭୂତ୍ୱା ପାତୁମାଂ ଶରଣାଗତଂ । ୪ ।

ଶୁଦ୍ଧସ୍ଫଟିକବର୍ଣ୍ଣୋ ବା ନବୀନବନଦଦ୍ୟୁତିଃ ।
ଶ୍ରୀଦେବୀ ସହିତୋ ଭୂତ୍ୱା ପାତୁମାଂ ଶରଣାଗତଂ । ୫ ।

କପାଳ ଶୂଳହସ୍ତୋ ବା ଶଙ୍ଖଚକ୍ର ଗଦାଧରଃ ।
ଶ୍ରୀଦେବୀ ସହିତୋ ଭୂତ୍ୱା ପାତୁମାଂ ଶରଣାଗତଂ । ୬ ।

ସୂର୍ଯ୍ୟେନ୍ଦୁ ବହ୍ନିନେତ୍ରୋ ବା ପୁଣ୍ଡ୍ରରିକ ଦଳେକ୍ଷଣଃ ।
ଶ୍ରୀଦେବୀ ସହିତୋ ଭୂତ୍ୱା ପାତୁମାଂ ଶରଣାଗତଂ । ୭ ।

କୈଳାସ ନଗନାଥୋ ବା ବୈକୁଣ୍ଠପୁରନାୟକଃ ।
ଶ୍ରୀଦେବୀ ସହିତୋ ଭୂତ୍ୱା ପାତୁମାଂ ଶରଣାଗତଂ । ୮ ।

ଶ୍ରୀସହିତାଷ୍ଟକଂ ପୁଣ୍ୟଂ ତାପତ୍ରୟନିବାରଣଂ ।
ରଚିତଂ ଭକ୍ତି ଭାବେନ ଶ୍ରୀ ବଙ୍କମେଶବର୍ମଣା । ୦ ।

---

## ଶ୍ରୀହରିକବଚ

ଶ୍ଳୋ—ଶିରୋମେଶ୍ରୀଧରଃପାତୁ ଲଲାଟଂ ଧରଣୀଧରଃ ।
ଲୋଚନେପୁଣ୍ଡରୀକାକ୍ଷଃ ଶ୍ରବଣେ ବିଷ୍ଟରଶ୍ରବାଃ ।
ନାସିକାଂ କେଶବ ପାତୁ ନୃହରିବଦନଂମମ ।
ଜିହ୍ୱାଂ ସର୍ବେଶପର୍ଯ୍ୟଙ୍କଃ ଶଙ୍ଖଚକ୍ର ଧରୋ ଗଳଂ ।
ବାହୁପାତୁ ଚତୁର୍ବାହୁ ର୍ଭକ୍ତସୌଖ୍ୟକରଃ କରୌ ।
ଗର୍ଭଂ ଦାମୋଦରଃ ପାତୁ ବକ୍ଷଃଶ୍ରୀବତ୍ସଲାଂଛନ ।
ନାଭିଂମେପଦ୍ମନାଭସ୍ତୁ ପୃଷ୍ଠଂମେ ପାତୁ ବାମନଃ ।
ଇନ୍ଦ୍ରସ୍ଥାଣୀ ହୃଷୀକେଶୋ ଜାନୁନୀମେ ମଧୁସୂଦନଃ ।

ଅଘାସୁରପରେ ଜଂଘେମମପାଦୌ ତ୍ରିବିକ୍ରମଃ ।
ସର୍ବାଂଗଂପାତୁମେ କୃଷ୍ଣଃ ଶ୍ରୀମତୀ ପ୍ରାଣବଲ୍ଲଭଃ ।
ଅନ୍ତରୀକ୍ଷେ ସ୍ଥଳେ ନୀରେ ପାତୁମାଂ ସର୍ବଦେଶଗଃ ।
ଦିବସେ ସୂର୍ଯ୍ୟମଧ୍ୟସ୍ଥଃ ସନ୍ଧ୍ୟୌ ରାତ୍ରି ଈଶ୍ୱରାନ୍ତକଃ ।
ସନ୍ଧ୍ୟାୟୋର୍ବାସୁଦେବସ୍ତୁ ପାତୁମାଂ ସର୍ବଦାହରିଃ ।
ଯେ ଚେଦଂ କବଚଂ ଦିବ୍ୟଂ ପଠନ୍ତି ଭକ୍ତିଭାବତଃ ।
ତେ ତରନ୍ତି ସୁଖେ ନୈବ ମହୋପଦ୍ରବସାଗରଂ ।

ଇତି ଶ୍ରୀ ବିକ୍ରମଦେବବର୍ମ ବିରଚିତଂ ଶ୍ରୀହରି କବଚଂ ସମ୍ପୂର୍ଣ୍ଣଂ ।

---

## ନବଗ୍ରହ ସଂଗ୍ରହ ସ୍ତବ

ନମଃସୂର୍ଯ୍ୟାୟ ସୂର୍ଯ୍ୟାୟ ନମଃ ଶୀତକରାୟତେ ।
ମଙ୍ଗଳାୟ ନମସ୍ତୁଭ୍ୟଂ ବୁଧାୟତେ ନମୋନମଃ ।
ଧୀଷଣାୟ ନମସ୍ତୁଭ୍ୟଂ ଶୁକ୍ରାୟ କବୟେ ନମଃ ।
ନମୋଽର୍କଜାୟ ମନ୍ଦାୟ ନମୋ ରାହୁଗ୍ରହାୟତେ ।
ନମୋଽସ୍ତୁକେତବେ ତୁଭ୍ୟ ମିତିସଂଗ୍ରହସଂସ୍ତବଃ ।
ଦୈନଂଦିନଂପଠେଦ୍ୟସ୍ତୁ ଗ୍ରହପ୍ରୀତିକରୋ ଭବେତ୍ ।

ଇତି ଶ୍ରୀ ବିକ୍ରମଦେବ ବିରଚିତୋ ନବଗ୍ରହସଂଗ୍ରହସ୍ତବଃ ସମାପ୍ତଃ ।

---

## ଶ୍ରୀରାମଚରିତ ଗୀତ

ଶ୍ଳୋ । ଶୃଙ୍ଗାରଂଧରଣୀସୁତା ବିହରଣେ ବୀରଂଧନୁର୍ଭଞ୍ଜନେ ।
କାରୁଣ୍ୟଂରଜ୍ଞକାବନେଽଦ୍ଭୁତରସଂ ସିନ୍ଧୌପଥଃକଳ୍ପନେ ।
ହାସ୍ୟଂଛନ୍ନବିଖଣ୍ଡନେ ଭୟକରଂ ବୀଭତ୍ସମଭ୍ୟାଗମେ ।
ରୌଦ୍ରଂରାବଣ ସୂଦନେଦ୍ୱିଜଜନେଶାନ୍ତଂବପୁଃପାତୁନଃ । ୧ ।

ଶୁଣ—ଶ୍ରୀରାମ କଥା ସୁଧାସ୍ଥାନକୁ ।
ପାପାଳି ଗାଢ଼ାନ୍ଧକାରେନକୁ । ପ ।
ତ୍ରେତା ଯୁଗେ ରକ୍ଷମାନେ ବଳି ।
ଦେବଙ୍କ ମହତ୍ତ୍ୱ ଦେଲେ ଛଡ଼ି । ୧ ।
ଦେବଙ୍କୁ ବଳେ କଲେ କିଙ୍କର
ତାହାଙ୍କ ଫୁଲ୍ଲହେଲା ଦୁର୍ଭର । ଶୁଣ । ୨ ।
ଦେବାଳି ଏକାମ୍ରରେ ବିଷ୍ଣୁଙ୍କୁ ।
ଏମନ୍ତ ଜଣାଇଲେ ଦୁଃଖକୁ । ୩ ।
ସର୍ବେଶ ଅନନ୍ତ ଲକ୍ଷ୍ମୀବର ।
ଗୋବିନ୍ଦ ମୁକୁନ୍ଦ ଦାମୋଦର । ୪ ।
ଲଙ୍କେଶ-ଦେବାରି-ସେ ରାବଣ ।
ତା ତାପ ଅମାପ ନାରାୟଣ । ୫ ।
ଆମ୍ଭଙ୍କୁ ବଞ୍ଚାଅ ତାହା ଶୁଣି ।
ବୋଲେ ରମାକାନ୍ତ ଚିତ୍ତେ ଗୁଣି । ୬ ।
ମୁଁ ହେବି ମଞ୍ଚେ ଦଶସ୍ୟନ୍ଦନ ।
ଭୂପାଳ ଜ୍ୟେଷ୍ଠାସତୀ ନନ୍ଦନ । ୭ ।
ତୁମ୍ଭେ ହୁଅ ଋକ୍ଷ କୀଶାବଳୀ ।
ରକ୍ଷୋଗଣ ଦେବା ଆମ୍ଭେ ଦଳି । ୮ ।
ତାହା ଶୁଣି ମୋଦେ ଦେବେ ଗଲେ ।
ବନେ ପର୍ବତେ କ୍ରମେ ଜନ୍ମିଲେ । ୯ ।
ଶ୍ରୀକାନ୍ତ ରାମାକାରେ ରାଜିତ ।
ସେ ଚକ୍ର ହେଲା କୈକେୟୀ ସୁତ । ୧୦ ।
ସର୍ପାଧିପ ହୋଇଲା ଲକ୍ଷ୍ମଣ ।
ସେ ଶଙ୍ଖ ଶତ୍ରୁଘ୍ନ ନାମେ ଘେନ । ୧୧ ।
ଲକ୍ଷ୍ମୀ ମିଥିଳାରେ ସୀତାକୃତ ।
ତେବେ ଗଲା ବର୍ଷ କେତେ ବିତ । ୧୨ ।
ବିଶ୍ୱାମିତ୍ର ରାମ ସୌମିତ୍ରିଙ୍କୁ ।
ନେଲା ଜଗିବାକୁ ତା ଯାଗକୁ । ୧୩ ।

ସୁବାହୁ ତା ମାତା ଶ୍ରୀରାମର ।
ବାଣେ ମରିଲେ ମାରୀଚସୁର । ୧୪ ।
ପ୍ରଯାତ ପାରିବାରେ ହୋଇଲା ।
ସେ ଯାଗ ନିର୍ବିଘ୍ନରେ ପୂରିଲା । ୧୫ ।
ପରେ ମୁନି ବେନି ଭ୍ରାତା ତୁଲେ ।
ଗଲା ମିଥିଳାକୁ କୌତୂହଳେ । ୧୬ ।
ବାଟେ ରାମପାଦ ମାହାତ୍ମ୍ୟରେ ।
ଶିଳା ବାଳା ହେଲା ଆଶ୍ଚର୍ଯ୍ୟରେ । ୧୭ ।
ଶ୍ରୀରାମ ଗିରିଶ ବାଣାସନ ।
ମୃଣାଳ ପ୍ରାୟେ କଲା ଖଣ୍ଡନ । ୧୮ ।
ସୀତା ରାମଚନ୍ଦ୍ର-ବୀରେଶଙ୍କୁ ।
ସେ ମାଣ୍ଡବୀ କୈକେୟୀ ସୂନୁଙ୍କୁ । ୧୯ ।
ସେ ଊର୍ମିଳା ଲକ୍ଷ୍ମଣାଖ୍ୟାତ୍ରଙ୍କୁ ।
କନ୍ୟା ଶ୍ରୁତକୀର୍ତ୍ତି ଶତ୍ରୁଘ୍ନଙ୍କୁ । ୨୦ ।
ଦଶ୍ରନ୍ତେ ବିବାହ ହେଲା ପରେ ।
ଅଯୋଧ୍ୟା ସର୍ବେ ଗଲେ ମୋଦରେ । ୨୧ ।
ବାଟେ ଭୃଗୁରାମ ଗର୍ବାଚଳ ।
ଶ୍ରୀରାମ ବଜ୍ରରେ ହେଲା ଚୂର । ୨୨ ।
କୈକେୟୀର କାମନା ପୂରଣେ ।
ସୀତା ଲକ୍ଷ୍ମଣଙ୍କ ସଙ୍ଗେ ବନେ । ୨୩ ।
ଶ୍ରୀରାମ ବୁଲନ୍ତେ ତହିଁରେ ଦୁଷ୍ଟ ।
ବିରାଧ କବନ୍ଧ ହେଲେ ନଷ୍ଟ । ୨୪ ।
ସେ ସୂର୍ପଣଖାର ନାକ କାନ ।
ଦେଲା କାଟି ଊର୍ମିଳା-ରଞ୍ଜନ । ୨୫ ।
ମାରୀଚ ଲଙ୍କେଶ ପ୍ରୋତ୍ସାହରେ ।
ସୁବର୍ଣ୍ଣ କୁରଙ୍ଗ ହେଲା ଛଳେ । ୨୬ ।
ଶ୍ରୀରାମ ସୌମିତ୍ରି ସୀତା ବୋଲେ ।
ତାହା ପଛେ ଖୋଜି ଗୋଡ଼ାଇଲେ । ୨୭ ।

ଲଙ୍କେଶ ସନ୍ନ୍ୟାସୀ ରୂପେ ଧରି ।
ନେଲା ଜାନକୀଙ୍କି ଲଙ୍କାପୁରୀ । ୨୮ ।
ମାରୀଚଙ୍କୁ ମାରି ଭ୍ରାତା ତୁଲେ ।
ଶ୍ରୀରାମ ସୀତାଙ୍କୁ ଖୋଜେ ଭଲେ । ୨୯ ।
ସୀତେଶ ସୁଗ୍ରୀବ ହେଲେ ମିତ୍ର ।
ଇନ୍ଦ୍ରାତ୍ମଜ ରାମବାଣେ ହତ । ୩୦ ।
ସୁଗ୍ରୀବ କିଷ୍କିନ୍ଧା ରାଜା ହୋଇ ।
ଚେଷ୍ଟା କଲା ସୀତା ଖୋଜା ପାଇଁ । ୩୧ ।
ବାତାତ୍ମଜ ଲଙ୍ଘି ପାରାବାର ।
ଲଙ୍କାପୁରେ ଖୋଜେ ସୀତାକାର । ୩୨ ।
ସୀତାଙ୍କୁ ଅଶୋକାରଣ୍ୟେ ବନ୍ଦ ।
ସମୋଦନ୍ତ ଭାଷି ଅତ୍ୟାନନ୍ଦୀ । ୩୩ ।
କେତେ ଦାନବଙ୍କୁ ସେ ନାଶିଲା ।
ଲଙ୍କାପୁରୀ ଅଗ୍ନିରେ ପୋଡ଼ିଲା । ୩୪ ।
ତା ଠାରୁ ରାମ ବାର୍ତ୍ତା ଜାଣିଲେ ।
ସେନା ସହିତରେ ଯାତ୍ରା କଲେ । ୩୫ ।
ବିଭୀଷଣ ଆସି ରାମାଶ୍ରିତ ।
ହେଲା ସେତୁ ସାଗରେ ନିର୍ମିତ । ୩୬ ।
ସର୍ବେ ସିନ୍ଧୁ ପାରି ହେଲେ ଭଲେ ।
ଲଙ୍କାକୁ ପ୍ରତାପରେ ଧ୍ୱଂସିଲେ । ୩୭ ।
ଯୁଦ୍ଧେ ମେଘନାଦ ପ୍ରାଣାବଳୀ ।
ସୁମିତ୍ରାଜ ବାଣ ଦେଲା ଗିଳି । ୩୮ ।
ରାମାସ୍ତ୍ରେ କୁମ୍ଭକର୍ଣ୍ଣାସୁର ।
କଲା ଦେବଲୋକରେ ମନ୍ଦର । ୩୯ ।
ଲଙ୍କେଶ ପ୍ରାଣାବଳୀ ମାରୁତ ।
ରାମାସ୍ତ୍ରଗ ସର୍ପରେ ଭକ୍ଷିତ । ୪୦ ।
ଦୁଷ୍ଟାସୁରେ ସର୍ବେ ହେଲେ ହତ ।
ବିଭୀଷଣରେ ଲଙ୍କା ପାଳିତ । ୪୧ ।

ପରୀକ୍ଷିତା ଜାନକୀ ପାବକେ ।
ସର୍ବେ ବର୍ଷିଲେ ସୁଖେ ପୁଷ୍ପକେ । ୪୨ ।
ପ୍ରବେଶିଲେ ତବେ ସାକେତରେ ।
ସର୍ବେ ମଗ୍ନହେଲେ ଆନନ୍ଦରେ । ୪୩ ।
ହେଲେ ଅଭିଷିକ୍ତ ସୀତାରାମ ।
ଇଲେ ସୂତ ମାନବାଳି କ୍ଷେମ । ୪୪ ।
ଶ୍ରୀ ବିକ୍ରମ ଦେବ ଶିରୋବର ।
ଜପା ରବି ପ୍ରାୟେ ସେ ଭାସ୍ୱର । ୪୫ ।

---

ଶ୍ଳୋ । ଶୃଙ୍ଗାରଂଖଲୁରାଧିକା ବିହରଣେ ବୀରଂ ବୃଷାବନ୍ଧନେ ।
କାରୁଣ୍ୟଂସୁଜନାବନେଽଭ୍ଦୁତରସଂଗୋବର୍ଦ୍ଧନୋଦ୍ଧାରଣେ ।
ହାସ୍ୟଂରୁକ୍ମୁ ପରାଭବେ ଭୟଙ୍କରଂ ବିଭତ୍ସମ ଭ୍ୟାଗମେ ।
ରୌଦ୍ରଂରାକ୍ଷସମର୍ଦ୍ଦନେମୁନିଗଣେ ଶାନ୍ତଂ ବପୁଃ ପାତୁନଃ । ୦ ।

---

## ଶ୍ରୀ କେଶବ ଷୋଡଶୀ

ରାଗ—କୌଶିକ ।

( ରାଧା ଧର ସଖିଙ୍କର—ସ୍ତତ )

କମଳଦଳ ଲୋଚନ । କଳି କଳୁଷ ମୋଚନ ।
କମନୀୟ ମୃଦୁକାୟ । କେଶବ ଜୟ ଏ । ୧ ।
ଖଗାଧିପତି ବାହାନ । ଖେଚରଗଣ ପାଳନ ।
ଖମଣି ସୁତାନାୟକ । ଖଳ ନାଶକ ଏ । ୨ ।
ଗୋବର୍ଦ୍ଧନ ଗୋବନ୍ଧର । ଗୋବିନ୍ଦ କରୁଣାକର ।
ଗୋପାଳକୃଷ୍ଣ ଶ୍ରୀକର । ଗୋଲୋକେଶ୍ୱର ଏ । ୩ ।

ଘନକାନ୍ତି ଜିତକାଲ । ଘନତମାଲେନ୍ଦ୍ରନୀଲ ।
ଘଟନାଦ ମୁନିଧେୟ । ଘନେଶ ଜ୍ଞେୟ ଏ । ୪ ।

ନବନୀତାପହାରକ । ନରକାସୁରମାରକ ।
ନବନଳିନ ଲପନ । ନନ୍ଦନନ୍ଦନ ଏ । ୫ ।

ଚଞ୍ଚଳା ମାନସ ହର । ଚକ୍ର ବିରାଜିତ କର ।
ଚତୁର୍ମୁଖାର୍ଚ୍ଚିତା ସମ । ଚରଣୋତ୍ତମ ଏ । ୬ ।

ଛତ୍ରବାଳ ବହରଣ । ଛାୟାମୃଗଧରାନନ ।
ଛିଦ୍ଵର ଦାନବ ମସ୍ତ । ଛେଦନ ହସ୍ତ ଏ । ୭ ।

ଜଳଜ ପଦ ଯୁଗଳ । ଜବାକାନ୍ତି ପାଦତଳ ।
ଜନ ପ୍ରବର ରଞ୍ଜନ । ଜଗନ୍ମୋହନ ଏ । ୮ ।

ଝାଂଟ ବହରଣ ରଂତ । ଝଷବରକେତୁ ତାତ ।
ଝଷାନଳତାପ ହର । ଝଷ ଶରୀର ଏ । ୯ ।

ନିଷ୍କଳଙ୍କ ନିର୍ବିକଳ୍ପ । ନିରଞ୍ଜନ ସର୍ପତଳ୍ପ ।
ନିର୍ବିକାର ହୃତପାପ । ନିତ୍ୟ ସ୍ୱରୂପ ଏ । ୧୦ ।

ଟଙ୍କର ଗରୁଡ଼ ଧଜ । ଟୋକା ଲୁଗାମାନଙ୍କର ।
ଟଙ୍କଧର ବନୂବେଶ । ଟହଳ ହାସ ଏ । ୧୧ ।

ଠାଣି ତୋ ତନି ପ୍ରକାର । ଠକଙ୍କର ଅଗୋଚର ।
ଠିକଣା ନାହିଁ ତୋହର । ଠାକୁର ମୋର ଏ । ୧୨ ।

ଡ଼ିଣ୍ଡୀର ଜିଣା କୀରତ । ଡୌଲ୍ ପୂରଣ ମୂରତ ।
ଡମ୍ବରୁ ପରା ମଧ୍ୟମ । ଡରର ଯମ ଏ । ୧୩ ।

ଢଳହଳ ଗୋଣ୍ଡିଙ୍କର । ଢେମଣି ପୁଣି ତାଙ୍କର ।
ଢମାଳିରେ ତୁଷ୍ଟ ମନ । ଢମ ଗଞ୍ଜନ ଏ । ୧୪ ।

ଅପ୍ରମେୟ ଅଧୋକ୍ଷଜ । ଅଚ୍ୟୁତ ଅନନ୍ତ ଅଜ ।
ଅଖିଳ ଜଗଦାଧାର । ଅନେକାକାର ଏ । ୧୫ ।

ତପନ ଚନ୍ଦ୍ର ନୟନ । ତପସ୍ୱୀ ପ୍ରକଂବନ ।
ତରଣୀକୁଳ ଭୂଷଣ । ତାପ ଶୋଷଣ ଏ । ୧୬ ।

ଥଙ୍କେ ତୋ ପଦେ ମନ । ଥୟ ହୁଏ ଏ ନିଦାନ ।
ଥଙ୍କିତ ହେଉ ମୋ ମତ । ଥଉଲ ସ୍ଥିତ ଏ । ୧୭ ।

ଦାମୋଦର ବାସୁଦେବ । ଦମିତ କ୍ରୂର ଦାନବ ।
ଦର୍ପକ କୋଟି ସୁନ୍ଦର । ଦୟାସାଗର ଏ । ୧୮ ।

ଧୀରାଳି ଦୁର୍ଜ୍ଞେୟ ତତ୍ତ୍ୱ । ଧ୍ୟାନ ଗୋଚରେ ମହତ୍ତ୍ୱ ।
ଧୂର୍ତ୍ତ କଂସ ପ୍ରାଣହର । ଧରଣୀଧର ଏ । ୧୯ ।

ନାରାୟଣ ଜନାର୍ଦ୍ଦନ । ନାକେଶ ଗର୍ବ ଭଞ୍ଜନ ।
ନାଗାଧୀଶ୍ୱର ବରଦ । ନତ ନାରଦ ଏ । ୨୦ ।

ପରଂବ୍ରହ୍ମ ପରାତ୍ପର । ପୌଲସ୍ତ୍ୟ ବଂଶାନ୍ତକର ।
ପରମ ପବିତ୍ର ନାମ । ପୁରୁଷୋତ୍ତମ ଏ । ୨୧ ।

ଫଣି ଫଣା ରଙ୍ଗସ୍ଥଳ । ଫୁଲ୍ଲାମ୍ବୁଜ କରତଳ ।
ଫଗୁ ତୋ ଓଷ୍ଠ ନିକଟେ । ଫଳିତ ଅଟେ ଏ । ୨୨ ।

ବଳି ସର୍ବସ୍ୱ ହାରକ । ବକତୁଣ୍ଡ ବିଦାରକ ।
ବୃଦ୍ଧ ବୈନତେୟ ଧ୍ୱଜ । ବଳାବରଜ ଏ । ୨୩ ।

ଭକ୍ତିପାଶ ବନ୍ଧ ଚୋର । ଭକ୍ତ ନ ଶୁଣେ ଯମର ।
ଭଇଁଫଦଣ୍ଡ ଶବଦ । ଭଜନ ମୋଦ ଏ । ୨୪ ।

ମଞ୍ଚେ ଖଳଙ୍କୁ ଜନ୍ମାଇ । ମାରିବାକୁ ଜନ୍ମପାଇ ।
ମହାଭୂତ ନୀତ ଚୋର । ମନ୍ଦରଧର ଏ । ୫ ।

ଯଦୁକୁଳାବ୍ଧି ତପନ । ଯାମଳାର୍ଜୁନ ଭଞ୍ଜନ ।
ଯତି ହୃଦୟ ସଦନ । ଯମୀ ଭେଦନ ଏ । ୨୬ ।

ରାଧିକା ନୟନୋତ୍ପଳ । ରାକାସୁଧାଂଶୁମଣ୍ଡଳ ।
ରମ୍ୟ କୌସ୍ତୁଭ ଧାରକ । ରାସ ରସିକ ଏ । ୨୭ ।

ଲାଞ୍ଛିତ ଶ୍ରୀବତ୍ସ ଗାନ । ଲୋଲୁପ ମଧୁସୂଦନ ।
ଲକ୍ଷ୍ମୀ ରଞ୍ଜିତ ହୃଦୟ । ଲଙ୍କା ବିଳୟ ଏ । ୨୮ ।

ବିପସ୍ତନ୍ୟ ତୋତେ ଦେଲା । ବାମା ମୁକତି ଲଭିଲା ।
ବିଚିତ୍ର ଲୀଳା ତୋ ଗୀତ । ବିଶ୍ୱାଧିପତି ଏ । ୨୯ ।

ଶିବ କାର୍ମୁକ ଖଣ୍ଡନ । ଶିଖଣ୍ଡ ଶିରେ ଭୂଷଣ ।
ଶମ୍ପାସମ ଚେଲାବୃତ । ଶେଷ ସେବିତ ଏ । ୩୦ ।

ଷଡଙ୍ଗ ସହିତାଗମ । ଷଡ଼ଭଙ୍ଗ ଚତୁରାଗମ ।
ଷଡ୍ଗୁଣ ଗୁଣେ ସଂଯୁତ । ଷଡ଼ାସ୍ୟନୂତ ଏ । ୩୧ ।

ସଙ୍କର୍ଷଣ ବେଣୁଧର । ସବଙ୍କ ପରଶୁ କର ।
ସନାତନ ମୂଳକନ୍ଦ । ସଚ୍ଚିଦାନନ୍ଦ ଏ । ୩୨ ।

ହେମ କଶିପୁ ମାରଣ । ହତ ମ୍ଳେଚ୍ଛ ପାପିଗଣ ।
ହୃତ କଙ୍କର ବୃଜନ । ହସ୍ତ ବଦନ ଏ । ୨୩ ।

କ୍ଷମ ବିକ୍ରମଙ୍କ ଦୋଷ । କ୍ଷମାକର ହୃଷୀକେଶ ।
କ୍ଷୀର ସାଗର ମନ୍ଦର । କ୍ଷ୍ମାମନୋହର ଏ । ୩୪ ।

---

## ଶ୍ରୀକୃଷ୍ଣ ନକ୍ଷତ୍ରମାଳା

ରାଗ ଗୁଜ୍ଜରୀ । ଭାଗବତ ବାଣୀ ।

ଜୟ ଶ୍ରୀକୃଷ୍ଣ ନନ୍ଦନନ୍ଦନ । ନକ୍ଷତ୍ରମାଳା ମୋଦେ ଘେନ । ୧ ।
ମରାଲାଶ୍ୱିନୀ ନୂତନାମ । କାୟବର୍ଜିତ କୋଟି କାମ । ୨ ।
କୌସ୍ତୁଭ ଭରଣୀ ମୁକୁନ୍ଦ । କର୍ମ ଫଳଦ ଆନନ୍ଦକନ୍ଦ । ୩ ।
କୃତ୍ତିକା କୋଦର ମଣ୍ଡନ । ପୂଜିତ ଚରଣ ନଳିନ । ୪ ।
ରୋହିଣୀ ନକ୍ଷତ୍ର ସମ୍ଭୂତ । ପବିତ୍ର ସାମଗାନ ପ୍ରୀତ । ୫ ।
ମାନବ ମୃଗଶୀର୍ଷ ଧୃତ । ଶିଖଣ୍ଡ କଳାପ ଅଚ୍ୟୁତ । ୬ ।
କଳୁଷୋରଆର୍ଦ୍ରାପଧନ । ବିକଚ କମଳ ଲୋଚନ । ୭ ।
କୁଚେଲ ପୁନର୍ବସୁ ପ୍ରଦ । ନନ୍ଦିତ ପଲ୍ଲବ ଶ୍ରୀପଦ । ୮ !
କାନ୍ତିଦୂଷିତ ପୁଷ୍ୟ ରାଗ । ରକ୍ଷିତ ପୀଡ଼ା ଯୁତ ନାଗ । ୯ ।
ବ୍ରଜବନିତା ଶ୍ଳେଷାଦର । ପଙ୍କଜ ନାଭି ଦାମୋଦର । ୧୦ ।
ଭ୍ରମ ଘାତୁକ ଜନପର । ଧୃତ ଗୋବର୍ଦ୍ଧନ ଭୂଧର । ୧୧ ।
ସୁଭଦ୍ରା ପୂର୍ବ ଫାଲ୍ଗୁନୀପ । ମୂଳସ୍ଥ ମନୋହର ରୂପ । ୧୨ ।
ଗୋବିନ୍ଦ ଅର୍ଘ୍ୟ ମାନ୍ୟବର । ମୁରଲୀ ଯୁକ୍ତ ବିମ୍ବାଧର । ୧୩ ।
ବଜ୍ରମତ୍ସ୍ୟାଦ୍ୟ ରେଖାବ୍ରାତ । ଶୋଭିତ ସୁହସ୍ତାମ୍ବୁଜାତ । ୧୪ ।
ଚନ୍ଦ୍ରାଭ ଶତସ୍ର ଚରିତ । ସକଳ ଭୁବନ ପବିତ୍ର । ୧୫ ।
ପବନାଶନ ବରତଲ୍ପ । ନିଷ୍କଳ ନିତ୍ୟ ନିର୍ବିକଳ୍ପ । ୧୬ ।

ଲଳିତା ବିଶାଖା ପ୍ରଦତ୍ତ । ତାମ୍ବୁଲାସ୍ୱାଦାସକ୍ତ ଚିତ୍ତ । ୧୭ ।
ସୁଦାମ ମୈତ୍ର ଭବନାଶ । ରାଧାସ୍ୟ ନୀରଜ ଦିନେଶ । ୧୮ ।
ସକଳ ନାଗର କନିଷ୍ଠ । ଜ୍ୟେଷ୍ଠାଦ୍ଧି ଜ୍ୟେଷ୍ଠ ସର୍ବଶ୍ରେଷ୍ଠ ।୧୯।
ଅଚରଚର ମୂଳାଧାର । ଅଗାଧ ଜଳଧି ଗମ୍ଭୀର । ୨୦ ।
ପୂର୍ବାଷାଢ଼ାମ୍ବୁଦ ସମାନ । ନୀଳ ଶରୀର ଭାସମାନ । ୨୧ ।
ରଚିତ ବିଷ୍ଟ ଦେବଗଣ । ସମସ୍ତ କାରଣ କାରଣ । ୨୨ ।
ମୁଖାଭିଜିତ ସୁଧାକର । ଆବୃତ ଦିବ୍ୟ ପୀତାମ୍ବର । ୨୩ ।
ଶ୍ରବଣାର୍ପିତ ସୁକୁଣ୍ଡଳ । ନିର୍ଜିତ ତପନ ମଣ୍ଡଳ । ୨୪ ।
ମୋକ୍ଷ ଧନଦ ଜନାର୍ଦ୍ଦନ । ତପସ୍ୱିମାନସ ସଦନ । ୨୫ ।
ବିଚ୍ଛିଶିଳାଳୟୀ ନାୟକ । କିଙ୍କର ସଙ୍କଟ ହାରକ । ୨୬ ।
ଦେବ ଅପୂର୍ବ ଭାଦ୍ରପଦ । ବାରଣ ବିର ମଙ୍ଗଳଦ । ୨୭ ।
ବେଦ ଶଶାଙ୍କ ଲୋକୋତ୍ତର । ଭାଦ୍ରପଦାଗାର ଶ୍ରୀଧର । ୨୮ ।
ରେବତୀ ମନୋହରାନୁଜ । ଶମିତ ଦୁଷ୍ଟାସୁରବ୍ରଜ । ୨୯ ।
ଜୟ ବିକ୍ରମଦେବ ବର । ମାନସ ସାରସ ଭ୍ରମର । ୩୦ ।

—o—

## ଶ୍ରୀଧର ନବରତ୍ନମାଳା

ରାଗ କଉଶିକ । ମୁନିବର ବାଣୀ

( କୁସୁମ ଗୁଙ୍ଗୁଡ଼ା କରେ—ପ୍ରତ )

ପାଦପଦ୍ମ ରାଗଜିତ । ବାଲପଦ୍ମିନୀ ଦୟିତ ।
ମୁଖଜିତ ସୁଧାକର । ଜୟ ଶ୍ରୀଧର ହେ । ୧ ।

ଦେବକୀ ଗର୍ଭ ଶାମ୍ବୁକ । ମୁକ୍ତାଫଳ ଶ୍ରୀନାୟକ ।
ରୂପଜିତ କୋଟି ସ୍ମର । ଜୟ ଶ୍ରୀଧର ହେ । ୨ ।

ମୃତ ବିପ୍ର ବାଲ ଜୀବ— । ଦାୟକ ଦେବାଧିଦେବ ।
ଗୋପୀ ଚିତ୍ତ ବିତ୍ତ ହର । ଜୟ ଶ୍ରୀଧର ହେ । ୩ ।

ଅମରବଳ୍ଳଭ ପଲ । ଅସୁର ସନ୍ତତି କାଳ ।
ପାଳିତ ମୁନି ପ୍ରକର । ଜୟ ଶ୍ରୀଧର ହେ । ୪ ।

କାର୍ତ୍ତିକୃତ ପୁଷ୍ୟରାଗ । ରଞ୍ଜିତ ମହାର୍ଘ ନାଗ ।
ସଂବେଷ୍ଟିତ ପୀତାମ୍ବର । ଜୟ ଶ୍ରୀଧର ହେ । ୫ ।

ବଜ୍ରଧର ଗଦାଧର । ଚୂର୍ଣ୍ଣ କରଣ ଭଦୁର ।
ରାଧାସ୍ୟ କଞ୍ଜ ଭ୍ରମର । ଜୟ ଶ୍ରୀଧର ହେ । ୬ ।

ନୀଳ ଲୋହିତ ବନ୍ଦିତ । ସାମବେଦ ଗାନ ରତ ।
ମୋହନ ମୁରଲୀଧର । ଜୟ ଶ୍ରୀଧର ହେ । ୭ ।

ବିପ୍ର ଗୋମେଷ ରକ୍ଷକ । କର୍ମଫଳ ବିଧାୟକ ।
କରଧୃତ ଧରାଧର । ଜୟ ଶ୍ରୀଧର ହେ । ୮ ।

ପାପ ବିଦୁର ଜନକ । ପୁତ୍ରିକା ପ୍ରାଣ ନାୟକ ।
ବିନତ ବିନମେଶ୍ୱର । ଜୟ ଶ୍ରୀଧର ହେ । ୯ ।

---

## ଗୋପାଲ ନବଗ୍ରହ ମାଳା

ରାଗ କଲ୍ୟାଣିକ । ମୁନିବର ବାଣୀ

( ରାଧା ଧର ସଖୀକର—ବୃତ୍ତ )

ଘୋରାସୁର ବିନାଶକ । ନିର୍ଜର ବୃନ୍ଦପାଳକ ।
ଜିତାର୍କ ସୁଧାଂଶୁ ଭାଲ । ଜୟ ଗୋପାଳ ହେ । ୧ ।
ନକ୍ରେଶ ଶୀର୍ଷ ଛେଦକ । ହସ୍ତୀ ମୋକ୍ଷ ବିଧାୟକ ।
କାନ୍ତି ଜିତ ଶକ୍ରନୀଳ । ଜୟ ଗୋପାଳ ହେ । ୨ ।
କୁଜନ ଦୂର ସୁଜନ—। ଗଣ ହୃଦୟ ସଦନ ।
ଭକ୍ତ ସଂକୀର୍ତ୍ତନ ଲୋଲ । ଜୟ ଗୋପାଳ ହେ । ୩ ।
ବିବୁଧ ସମୂହ ଗୀତ । ପୂତନାମାବଳୀ ଖ୍ୟାତ ।
ସଂରକ୍ଷିତ ଦାସ ଜାଲ । ଜୟ ଗୋପାଳ ହେ । ୪ ।

ରାଧାନନ ସୁଧାକର । ଜୀବଞ୍ଜୀବ ଦାମୋଦର ।
ଧୃତ ରମ୍ୟ ପୀତଚେଲ । ଜୟ ଗୋପାଳ ହେ । ୫ ।
ପୁରାନ୍ତକ ବନ୍ଧୁ ସ୍ତୁତ୍ୟ । ନିର୍ବିକାର ନିତ୍ୟ ସତ୍ୟ ।
ମଣ୍ଡିତ ସୁଗୁଣ ଶୀଳ । ଜୟ ଗୋପାଳ ହେ । ୬ ।
ମୁନୀଶମନଚଯ୍ୟାବନ । ପରାୟଣ ଜନାର୍ଦ୍ଦନ ।
ଦୁଷ୍ଟ ଶିଶୁପାଳ କାଳ । ଜୟ ଗୋପାଳ ହେ । ୭ ।
ପାତକତମୋ ଭାସ୍କର । ଭବାବ୍ଧି ନାବିକ ବର ।
ବିଭଞ୍ଜିତାର୍ଜୁନସାଳ । ଜୟ ଗୋପାଳ ହେ । ୮ ।
ମକରକେତୁ ଜନକ । ନିତ୍ୟାନନ୍ଦ ପ୍ରଦାୟକ ।
ଶ୍ରୀବିକ୍ରମଦେବ ପାଳ । ଜୟ ଗୋପାଳ ହେ । ୯ ।

## ମତ୍ତକୋକିଳ ଶ୍ଳୋକ

ରାଗିଣୀ ହିନ୍ଦୁସ୍ତାନୀ ଭୈରବୀ ।

ଅଦ୍ଧତାଳ ।

ରାଧିକାମୁଖକଞ୍ଜଭାସ୍କର ବିମସୋଦର ପାହିମାଂ ।
ଭକ୍ତହୃତ୍କୁଳଜାତମନ୍ଦର ଭବ୍ୟସୁନ୍ଦର ପାହିମାଂ । ୧ ।
ଗୋପିକାବସନାଳିତସ୍କର ଗୋଷ୍ଠସଞ୍ଚର ପାହିମାଂ ।
ପୂତଚାନଚରନ୍ନସୁର ପୂତନାହର ପାହିମାଂ । ୨ ।
ଶାବରସ୍ୱବରମଣ୍ଡଳାନନ ଶାନ୍ତିକେତନ ପାହିମାଂ ।
ପଙ୍କସମ୍ଭବପତ୍ରଲୋଚନ ପଙ୍କମୋଚନ ପାହିମାଂ । ୩ ।
ରାସମଣ୍ଡଳମଧ୍ୟଶୋଭନ ରାଣିଭୂଷଣ ପାହିମାଂ ।
ଦାରୁଣାମରବୈରିସୂଦନ ଦାସପାଳନ ପାହିମାଂ । ୪ ।
କଞ୍ଜଜାଦ୍ୟସୁପର୍ବରକ୍ଷକ କଷ୍ଟହାରକ ପାହିମାଂ ।
ଗୋପଦର୍ପବିଲୋପକାରକ ଗୋପବାଳକ ପାହିମାଂ । ୫ ।

ଗୋପିକେକ୍ଷଣମୋଦଦାୟକ ଗୋବର୍ଦ୍ଧାରକ ପାହିମାଂ ।
ବିକ୍ରମେଶ୍ବରଦୁଃଖନାଶକ ବିଶ୍ୱପୋଷକ ପାହିମାଂ । ୬ ।

---

## ଶ୍ରୀ ଚୈତନ୍ୟଶ୍ରେଷ୍ଠତ୍ୱ

ରାଗ ବରାଡ଼ି ।

ଆଷାଢ଼ଶୁକ୍ଳବାଣୀ ।

ହେ ନବଦ୍ୱୀପଶଶାଙ୍କ ଗୌରାଙ୍ଗ । ଭକ୍ତହୃଦୟ ତାମରସ ଭୃଙ୍ଗ ।
ତୁମ୍ଭ ସମେ କେଉଁ ଦେବ ଅଛନ୍ତି । ତ୍ରିମୂର୍ତ୍ତିରେ ବିଷ୍ଣୁ ଶ୍ରେଷ୍ଠ ବୋଲନ୍ତି ।
ତାଙ୍କ ଅବତାର । ମାନଙ୍କେ ଗୁରୁ ରାମ ବେଣୁଧର । ୧ ।

ଶୁଣ ଶ୍ରୀରାମ ଯେତେ କଥା କଲେ । ବିଶ୍ୱାମିତ୍ରଙ୍କ ଯଜ୍ଞକୁ ରଖିଲେ ।
ଶିଳାକୁ ସୁଶୀଳା ସ୍ୱରୂପ କରି । ସୁଗ୍ରୀବକୁ ଦେଲେ କିଷ୍କିନ୍ଧ୍ୟାପୁରୀ ।
ପାଣିରେ ପଥର । ଭସାଇ ବିଧ୍ୱଂସିଲେ ଲଙ୍କାପୁର । ୨ ।

ବିଭୀଷଣକୁ ଲଙ୍କା ରାଜ୍ୟଦେଇ । ସୀତାଙ୍କୁ ଅଗ୍ନିପରୀକ୍ଷକରାଇ ।
ମରିଥିଲା ସୈନ୍ୟଙ୍କୁ ଜିଆଁଇଲେ । ମାରୁତିଙ୍କି ବ୍ରହ୍ମା ହେବୁ ବୋଇଲେ ।
ଦେଇ ଭୂମିଧନ । ତୋଷିଲେ ବହୁ ଦରିଦ୍ର ବ୍ରାହ୍ମଣ । ୩ ।

ଆବର ଅଯୋଧ୍ୟାଚରାଚରଙ୍କୁ । ଦେଲେ କାରଣ ବୈକୁଣ୍ଠସ୍ଥାନକୁ ।
ସିନା ବିରଜାନଦୀ କି ଡିଆଁଇ । ନ ପାରିଲେ ହେ ଚୈତନ୍ୟଗୋସାଇଁ
ପାପତୃଣାନଳ । ଅଙ୍ଘ୍ରିତପଞ୍ଜନକଳ୍ପ ସାଳ । ୪ ।

କହିବ କୃଷ୍ଣ କଲ କାର୍ଯ୍ୟମାନ । ଦେଖିଣି କଲେ କୋଳକି କାଞ୍ଚନ ।
ଯଶୋଦାନନ୍ଦଙ୍କୁ ଆନନ୍ଦୀ କରି । ଗୋପୀଙ୍କି ତୋଷିଲେ କେଳି ଆଚରି ।
କୁବୁଜାକୁ ହରି । କରୁଣାରେ କଲେ ଦିବ୍ୟସୁନ୍ଦରୀ । ୫ ।

ବନ୍ଦରୁ ମାତାପିତା ମୁକୁଳାଇ । ମଥୁରା ଉଗ୍ରସେନ କରେ ଦେଇ ।
ଗୁରୁପତ୍ନୀଙ୍କ ମଲା ପୁଅ ଦେଲେ । ସୁଦାମାଦରିଦ୍ରକୁ ଧନୀକଲେ ।
ପଣ୍ଡୁ କୁମାରଙ୍କୁ । ଦେଲେ ହସ୍ତିନାପୁର ସମ୍ପଦକୁ । ୬ ।

ମୁଚକୁନ୍ଦଙ୍କୁ ତପସ୍ୟା କରାଇ । କାମ୍ୟବରମାନ ସ୍ୱଦୁରେ ଦେଇ ।
ଉଦ୍ଧବଙ୍କୁ କହୁ ଯତନେ ଜ୍ଞାନ । କଲେ ଦୁଷ୍ଟନାଶ ଶିଷ୍ଟପାଳନ ।
ସେ କାହାକୁ ହେଲେ । ଗୋଲକେ ବାସ ଦେଇ ନ ପ ବଲେ ॥
'ନହ ଦେବ ତୁମ୍ଭର ଦାସଜନଙ୍କୁ । ହେଲେ ଦେଇଛ ଗୋଲକ ବାସକୁ
ଏଣୁ ଅଟ ତୁମ୍ଭେ ସର୍ବ ଦେବେଶ । ତୁମ୍ଭ ପାଦପଦ୍ମେ ମୋହର ଆଶ ।
ବିକ୍ରମ ବନ୍ଦିତ । ମୋରେ କୃପାକର ଖଣ୍ଡ ଦୁରିତ । ୮ ।

---

ରାଗିଣୀ ଝିଞ୍ଜୋଟି—ଅଦ୍ଧତାଳ ।

( ରସମାନସ—ସ୍ତୁତି )

ଶ୍ଳୋ । ଶରଣାଗତଜନପାଳକ ଚରଣାର୍ଦ୍ଦିତକଜହେ ।
ମରଣାଦ୍ଭିକଭୟସଞ୍ଚୟହରଣାଧିକବଳହେ ।
ଅରୁଣାଧର କନକାମ୍ବର ପୁରୁଣାପରଜନରେ ।
ବରୁଣାଳୟତନୂଜାପ୍ରିୟ କରୁଣାକର ତରରେ । ୦ ।

---

ରାଗିଣୀ ମୋହନା । ତାଳ ମିଶ୍ରରୂପ ।

ଧନ ହେଉ ସୁଖକି । ଶ୍ରୀହରି ଚନ୍ଦନ ତେଉ ସୁଖକି । ପଦ ।
ମନଭଲେ କୃଷ୍ଣ ନାହିଁ କାହିଁକି । ଧନ ।
କ୍ଷୀର ଶର୍କରାନ୍ନ ଭୋଜନ ସୁଖକି ।
ନୀରଜାକ୍ଷ ନାମ କୀର୍ତ୍ତନ ସୁଖକି । ଧନ । ୧ ।
ଦାରପୁତ୍ର ପୌତ୍ର ମେଳନ ସୁଖକି ।
ଶ୍ରୀରମେଶ ଭକ୍ତ ମିଶ୍ରଣ ସୁଖକି । ଧନ । ୨ ।
ଅସ୍ଥିର ପ୍ରପଞ୍ଚ ସେବନ ସୁଖକି ।
ସୁସ୍ଥିରଚ୍ୟୁତାଙ୍ଘ୍ରି ବନ୍ଦନ ସୁଖକି । ଧନ । ୩ ।
ଶବ୍ଦଭୋଗ ସଞ୍ଚୟାର୍ଜନ ସୁଖକି ।
ବିକ୍ରମାର୍ଚ୍ଚିତେଶ୍ୱରାର୍ଚ୍ଚନେ ସୁଖକି । ଧନ । ୪ ।

ରାଗିଣୀ ନାଥନାମାକ୍ରିୟା—ଅଦ୍ଧତାଳ

( ଓ ନବାନାଗରଙ୍କେ—ପ୍ରତି )

ନାହିଁ ନାହିଁ ତଳେ । ମୁକ୍ତ ଭାବିଲେ । ପଦ ।
ପ୍ରାତଃ ସମୟରେ । କାକର ପାଣିରେ ।
ପାଣିକୁଅଁ ପରି ବୁଡ଼ିଲେ ହେଲେ । ନାହିଁ । ୧ ।
ପାଉଁଶେ ଧୂସର । ହୋଇ ବୃକ୍ଷ ଖର ।
ବାଘରେ ଚର୍ମରେ ଗଡ଼ିଲେ ହେଲେ । ନାହିଁ । ୨ ।
ନାମରେ ଭାଲକୁ । ଛାପରେ ଦେହକୁ ।
ମଣ୍ଡି ବାଘ ପରି ଚରିଲେ ହେଲେ । ନାହିଁ । ୩ ।
କଣ୍ଠାକୁ ମୁଣ୍ଡରେ । ଦାଢିକି ଥୋଡ଼ରେ ।
ପୋଷି ଭାଲୁ ପରି ବୁଲିଲେ ହେଲେ । ନାହିଁ । ୪ ।
ଗୋଟି ଗୋଟି ଧରି । ମାଳା ଲେଖାକରି ।
ଗୋମୁଖେ ଝୋଲରେ ଜପିଲେ ହେଲେ । ନାହିଁ । ୫ ।
ହୋଇ ଜ୍ଞାନ ଯୁତ । ବିକ୍ରମ ବନ୍ଦିତ ।
ହରିରେ ଶରଣାପନ୍ନ ନୋହିଲେ । ନାହିଁ । ୬ ।

---

ରାଗିଣୀ କଲ୍ୟାଣୀ—ଅଦ୍ଧତାଳ

( ତାଣ୍ଡବନୃତ୍ୟ—ପ୍ରତି )

ହୀରକନିଭଦେହଂ । ଭଜାମ୍ୟହଂ । ପଦ ।
ମୌନିଗଣାର୍ଚ୍ଚିତଂ । ନିର୍ଜର ସେବିତଂ ।
ବାରଣମୁଖ ତାତଂ । ୧ ।
ଗୋପତି ବାହନଂ । ପାବକ ଲୋଚନଂ ।
ଭୂମିଧର ସୁତେଶଂ । ୨ ।
ଗନ୍ନଗ ଭୂଷଣଂ । ପାତକ ଶୋଷଣଂ ।
ମାରତ ସୁମ-ବାଣଂ । ୩ ।

ତାଣ୍ଡବ ଲୀଲସଂ । ଚକୋମଳ ମାନସଂ

ଛାର ଧର ନିବାସଂ । ୪ ।

ଅନ୍ଧକ ନାଶକଂ । ବିକ୍ରମ ପାଳକଂ ।

ପାଣିଧୃତ ପିନାକଂ । ଭଜାମ୍ୟହଂ । ୫ ।

---

ରାଗିଣୀ ବେହାଗ । ରୂପକ ତାଳ ।

( ଜୟତୁତେଧିକଂ—ପ୍ରଭୃତି )

ପାହି ଶଙ୍କରି । ପାଟଳାଧରି ।

ତ୍ରାହିମାଂ ସମସ୍ତ ନିର୍ଜର ଭୟଙ୍କରି । ପଦ ।

କଞ୍ଜ-ଲୋଚନି । କଷ୍ଟ-ମୋଚନି ।

ଚାରୁଶାରଦାମ୍ବୁଜାତଶାନ୍ତବାନନି । ୨ ।

ସର୍ବମଙ୍ଗଳେ । ଭକ୍ତବତ୍ସଳେ ।

ମଞ୍ଜୁଭୃଙ୍ଗଜାଲ ନୀଳ ଦୀର୍ଘ କୁନ୍ତଳେ । ୨ ।

ପାପହାରିଣି । ଶୂଳଧାରିଣି ।

କ୍ରୂରଦାନବାଳି-ଗର୍ବ-ଖର୍ବ-କାରିଣି । ୩ ।

ସିଂହବାହିନି । ଶମ୍ଭୁମୋହିନି ।

ବିକ୍ରମେଶ ଚିତ୍ତ ନୀରଜାତ ବାସିନି । ୪ ।

---

## ପଲ୍ଲବୀ

ସୁର ରକ୍ଷକ ଜିତ ରାକ୍ଷସ ନର ପକ୍ଷ ସରସିଜାକ୍ଷ ।

ବିମଳ ଶିକ୍ଷଣ ବହୁଦକ୍ଷ ଦାସ ମୋକ୍ଷଦାୟକ ॥

---

ରାଗ ନାଟକୁରଙ୍ଗୀ । ଅଦ୍ଧ ତାଳ ।

( ନ ଭାଙ୍ଗରେ ଶୁଭାଙ୍ଗି—ପ୍ରଭ )

ଭେଜ ସର୍ବ ମାନସ । ଭଜ ହୃଷୀକେଶଙ୍କୁ । ପଦ ।
ଦ୍ୱିଜରାଜ ଶ୍ରୀମୁଖୀ । ବ୍ରଜବଧୂଜାରଙ୍କୁ । ଭେଜ ।
ଶ୍ରୀନାରଦ ସୁଭାଦ୍ଧ । ମୁନିସ୍ତୁତ୍ୟ ଦେବଙ୍କୁ ।
ଭାନୁ ନରେଶାତ୍ମଜା । ମନୋଧନ ହାରଙ୍କୁ । ୨ ।
ସୁରହର ମାନସ । ସାରସ ସପ୍ରାଶ୍ୱଙ୍କୁ ।
ହରହସ୍ତାକାର୍ଚ୍ଚିତ । ନୀରଜ ପ୍ରପାଦଙ୍କୁ । ୨ ।
ନନ୍ଦ ହୃଦୟାନନ୍ଦ । ସିନ୍ଧୁ ପୂର୍ଣ୍ଣ ସୋମଙ୍କୁ ।
ବୃନ୍ଦାରକ ବନ୍ଦିତ । ବୃନ୍ଦା ବିପିନେଶଙ୍କୁ । ୩ ।
ନୀଳମଣି ଶ୍ୟାମଳ । ଲଳିତ ଶରୀରଙ୍କୁ ।
କଳାଭାପକାର୍ପାସ । ପ୍ରଳୟାଶ୍ରୟାଶଙ୍କୁ । ୪ ।
ସର୍ବ ଗୋପିକା ଗୃହ । ନବନୀତ ଚୋରଙ୍କୁ ।
ରବିକୁଳ ସମ୍ଭବ । ଶ୍ରୀ ବିକ୍ରମପାଳଙ୍କୁ । ୫ ।

---

ରାଗିଣୀ ଭୂପାଳ । ଅଠତାଳ ।

( ସାମୀଲେ ଅସ୍ତା—ପ୍ରଭ )

ଦେବ ଉଠ ହେ । ପଦ ।
ଦେବଗଣାର୍ଚ୍ଚିତ । ଚନ୍ଦନଚର୍ଚ୍ଚିତ ।
ନୀଳାଙ୍ଗଶୋଭିତ । ଉଠ ହେ । ଦେବ ।
କୋକେ ବିରାଜିଲେ । ସାରସେ ଚେଉଲେ
ସାରଙ୍ଗ ଚୁମ୍ବିଲେ ଉଠ ହେ । ୧ ।
କାକେ ତ ରାବିଲେ । ଇନ୍ଦ୍ର ଦିଶାଚଳେ
ଭାନୁ ପ୍ରକାଶିଲେ ଉଠ ହେ । ୨ ।

ଶ୍ରୀମତୀନାୟକ । ଗୋଗଣପାଳକ ।
ଗୋପବ୍ୟବହାରକ ଜୟ ହେ ।
କାମପାଳାନୁଜ । ବସୁଦେବ ବ୍ରଜ ।
ସ୍ୱଜପ୍ରିୟାତ୍ମଜ ଜୟ ହେ । ୨ ।
ପାତକଶୋଷଣ । କୌସ୍ତୁଭଭୂଷଣ ।
ପୁଣ୍ଡ୍ରସ୍ୱକେଷଣ ଜୟ ହେ ।
ଶୀତଳସ୍ୱନନ । ସଜ୍ଜନରଞ୍ଜନ ।
ଅର୍ଜ୍ଜୁନଭଞ୍ଜନ ଜୟ ହେ । ୩ ।
ଶକଟଗର୍ବାନ୍ତକ । ଦାନବମାରକ ।
ଧର୍ମସଂରକ୍ଷକ ଜୟ ହେ ।
ବିକ୍ରମ କିଙ୍କର । ଚିତ୍ତାବ୍ଜଭାସ୍କର ।
ଧୃତପୀତାମ୍ବର ଜୟ ହେ । ୪ ।

---

ସଙ୍ଗିଣୀ ବେହାଗ—ରୂପକତାଳ

( 'ତୋବାମାମୋହିଲ୍ଲକ—ପ୍ରଭ )

ଜୟ ତୁ ସୁଧାବର । ଶ୍ରୀକର । ପଦ ।
ବେଦଚୌର ଖଳ । ଶଙ୍ଖାସୁରକାଳ ।
ବରମୀନାବତାର । ଶ୍ରୀକର । ୧ ।
ସର୍ବଚରସ୍ୱଚର । ପ୍ରପଞ୍ଚକଧର ।
ଧୃତକମଠାକାର । ଶ୍ରୀକର । ୨ ।
ସୁରପତପର । ହିରଣ୍ୟାକ୍ଷହର ।
ଅଦ୍ୱାପଙ୍କଶୂକର । ଶ୍ରୀକର । ୩ ।
ହୃତଦେବବପୁ । ହିରଣ୍ୟକଶିପୁ ।
ନୃଷ୍ଣକେଶରୀଶରୀର । ଶ୍ରୀକର । ୪ ।
ସ୍ୱୀକୃତାସୁରେନ । ଦତ୍ତରସାଦାନ ।
ଦ୍ୱିଜବାମନାବତାର । ଶ୍ରୀକର । ୫ ।

କ୍ରୂର ନୃପକୁଳ— । ବନଦାବାନଳ ।
ଘୋରପରଶୁଧର । ଶ୍ରୀକର । ୬ ।

ରାବଣଦନୁଜ— । କଜମତ୍ତଗଜ ।
ଜାନକୀପ୍ରାଣେଶ୍ୱର । ଶ୍ରୀକର । ୭ ।

ରେବତୀ ଲୋଚନ— । ଚକୋର ନିଶୀନ ।
ହଳମୂଷଳଧର । ଶ୍ରୀକର । ୮ ।

ଅତ୍ୟନ୍ତ ଦୂଷିତ— । ଯଜ୍ଞପଶୁଘାତ ।
ଶ୍ରୀବୁଦ୍ଧ କଳେବର । ଶ୍ରୀକର । ୯ ।

ମ୍ଲେଚ୍ଛଗଣ ଘନ— । ପ୍ରଳୟ ପବନ ।
କଳ୍କି ଶରୀରଧର । ଶ୍ରୀକର । ୧୦ ।

ସୂରକୁଳୋଦ୍ଭବ । ଶ୍ରୀ ବିକ୍ରମଦେବ ।
ହୃତ୍କଞ୍ଜଭାସ୍କର । ଶ୍ରୀକର । ୧୧ ।

---

ରାଗ ନାଟକୁରଞ୍ଜ—ରୂପକତାଳ

( ଜାରେଜାତୁ—ପ୍ରଭୃ )

ଦେବଦେବ କୃଷ୍ଣ ବାସୁଦେବ ପାହିମାଂ ।
ଭବଜାତତାପ ବିଶ୍ୱପାଳ ତ୍ରାହିମାଂ । ପଦ ।

ଅମଳଜଳଜପତ୍ରନେତ୍ର ହାଟକାମ୍ବର ।
ଅମରସଙ୍ଘବନ୍ଦିତପାଦକମଳ ଭୂଧର । ୧ ।

ଶ୍ରୀମତୀମୁଖାମ୍ବୁଜାତଭୃଙ୍ଗ କେଶବ ।
ଦାସ ଲୋଲକ୍ଷୀରଜଳଧିବାସ ମାଧବ । ୨ ।

ବାରଣବରରକ୍ଷ ପକ୍ଷୀବାହ ବାମନ ।
ନୀଳଦନୀଦ ନୀଳବର୍ଣ୍ଣ ପାପସୂଦନ । ୩ ।

ଚକ୍ରହସ୍ତ ପଦ୍ମନାଭ ଶକ୍ରସନ୍ନୁତ ।
ବିକ୍ରମେଶ ବରଦ ମୌନିବୃନ୍ଦବନ୍ଦିତ । ୪ ।

---

ଏକାଳରେ ମାରୀଚ ରାବଣ ପ୍ରେରଣରେ ।
ଗଲା ଦଣ୍ଡକକୁ ହେମହରଣାକୃତରେ । ୪୧୮ ।
ତାକୁ ମାରିବାକୁ ରାମ ସୀତା ନିଯୋଗରେ ।
କାଣ୍ଡ କୋଦଣ୍ଡ ଧରି ଗମିଲା ତା ପଛରେ । ୪୧୯ ।
ଯେବେ ଲକ୍ଷ୍ମଣ ରାମମାର୍ଗ ଅନୁସରିଲା ।
ତେବେ ରାବଣ ସୀତାକୁ ଘେନି ଲଙ୍କା ଗଲା । ୪୨୦ ।
ହରିଣକୁ ମାରି ଫେରି ଆସି ବେନି ଭାଇ ।
ସୀତାକୁ ନ ଦେଖି ଦୀନଜନ ସମ ହୋଇ । ୪୨୧ ।
କାନ୍ଦି କାନ୍ଦି ଗିରି ବନସ୍ଥାନମାନଙ୍କରେ ।
ଖୋଜି ଖୋଜି ବୁଲୁଥିଲେ କାତର ଚିତ୍ତରେ । ୪୨୨ ।
ମାୟାସଂଯୋଗ ବିୟୋଗ ଯାର ନାହିଁ କେବେ ।
ସେ ରାମ ରାମାବିଚ୍ଛେଦେ ଦୁଃଖୀ ହେଲେ ଏବେ । ୪୨୩ ।
ରାମ ଚରିତ ବିଚିତ୍ର ତାକୁ ଜାଣେ ସୁଧୀ ।
ମୋହବଶେ ବିପରୀତ ମଣେ ମନ୍ଦବୁଦ୍ଧି । ୪୨୪ ।
ସେ ନିର୍ଜନ କାଳେ ଉମାଯୁତ ପଶୁପତି ।
ରାମକୁ ଭେଟି ମୋଦେ ସ୍ତୁତି କଲା ଏମତ । ୪୨୫ ।
ଜୟ ଜଗତ୍ପାବନ ଜୟ ସଚ୍ଚିଦାନନ୍ଦ ।
ଜୟ ଜୟ ସନାତନ ଜୟ ଆଦ୍ୟକନ୍ଦ । ୪୨୬ ।
ତା ପରେ ରାମାନୁଜ୍ଞାତ ହୋଇ ମାରପର ।
ମୋଦପୁଲକିତ ଗାତ୍ରେ ଗଲା ନିଜ ପୁର । ୪୨୭ ।

## ସତୀମୋହ

ନିଜ ପତି କାହାଁକୁ ସ୍ତୁତିକ ଦେଖି ସତୀ ।
ଏମନ୍ତେ ଭାବିଲା ହୋଇ ସନ୍ଦେହାନମତି । ୪୨୮ ।
ମୋ ସ୍ୱାମୀ ସୁରାସୁରମୁନିଜନବନ୍ଦିତ ।
ମହେଶ ତ୍ରିକାଳଜ୍ଞ ଅତି ପୂତଚରିତ । ୪୨୯ ।
ସେ ଯାଇ ବ୍ରହ୍ମ ବୋଲି ଏକରାଜସୁତକୁ ।
ପ୍ରଣାମି କଲେ ଅନେକ ବିଧରେ ସ୍ତୁତିକୁ । ୪୩୦ ।

ପୁଣି ତାର ରୂପ ଦେଖି ହୋଇଲେ ମୋହିତ ।
ପୁରେ ପ୍ରବେଶି ମଧ୍ୟ ହେଉଛନ୍ତି ମୋଦିତ । ୪୩୧ ।
ବ୍ରହ୍ମ ତ ଅଜ ନିତ୍ୟ ନିର୍ଗୁଣ ନିରାକାର ।
ପ୍ରଜ୍ଞାନ ସେ କିପରି ଧରିବ ନରାକାର । ୪୩୨ ।
ଅଥବା ବିଷ୍ଣୁ ସୁରହିତ ନିମିତ୍ତ ନର ।
ହୋଇଛନ୍ତି ପରା ବୋଇଲେ ସେହି ତ ଶ୍ରୀଧର । ୪୩୩ ।
ସର୍ବଜ୍ଞ ଶତ୍ରୁ ସୂଦନ ସଦ୍‌ଗୁଣ ନିଧାନ ।
ସକଳ କଲ୍ୟାଣଙ୍କ ଅଟଇ ଜନ୍ମସ୍ଥାନ । ୪୩୪ ।
ଏ ତ ଅଜ୍ଞାନୀ ରାଜ୍ୟକୁ ଜାୟାକୁ ହରାଇ ।
କାନ୍ଦି କାନ୍ଦି କାନନେ ବୁଲେ ବାତୁଳ ହୋଇ । ୪୩୫ ।
ମୋ ଧବ ତ ସର୍ବଜ୍ଞ ଅମୋଘ ତାଙ୍କ ଗିର ।
କିସ ଏହା କିମାକାର ନୁହେ ମୋ ଗୋଚର । ୪୩୬ ।
ଏପରି ହେଲା ଗୌରୀ ଅତି ସଂଶୟଯୁକ୍ତା ।
ନାଥଙ୍କୁ ପୁଚ୍ଛିବାକୁ ଅତି ଭୀତା ଲଜ୍ଜିତା । ୪୩୭ ।
ଅନ୍ତର୍ଯ୍ୟାମୀ ଶିବ ଶିବା-ମନୋଭାବ ଜାଣି ।
ମନେ ହସି ଅହ୍ଲାଦରେ ଭାଷିଲା ଏ ବାଣୀ । ୪୩୮ ।
ଦେବି ! ଚିତ୍ତେ ସନ୍ଦେହ ରଖିବା ଅନୁଚିତ ।
ସଂଶୟାତ୍ମାର ମଙ୍ଗଳ ହୁଏ ନାହିଁ ସତ । ୪୩୯ ।
ଯାର ଚରିତକୁ ମୋତେ ଅଗସ୍ତି କହିଲା ।
ଯା ଭକ୍ତକ ମୋଠାରୁ ସେ ମୁନୀଶ ଶୁଣିଲା । ୪୪୦ ।
ଯେ ମୁନୀଶ ସେବିତ ଯେ ଚରାଚରାଧାର ।
ସେ ରାମଚନ୍ଦ୍ର ଅଟଇ ଇଷ୍ଟଦେବ ମୋର । ୪୪୧ ।
ଯାକୁ ଋଷି ଯୋଗୀ ଧୀରଗଣେ କରେ ଧ୍ୟାନ ।
ଯାର କୀର୍ତ୍ତି ନେତି ବୋଲି ବେଦ କରେ ଗାନ । ୪୪୨ ।
ଯାର ବଶୀଭୂତା ମାୟା ଯେ ସର୍ବବ୍ୟାପକ ।
ଯେ ଭୁବନନିକାୟ ନାୟକାଧିନାୟକ । ୪୪୩ ।
ସେ ବ୍ରହ୍ମ ଭକ୍ତହିତ ପାଇଁ ରଘୁକୁଳରେ ।
ଅବତାର ଗ୍ରହଣ କଲେ ରାମରୂପରେ । ୪୪୪ ।

ଏମନ୍ତେ ବୁଝାଇ ଯେତେ କହିଲେହେଁ ଶିବ ।
ତୁଟିଲେ ନାହିଁ ଯିବା ସତୀ ସଂଶୟ ଲବ । ୪୪୫ ।
ବିଷ୍ଣୁମାୟା ମହିମାକୁ ପାଞ୍ଚି ମନେ ହସି ।
ଶମ୍ଭୁ ବୋଇଲେ ପ୍ରେମେ ଶୁଣ ଗୋ ସଦାଲସି ! ୪୪୬ ।
ଏବେ ତୁମ୍ଭେ ନିଜେ ଯାଇ ପରୀକ୍ଷାକୁ କର ।
ଯେପରି ଯିବ ସନ୍ଦେହ ତୁମ୍ଭ ମାନସର । ୪୪୭ ।
ତୁମ୍ଭେ ବାହୁଡ଼ି ଆସିବା ପର୍ଯ୍ୟନ୍ତ ଏ ବର-
ଗଛ ଛାଇରେ ବସିଥିବ ଏହା ନିକର । ୪୪୮ ।
ଏପରି ଲଭି ନିଜ ପତିର ଅନୁଜ୍ଞାକୁ ।
ଗୌରୀ ଗଲେ ରାମର ପରୀକ୍ଷା କରିବାକୁ । ୪୪୯ ।
ଭବ ମନେ ଭାବିଲେ ଭବାନୀ ମୋ ବଚନ ।
ପ୍ରତେ କଲେ ନାହିଁ ଏ ଅମଙ୍ଗଳ ସୂଚନ । ୪୫୦ ।
ବିପରୀତ ବଢ଼ିଛି ତାହାର ବୁଦ୍ଧି ବାମ ।
ଅହୋ ! ପରୀକ୍ଷିତ ହେବ ତାହାରେ ଶ୍ରୀରାମ । ୪୫୧ ।
ସେ ପାଇବ ନିଜ କର୍ମ ସଦୃଶ ଫଳକୁ ।
ଏତେ ଭାଳି ଜପିଲେ ଶିବ ରାମନାମକୁ । ୪୫୨ ।
ତେଣେ ଉମା ଉପାୟ ଚିନ୍ତି ଚିନ୍ତି ବହନ ।
ସୀତାର ସ୍ୱରୂପକୁ କଲେ କର ଗ୍ରହଣ । ୪୫୩ ।
ସେ ପଥେ ଗଲେ ବେନି ଭାଇ ଯେଉଁ ମାର୍ଗରେ ।
ଆସୁଥିଲେ ସୀତାକୁ ଖୋଜି ଖୋଜି ଦୁଃଖରେ । ୪୫୪ ।
ତାକୁ ଆଗେ ଲକ୍ଷ୍ମଣ ବିଲୋକି ଅଚମ୍ଭିତ ।
ଭାବିଲେ ରାମ ପ୍ରଭାବ ନୁହେଁ ତ ଅଦ୍ଭୁତ । ୪୫୫ ।
ପରା ମଧ୍ୟ ଭ୍ରମ-ମୋହ-ସାଗରେ ବୁଡ଼ିଲେ ।
ଅହା ! ଧୋଲ ଚିନ୍ତି ସେ ଧୀର ତୁନି ହୋଇଲେ । ୪୫୬ ।
ଯା ନାମ ସ୍ମରଣ ମାତ୍ରେ ତୁଟଇ ଅଜ୍ଞାନ ।
ସେ ସକଳାନ୍ତର୍ଯାମୀ ସର୍ବଜ୍ଞ ଭଗବାନ । ୪୫୭ ।
ସେ ରାମ ଦେଖି ସତୀର କପଟ ରୂପକୁ ।
ମନେ ହସି କହି ପିତୃନାମ ସ୍ୱନାମକୁ । ୪୫୮ ।

ପ୍ରଣମି ମୃଦୁ ବଚନେ ପୁଚ୍ଛିଲା ଏମନ୍ତ ।
ଦେବ ! ଏବେ କୋଠାରେ ଅଛନ୍ତି ତୁମ୍ଭ କାନ୍ତ ? । ୪୫୯ ।
କାକନୀ ହୋଇ ତୁମ୍ଭେ କାହିଁକ କାନ୍ତାରେ ।
ଭ୍ରମଣ କରୁଅଛ କହ ମୋତେ କୃପାରେ । ୪୬୦ ।
ଏ ବାଣୀ ରାମମୁଖୁଁ ଶୁଣି ସତୀ ମୌନରେ ।
ଭୀତ ଲଜ୍ଜା ଖେଦ ସଂଯୁକ୍ତ ନିଜ ମନରେ । ୪୬୧ ।
ଭାବିଲା ଅବଶ୍ୱାସେ ମୋ ପତି ବୋଲ୍ ପେଲି ।
ଅଜ୍ଞାନେ ଏଠାକୁ ଆସି ପରାଭୂତା ହେଲି । ୪୬୨ ।
ଏବେ ଯାଇ ପତି ମୁଖ କିପରି ଦେଖିବି ?
ସେ ମୋତେ ପଚାରିଲେ କିସ ମୁହିଁ କହିବି । ୪୬୩ ।
ଏମନ୍ତେ ଚିନ୍ତି ଚିନ୍ତି ସତୀ ବାହୁଡ଼ି ଗଲା ।
ତା ଅବସ୍ଥା ଦେଖି ରାମ ମନ ତରଳିଲା । ୪୬୪ ।
ତାକୁ ଦେଖାଇବାକୁ ନିଜ ମହିମା ଲବ ।
ସୀତା ସୌମିତ୍ରୀ ସହିତେ ଦଶରଥଭବ । ୪୬୫ ।
ଦେଖା ଦେଲେ ତାର ଆଗେ ତା ଦେଖି ଭବାନୀ ।
ଆଶ୍ଚର୍ଯ୍ୟେ ବୁଲି ଦେଖିଲା ପଛେ ଭାଇ ବେନି । ୪୬୬ ।
ପୁଣି ବୁଲି ଦେଖିଲା ସୀତା ରାମ ଲକ୍ଷ୍ମଣ ।
ତହୁଁ ଯେଣେ ଦେଖେ ତେଣେ ସେହି ତିନିଜଣ । ୪୬୭ ।
ସର୍ବତ୍ର ସୀତା ରାମ ଲକ୍ଷ୍ମଣ ସମାନରେ ।
ସେବିତ ତ୍ରିମୂର୍ତ୍ତି ତ୍ରିଶକ୍ତି ଦେବଗଣରେ । ୪୬୮ ।
ଏ ଦୃଶ୍ୟେ ଭୀତା ସତୀର ଶରୀର କମ୍ପିଲା ।
ବେନି ନୟନ ବୁଜି ସେ ବାଟରେ ବସିଲା । ୪୬୯ ।
କେତେକ୍ଷଣ ପରେ ସେହୁ ମେଲିଲା ନୟନ ।
ଆଉ ଦିଶିଲେ ନାହିଁ ସୀତା ରାମ ଲକ୍ଷ୍ମଣ । ୪୭୦ ।
ଧୀରେ ଉଠି ଧୀରେ ଚିନ୍ତି ଶ୍ରୀରାମ ମହିମା ।
ନିଜ ନାଥ ନିକଟକୁ ଗତ କଲା ଉମା । ୪୭୧ ।
ପ୍ରିୟାକୁ ଦେଖି ସାଦରେ ପୁଚ୍ଛିଲେ ଈଶାନ ।
ଅଗେ କେମନ୍ତ ପଛେ ପରୀକ୍ଷା ବିଧାନ । ୪୭୨ ।

ଭସ୍ମେ ଭବାନୀ ଏତେକ ମାତର ବୋଇଲା ।

ଗମନାଗମନେ ମୋ ବିଶ୍ୱାସ ବଦଳିଲା । ୪୭୩ ।

ସମଗ୍ର ପ୍ରତ୍ୟୟ ନ ପାଇ ପଞ୍ଚାନନ ।

ଯୋଗଧ୍ୟାନେ ସବୁ ଜାଣି ପାରିଲେ ଏସନ । ୪୭୪ ।

ସତୀ ତ ଧଇଲା ସୀତା ଦେବୀର ଆକାର ।

କେହୁ ଅଛ କରିବ ଏହା ସଙ୍ଗେ ବିହାର । ୪୭୫ ।

କଲେ ହେବ ଭକ୍ତିହାନ ଅବର ପାତକୀ ।

ଏ କାନ୍ତାକୁ ତେଜି ମୁହିଁ ବଞ୍ଚି ପାରିବ କି ? ୪୭୬ ।

ଏ ଦେହେ ଏ ମୋ ଭୋଗ୍ୟା ନୁହେଁ କରିବି କ୍ଷୟ ।

ବୋଲି ଶିବ ଧ୍ୟାଇ ଶ୍ରୀରାମ-ପାଦ-ସାରସ । ୪୭୭ ।

ସତୀକୁ କିଛି ନ କହି ଅତି ଖିନ୍ନ ହୋଇ ।

ଆପଣାର ମନ୍ଦିରରେ ପ୍ରବେଶିଲେ ଯାଇଁ । ୪୭୮ ।

ତେବେ ଶୁଭିଲା ଏରୂପର ଆକାଶ ଗିର ।

ଜୟ ରାମଭକ୍ତବର ଜୟ ଯୋଗୀଶ୍ୱର । ୪୭୯ ।

ଏମନ୍ତ ପ୍ରତିଜ୍ଞାକୁ କେତେ ହେ ସଦାଶିବ ।

ତୋହର ବିନା ଅନ୍ୟ କିଏ କରି ପାରିବ । ୪୮୦ ।

ଏ ବଚନକୁ ସତୀ ଶୁଣି ହୋଇ ଚକିତା ।

ଶିବ ସମୀପକୁ ଯାଇ ଦେଖାଇ ନମ୍ରତା । ୪୮୧ ।

ବୋଇଲା, ହେ ନାଥ ! ତୁମ୍ଭେ କି ପ୍ରତିଜ୍ଞା କଲ ।

କୃପାକରି କହ ମୋ ମନ ତ ଟଳଟଳ । ୪୮୨ ।

ଏପରି ପଚାରି ପତି ମୁଖୁଁ ପ୍ରତିବାଣୀ ।

କିଛିହେଁ ନ ପାଇ ହୋଇ କାତରୀ ଭବାନୀ । ୪୮୩ ।

ସ୍ୱଭାବ ଅଟନ୍ତି ତ ସର୍ବଜ୍ଞ ମୋ ରମଣ ।

ଜାଣିଥିବେ ସମସ୍ତେ ମୋ ଅସଦାଚରଣ । ୪୮୪ ।

ଛି ଛି ଅଜ୍ଞାନେ ମୁଁ କେଡ଼େ ମନ୍ଦ କାର୍ଯ୍ୟ କଲି ।

ପତିଠାରେ କାପଟ୍ୟକୁ କିମ୍ପା ଆଚରିଲି । ୪୮୫ ।

ସ୍ନେହତତ୍ତ୍ୱରେ ନୀର କ୍ଷୀର ହୋଇ ଏକତ୍ରିତ ।

ସମାନଭାବେ ଧରାମଣ୍ଡଳେ ପ୍ରଚଳିତ । ୪୮୬ ।

ଯେବେ କପଟରୂପୀ ଖଟା ତହିଁ ମିଶଇ ।
ତେବେ ସଂଲଗ୍ନ ସଲିଳ ଅଲଗା ହୁଅଇ । ୪୮୭ ।
ଏଣେ ଧବ ବଚନକୁ ପ୍ରତେ ମୁଁ ନ କଲି ।
ତେଣେ ରାମପାଦେ ଅପରାଧକୁ ବହିଲି । ୪୮୮ ।
ଅହା ! ମୋର ପତି କେଡ଼େ ଦୟାଳୁ ଗମ୍ଭୀର ।
କୁଣ୍ଠିତ ପ୍ରକଟିବାକୁ ଅପରାଧ ମୋର । ୪୮୯ ।
ଏମନ୍ତ ପ୍ରଭୁ-ବିଶ୍ୱାସପାତ୍ରୀ ମୁଁ ନୋହିଲି ।
ସ୍ୱକର୍ମ ଦୋଷରେ ଦୁଃଖ-ସାଗରେ ବୁଡ଼ିଲି । ୪୯୦ ।
ଏମନ୍ତେ ଭାଳୁଥିଲେ ସତୀଙ୍କ ନ ବିଲୋକି ।
ପ୍ରତିଜ୍ଞା ପୂର୍ଣ୍ଣ କରିବାକୁ ଯାଇଁ ପିନାକୀ । ୪୯୧ ।
ଏକ ବଟମୂଳେ ବସି କମଳାସନରେ ।
ଚିତ୍ତକୁ ନିବେଶିଲେ ଅଖଣ୍ଡ ସମାଧିରେ । ୪୯୨ ।
ତା ଦେଖି ଖିନ୍ନା ସତୀ ଦିନକୁ ଯୁଗ ସରି—
ମଣି ରହିଲେ କୈଳାସେ ଶ୍ରୀରାମକୁ ସୁରି । ୪୯୩ ।
ଏ ବିଷୟ ତ୍ରିଲୋକବାସୀଙ୍କ ଅଗୋଚର ।
ଏମନ୍ତେ ଗଲା ସତାଶୀ ସହସ୍ର ବତ୍ସର । ୪୯୪ ।
ତେବେ ଶିବ ସମାଧି ତେଜି ରାମ ସୁମରିଲେ ।
ତା ଶୁଣି ଶିବା ମୋଦେ ପତି କତିକି ଗଲେ । ୪୯୫ ।
ପ୍ରଣତା ହେଲେ ବାଳାକୁ ଆଦରେ ଆସନ ।
ଦେଇ ସମୀପରେ ବସାଇଲେ ପଞ୍ଚାନନ । ୪୯୬ ।
ମୃଦୁ ମଧୁର ବଚନେ କହି ହରି କଥା ।
ହର କଷ୍ଟି ହରିଲେ ସତୀ ମାନସ ବ୍ୟଥା । ୪୯୭ ।
ସେ ସମୟରେ ବିରଞ୍ଚି ହୋଇ କୃପାମତି ।
କରିଥିଲେ ଦକ୍ଷକୁ ପ୍ରଜାପତିଙ୍କ ପତି । ୪୯୮ ।
ଗର୍ବରେ ଅଥୟ ଦକ୍ଷ ହୋଇ ଅଧିକାରୀ ।
ଅଧିକାର ନ କରେ କାହାରେ ଅହଙ୍କାରୀ । ୪୯୯ ।
ତପସ୍ୱୀଙ୍କି ଡକାଇ ସେ ଆରମ୍ଭି ଯଜ୍ଞକୁ ।
ନିମନ୍ତ୍ରଣ କଲେ ସେ ନିର୍ଜର ପ୍ରକରକୁ । ୫୦୦ ।

ତ୍ରିମୂର୍ତ୍ତି ବିନା ସର୍ବ ଦେବ ସିଦ୍ଧ କିନ୍ନର ।
ଗନ୍ଧର୍ବେ ଜାୟା ସହିତେ ବିମାନ ନାକର । ୫୦୧ ।
ଅଶେଷ ମୁନିଚିତ୍ତମୋହନ ଗୀତ ଗାଇ ।
ମଖ ପାଇଁ ଚଳିଲେ ମୋଦେ କୈଳାସ ଦେଇ । ୫୦୨ ।
ତାଙ୍କର ବିଷୟୁଁ ଶଙ୍କର ମୁଖୁଁ ଜାଣି ।
ଆନନ୍ଦ ଲଭି ମନରେ ଭାବିଲେ ଭବାନୀ । ୫୦୩ ।
ପତି ଆଜ୍ଞା ଦେଲେ ଯାଇ ଯାଗ ଦେଖି ମୁହିଁ ।
ଅସନ୍ତ୍ରି କେତେକାଳ ଜନକପୁରେ ରହି । ୫୦୪ ।
ପତି ନପତି ହୋଇ ପିତା ସାମାନ୍ୟ ଜନ ।
ହେଲେ ହେଁ ଜନକପୁରସକ୍ତ କାନ୍ତାମନ । ୫୦୫ ।
ଦୁଃଖିନୀ ହୋଇ ମଧ ପତି ପରିତ୍ୟାଗରେ ।
ନିଜ ଦୋଷ ସୁମରି ସତୀ ଥାଏ ମୌନରେ । ୫୦୬ ।
ତେବେ ଜନକ ଗୃହ ଗମନାଭିଳାଷକୁ ।
ବିନୟେ ସେ ଜଣାଇଲେ ମୃଦୁରେ ଶିବଙ୍କୁ । ୫୦୭ ।
ତା ଶୁଣି ହର ବୋଇଲେ ତୁମ୍ଭ ବାଞ୍ଛା ଭଲ ।
ମାତ୍ର ତୁମ୍ଭର ପିତା ତୁମ୍ଭଙ୍କୁ ଉପେକ୍ଷିଲେ । ୫୦୮ ।
ତୁମ୍ଭଙ୍କୁ ଛାଡ଼ି ସବୁ ଝିଅଙ୍କୁ ଡକାଇଲେ ।
ମୋଠାରେ ଥିବା ଦ୍ୱେଷ ତୁମ୍ଭରେ ଦେଖାଇଲେ । ୫୦୯ ।
ପୂର୍ବେ ଦକ୍ଷ ବିରଞ୍ଚି ସଭାରେ ମୋରେ ବୈର—
କରି ଆଜ ଯାଏ କରେ ସେହି ବ୍ୟବହାର । ୫୧୦ ।
ତୁମ୍ଭେ ମୋ ଅର୍ଦ୍ଧାଙ୍ଗୀ ହୋଇ ନିମନ୍ତ୍ରଣ ବିନା ।
ସ୍ୱପ୍ରାଣ ସମୁଚିତ କି ? କର ବିବେଚନା । ୫୧୧ ।
ପିତୃ ଗୁରୁ ମିତ୍ରେଶ ଯାଗ ସ୍ଥାନ ଗମନେ ।
ଅମନ୍ତ୍ରଣ ମୁଖ୍ୟ ନୁହେ ବୋଲନ୍ତି ସୁଜନେ । ୫୧୨ ।
ମାତ୍ର ଶାତ୍ରବ ଥିଲେ ସେ ସ୍ଥାନମାନଙ୍କରେ ।
ଅମଙ୍ଗଳ ଅବଶ୍ୟ ଘଟିବ ଗମନରେ । ୫୧୩ ।
ଏମନ୍ତେ କେତେ ମତେ କହିଲେ ହେଲେ ପତି ।
ସ୍ତ୍ରୀ-ଶିଷ୍ଟସ୍ୱଭାବୁ ଫଳେ ଟଳିଲେ ନାହିଁ ସତୀ । ୫୧୪ ।

ଭବିତବ୍ୟ ଫଳକୁ ଅନୁସରି ପ୍ରାଣୀର ।
ବୁଦ୍ଧି ପ୍ରସରୁ ଥାଏ ଏହା ଅଟେ ଅଗୃର । ୫୧୫ ।
ତେବେ ଶଙ୍କର ଚଣ୍ଡେ ଚଣ୍ଡ ମୁଖ୍ୟଗଣଙ୍କୁ ।
ସଙ୍ଗରେ ଦେଇ କଲେ ସତୀର ବିଦାୟକୁ । ୫୧୬ ।
ପତିକୁ ପ୍ରଣମି ମୁଦେ ଆରୋହି ବିମାନ ।
ପ୍ରମଥଗଣ ସଙ୍ଗେ ଦେବୀ କଲେ ପ୍ରସ୍ଥାନ । ୫୧୭ ।
ଦକ୍ଷ ପ୍ରଜାପତିର ଡ଼ରେ ବାପ ଘରର ।
ସବୁ ଲୋକେ ଭବାନୀଙ୍କ କଲେ ଅନାଦର । ୫୧୮ ।
ଭଗ୍ନୀମାନେ ମଧ୍ୟ କଲେ ତିରସ୍କାର ତାଙ୍କୁ ।
ମାତା ମାତ୍ର ଦେଖାଇଲେ ସ୍ୱବତ୍ସଳତାକୁ । ୫୧୯ ।
ଜନକ ବଦନୁଁ କଥା ପଦେ ହେଲେ ସେହି ।
ନ ଶୁଣି ଯାଗଶାଳାରେ ପ୍ରବେଶିଲେ ଯାଇ । ୫୨୦ ।
ତହିଁ ସ୍ୱ-ଧବ ଭାଗର ଅଭାବ ଦେଖିଲେ ।
ନାଥ କହିଥିଲେ କଥାମାନଙ୍କୁ ସୁରିଲେ । ୫୨୧ ।
ଆପଣା ଅବଜ୍ଞାଠାରୁ ପତିର ଅବଜ୍ଞା ।
ଗୁରୁତର ଅଟେ ବୋଲି ଭାବିଲେ ସେ ସଜ୍ଞା । ୫୨୨ ।
କ୍ରୋଧାପମାନ-ବାଡ଼ବ ତା ଚିତ୍ତ ଦହିଲେ ।
ମାତୃସାନ୍ତ୍ୱନା-ତୁଷାର ନିଷ୍ଫଳ ହୋଇଲେ । ୫୨୩ ।
ସତୀ ଅତି କୋପଭରେ ସଭ୍ୟଙ୍କୁ ବୋଇଲେ ।
ହେ ସଦସ୍ୟେ ! ଦୁର୍ଦ୍ଦଶା ତୁମ୍ଭଙ୍କୁ ଅବୋରିଲେ । ୫୨୪ ।
ଶଙ୍କର ତିରସ୍କାର ଫଳ ତୁମ୍ଭେ ଭୁଞ୍ଜିବ ।
ମୋର ପିତାକୁ ପଶ୍ଚାତାପ ପ୍ରାପ୍ତି ହୋଇବ । ୫୨୫ ।
ଶତ୍ରୁ ହେଲେ ହରିହର ଜ୍ଞାନାନନ୍ଦକର ।
ଜିହ୍ୱା ଶ୍ରବଣ କର୍ତ୍ତନ କର୍ତ୍ତବ୍ୟ ଜନର । ୫୨୬ ।
ପୁରର ଅଟନ୍ତି ଜଗପିତା ହୃତଙ୍କର ।
ପରମାତ୍ମା ମହାଦେବ ଶଶାଙ୍କ ଶେଖର । ୫୨୭ ।
ତାହାଙ୍କର ଅବମାନ କରି ମୋ ଜନକ ।
ଜନସ୍ଥାନେ ଅର୍ଜିଲେ ଅମାପ ପାତକ । ୫୨୮ ।

ଏମନ୍ତ ପାପୀଠାରୁଁ ଜାତ ମୋ ଶରୀର ।
ଅନୁଚିତ ଅଟେ ଅଉ ଧାରଣେ ଏହାର । ୫୨୯ ।
ଏତେ କହୁ ସତୀ କରି ଶଙ୍କର ସ୍ମରଣ ।
ଯୋଗାନଳେ ଭସ୍ମ କଲେ ସ୍ୱକାୟାପଘନ । ୫୩୦ ।
ସତୀର ଏ ଗତିକି ଦେଖି ଯଜ୍ଞଶାଳାର ।
ସମସ୍ତେ ଏକନାଦରେ କଲେ ହାହାକାର । ୫୩୧ ।
ତା ଶୁଣି ଶିବଗଣ କରନ୍ତେ କ୍ରତୁ ନାଶ ।
ଯଜ୍ଞର ସଂରକ୍ଷଣ କଲେ ଭୃଗୁମୁନୀଶ । ୫୩୨ ।
ସେ ବାର୍ତ୍ତାକୁ ଶୁଣି ରୁଦ୍ର ଅତି ରୌଦ୍ର ହୋଇ ।
ପଠାନ୍ତେ ବୀରଭଦ୍ରଙ୍କୁ ସେ ଗୁଣ୍ଡରେ ଯାଇ । ୫୩୩ ।
ଯଜ୍ଞକୁ ବିଧ୍ୱଂସିଲେ ନାଶିଲେ ନିର୍ଜରଙ୍କୁ ।
ବାନ୍ଧିଲେ ବହୁବିଧ ପରାଭବମାନଙ୍କୁ । ୫୩୪ ।
ଦକ୍ଷ ପରାଭୂତ ହୋଇ ଛାଗତ ପାଇଲେ ।
ସେ ସବୁ ସମାଚାର ଲୋକେ ଖ୍ୟାତ ହୋଇଲେ । ୫୩୫ ।

## ପାର୍ବତୀ ଜନ୍ମ

ଜନ୍ମେ ଜନ୍ମେ ଶିବପତ୍ନୀ ହେବି ବୋଲି ମୃତ ।
ସମୟେ ହରଙ୍କ ବର ମାଗିଥିଲେ ସତୀ । ୫୩୬ ।
ତେଣୁ ହିମାଳୟର ଆଳୟରେ ସେ ଜାତା ।
ହୋଇ ପାର୍ବତୀ ନାମେ ଜଗତରେ ବିଖ୍ୟାତା । ୫୩୭ ।
ସେହୁ ଅବତରନ୍ତେ ହିମାଳୟ ବିପୁଳ ।
ସମ୍ପଦରେ ପ୍ରସିଦ୍ଧିରେ ହୋଇଲା ପ୍ରବଳ । ୫୩୮ ।
ଋଷିମାନେ ମୁଦିତମାନସ ହୋଇ ଭଲେ ।
ଯଜ୍ଞ ଯାଗ ଯୋଗାଭ୍ୟାସ ତପ ଆଚରିଲେ । ୫୩୯ ।
ଭୂରୁହ ସମୂହ ସଦା ପୁଷ୍ପଫଳଯୁତ ।
ନୂତ୍ନ ରତ୍ନ ଖନିଚୟେ ପର୍ବତ ସଜ୍ଜିତ । ୫୪୦ ।
ତଟିନୀଗଣ ନିର୍ମଳ ସଲିଳ ପୂରିତ ।
ଦ୍ୱେଷ ତେଜି ଖଗ ମୃଗ ଭୁଜଙ୍ଗ ମୁଦିତ । ୫୪୧ ।

ସେ ଧରବର ହେଲା ନାନାମଙ୍ଗଳଯୁକ୍ତ ।
ତଦଧିବାସୀ ନରେ ହେଲେ ଶ୍ରୀହର-ଭକ୍ତ । ୫୪୨ ।

ହିମାଳୟର ଅଖ୍ୟାନ ଆନନ୍ଦ ବଢ଼ିଲେ ।
ଦେବ ଗନ୍ଧର୍ବ ସାଧ୍ୟ ଚାରଣେ ଗାନ କଲେ । ୫୪୩ ।

କୌତୁକେ ଦେଖିବାକୁ ଅସିଲା ନାରଦକୁ ।
ଗିରିରାଜ କଲ ବହୁବିଧ ପୂଜନକୁ । ୫୪୪ ।

ମୁନି ପାଦୋଦକ ନିଜ ମନ୍ଦିରେ ସିଞ୍ଚିଲା ।
ପତ୍ନୀ ପୁତ୍ରିକା ଦ୍ୱାରା ତାଙ୍କୁ ପ୍ରଣମାଇଲା । ୫୪୫ ।

ତହୁଁ ମୁନି ସମ୍ମୁଖରେ ସେ କରନ୍ତେ ପ୍ରକାଶ ।
ପୁତ୍ରୀର ଗୁଣ ଦୋଷ ଶୁଣିବା ଅଭିଲାଷ । ୫୪୬ ।

ନାରଦ ମନେ ହସି ବୋଇଲା ତୋ ନନ୍ଦିନୀ ।
ସୁନ୍ଦରୀ ପତିପ୍ରିୟା ମାତୃ ପିତୃ ବନ୍ଦିନୀ । ୫୪୭ ।

ପତିବ୍ରତାଲଲାମା ସୁରନର ପୂଜିତା ।
ଅମ୍ବା ସର୍ବମଙ୍ଗଳା ଗୌର୍ଯ୍ୟାଦି ନାମଯୁତା । ୫୪୮ ।

ସୁଶୀଳା ସୁଲକ୍ଷଣା ସୁଗୁଣଗଣଖନି ।
ମାତ୍ର ଏହାର ଧବ ମାନହୀନ ଅଗ୍ରଣୀ । ୫୪୯ ।

ଅମଙ୍ଗଳ ଭୂଷଣ ଜଟିଳ ଦିଗମ୍ବର ।
କାମ ଶୂନ୍ୟ ଯୋଗୀ ଭୂତ ପ୍ରେତ ସହଚର । ୫୫୦ ।

ଏ ଅନ୍ତ୍ୟ ବଚନ ଶୁଣି ଦମ୍ପତି ଦୁଃଖିତ ।
ପାର୍ବତୀ ମାନସ ହେଲା ସନ୍ତୋଷ ପୂରିତ । ୫୫୧ ।

ଗିରିଜା ହୃଦୟେ ଶିବ ପ୍ରୀତି ଅଙ୍କୁରିଲା ।
ନୟନଯୁଗ ତନ୍ଦ୍ରିଲା ତନୁ ପୁଲକିଲା । ୫୫୨ ।

କଷ୍ଟେ ସେ ସବୁ ଲୁଚାଇ ସେ ସ୍ଥାନେ ନ ରହି ।
ଯାଇ ସଖୀଙ୍କ ମଧ୍ୟେ ବସିଲା ନୃନମୁହିଁ । ୫୫୩ ।

ସେ ଦମ୍ପତି ଗଦ୍ଗଦସ୍ୱରେ ପୋଛନ୍ତି ନେତ୍ରକ ।
ବୋଇଲେ କରିବୁଁ କିସ ? ହେ ମୁନିନାୟକ ।। ୫୫୪ ।

ଏପରି ଅମ୍ଭ କନ୍ୟାକୁ ସେପରି ବରକୁ ।
କିପରି ଦେବୁଁ ? କହ କର୍ତ୍ତବ୍ୟ ସାଧନକୁ । ୫୫୫ ।

ତା ଶୁଣି ଋଷି ଭାଷିଲେ ନୁହେ ଅନ୍ୟ ତାହା ।
ପ୍ରାଣୀ-ଭାଲପଟ୍ଟରେ ବିଧି-ଲିଖିତ ଯାହା । ୫୫୬ ।
ତେବେହେଁ କହିବି ମୁହିଁ ଗୋଟିଏ ଉପାୟ ।
ତାହା ଅବଶ୍ୟ ହୋଇବ ଦୈବର ସହାୟ । ୫୫୭ ।
ତୁମ୍ଭ ସୁତାକୁ ମୁହିଁ ବର୍ଣ୍ଣିଲି ପର ବର ।
ନିଶ୍ଚୟରେ ପ୍ରାପ୍ତ ହେବ ସଂଶୟ ନ କର । ୫୫୮ ।
ଶିବରେ ବିଦ୍ୟମାନ କଥିତ ଦୋଷ ଗୁଣ ।
ତାଙ୍କୁ କନ୍ୟା ଦାନ କଲେ ସବୁ ହେବ ଗୁଣ । ୫୫୯ ।
ସର୍ପେ ଶୟନ କରି ବସ୍ତ୍ର ହୁଏ ସଲୁତ ।
ସଦାଶ୍ରସ ନେଇ ସୂର୍ଯ୍ୟାଗ୍ନି ଅନାଦର । ୫୬୦ ।
ବହୁଲେହେଁ ଭଲ ମନ୍ଦ ପାଣି ଗଙ୍ଗା ପୂତା ।
ବଲୀଙ୍କ ଦୋଷାବଳୀ ହୁଏ ନାହିଁ ଗ୍ରାହ୍ୟତା । ୫୬୧ ।
ଗଙ୍ଗାଜଳ କଲୁଷିତ ହେଲେହେଁ ପବିତ୍ର ।
ମଦ୍ୟ ସ୍ୱଚ୍ଛ ହେଲେ ମଧ୍ୟ ଅଟେ ଅପବିତ୍ର । ୫୬୨ ।
ଦୋଷକରଣ ଅଟେ ନରର ଅନୁଚିତ ।
ମନ୍ଦବୁଦ୍ଧି ହୋଇ କଲେ ନରକେ ପତିତ । ୫୬୩ ।
ଜନ ନିଜ ମନେ ସଦା ରଖିବା ଉଚିତ ।
ଜୀବ ଈଶ୍ୱର ସମ ନୁହଇ କଦାଚିତ । ୫୬୪ ।
ଭବ ଅଟେ ସମର୍ଥ ସମସ୍ତ ଦୁଃଖହର ।
ଭକ୍ତସୁଲଭ ଶିବ ଭଗବାନ ଶଙ୍କର । ୫୬୫ ।
ଲୋକତ୍ରୟେ ତା ସମରେ ନାହିଁ ଅନ୍ୟ ବର ।
ତାଙ୍କୁ କନ୍ୟା ଦେଲେ ହେବ ମଙ୍ଗଳ ତୁମ୍ଭର । ୫୬୬ ।
ପାର୍ବତୀ ତପ କଲେ ଲଭିବ ଶଙ୍କରଙ୍କୁ ।
ଏତେ ବୋଲି ତାହାଙ୍କୁ ଦେଇ ଆଶୀର୍ବାଦକୁ । ୫୬୭ ।
ନାରଦ ହରି ସ୍ମରି ବ୍ରହ୍ମଲୋକକୁ ଗଲେ ।
ମେନକା ନିଜ କାନ୍ତକୁ ଏମନ୍ତ କହିଲେ । ୫୬୮ ।
ଦୁଇ ପକ୍ଷ ସମେ ମାନ ବିବାହ ବିବାଦ ।
ଉଚିତ ବୋଲି ଜଗତେ ଅଛି ତ ପ୍ରବାଦ । ୫୬୯ ।

କନ୍ୟା ବରଙ୍କ କୁଳ ଶୀଳ ରୂପ ବୟସ ।
ସବୁ ଦେଖି ବିଭାକୁ କରିବା ସମଞ୍ଜସ । ୫୭୦ ।
ଏଣୁ ଅମ୍ଭ ସୁଖ ପାଇଁ ଅନୁରୂପ ବର ।
ଅନ୍ୱେଷଣ କରିବା ସମୁଚିତ ତୁମ୍ଭର । ୫୭୧ ।
ତା ଶୁଣି ବୋଇଲେ ଗିରିରାଜ ଚନ୍ଦ୍ରମାରେ ।
କେବେହେଲେ ପାତକ ସମ୍ଭବ ହୋଇପାରେ । ୫୭୨ ।
ମାତ୍ର ନାରଦ ବଚନ ହୁଏ ନାହିଁ ଆନ ।
ଅତଏବ ତୁମ୍ଭେ କର ଜଗଦୀଶ ଧ୍ୟାନ । ୫୭୩ ।
ଯେ ଦେଇଛି ଜଗତେ ପାର୍ବତୀର ଜନ୍ମକୁ ।
ସେ ଅବଶ୍ୟ କରିବ ତାହାର କଲ୍ୟାଣକୁ । ୫୭୪ ।
ତନ୍ୟା ଘେନି ତୁମ୍ଭେ ଏବେ ସୁତାଠାକୁ ଯାଅ ।
କହ ତାହାରି ନିଷ୍ଠାରେ ତପକୁ କରାଅ । ୫୭୫ ।
ତପସ୍ୟାରେ ଅବଶ୍ୟ ପ୍ରସନ୍ନ ହେବ ହର ।
ଆଉ କେଉଁ ଉପାୟ ନୁହେ ସମ୍ଭବପର । ୫୭୬ ।
ନାରଦ ବଚନ ଅଟେ ଗୂଢ଼ାର୍ଥ ସହିତ ।
ଏଣୁ ତୁମ୍ଭ ଚିତ୍ତକୁ କର ଶଙ୍କାରହିତ । ୫୭୭ ।
ହର ଅଟେ ସୁଗୁଣାକର ଅତି ସୁନ୍ଦର ।
କଳଙ୍କ ରହିତ ଅଜ ଅଜର ଅମର । ୫୭୮ ।
ପତିବାଣୀ ଶୁଣି ମୋଦେ ମେନକା ସତ୍ୱରେ ।
ଯାଇଁ ପ୍ରିୟ ନନ୍ଦନୀଙ୍କୁ ବସାଇ କୋଳରେ । ୫୭୯ ।
ମୋଦଖେଦଯୁକ୍ତା ହୋଇ ଏମନ୍ତ ବୋଇଲେ ।
ନାରଦ ତୋତେ ତପ କରିବାକୁ କହିଲେ । ୫୮୦ ।
ତପ ଦୁଃଖ ଦୋଷହର ଅତି ସୁଖକର ।
ଆଧାର ଅଟଇ ଏ ସମସ୍ତ ଜଗତର । ୫୮୧ ।
ତପେ ସୃଷ୍ଟି ସ୍ଥିତି ଲୟ କରନ୍ତି ତ୍ରିମୂର୍ତ୍ତି ।
ତପେ ଶିବଙ୍କୁ ମନାଇ ପାଅ ତୁ ସୁକୀର୍ତ୍ତି । ୫୮୨ ।
ମୋ ଚିନ୍ତା ଏତିକି ମାତ୍ର ତୋ ମୃଦୁ ଶରୀର ।
ସହି ପାରିବ କେହ୍ନୁ କଠୋର ତପୋଭାର । ୫୮୩ ।

ତାହା ଶୁଣି ପାର୍ବତୀ ବୋଇଲା ମାତା ! ଶୁଣ ।
ତପରେ କରିବି ତୁମ୍ଭ ଉଦ୍ଦେଶ୍ୟ ପୂରଣ । ୫୮୪ ।
ଏତେକ କଷ୍ଟ ହେଲେ ସହି ପାରିବି ବୋଲି ।
ମାତୃ ପିତୃ ପାଦଧୂଳି ନିଜ ଦେହେ ବୋଳି । ୫୮୫ ।
ବେଦଶିରେ ମୁନିଦ୍ୱାରା ହୋଇ ସୁଶିକ୍ଷିତା ।
ତପ ପାଇଁ କାନନକୁ ଗଲା ଗିରିସୁତା । ୫୮୬ ।

## ପାର୍ବତୀ ତପସ୍ୟା ।

ସେ ସୁକୁମାରୀ ସକଳ ସୁଖ ତ୍ୟାଗ କରି ।
ପ୍ରାଣପତି ପାଦପଦ୍ମ ହୃଦୟରେ ଧରି । ୫୮୭ ।
ଏକାଗ୍ରମାନସା ହୋଇ ତପକୁ ଆଚରେ ।
ସହସ୍ରେ ବର୍ଷର ଫଳମୂଳ ଭୋଜନରେ । ୫୮୮ ।
ଶାକାହାରରେ ଶତାବ୍ଦ ଶୁଷ୍କ ବିଲ୍ୱପର୍ଣ୍ଣ ।
ମାତ୍ର ଖାଇ ତ୍ରିସହସ୍ର ବର୍ଷ କଲା ପୂର୍ଣ୍ଣ । ୫୮୯ ।
ତାପରେ ପର୍ଣ୍ଣକୁ ତେଜି ଅପର୍ଣ୍ଣା ନାମରେ ।
ଖ୍ୟାତା ହୋଇ କେତେକାଳ ସଲିଳ ପାନରେ । ୫୯୦ ।
ତତ୍ପରେ କେତେକାଳ ବାତାହାରେ କାଟିଲା ।
ପରିଶେଷରେ ନିରାହାର ବ୍ରତକୁ କଲା । ୫୯୧ ।
ଅତଶୀର୍ଣ୍ଣା ଅପର୍ଣ୍ଣାକୁ ଅନାଇଁ ଗଗନେ ।
ଧାତା ଗମ୍ଭୀର ବାଣୀ ପ୍ରକାଶିଲା ଏସନେ । ୫୯୨ ।
ଗିରିରାଜକୁମାରି ! ତପ ଆଉ ନ କର ।
ତୋ ତପ ପରି ତପ ଜଗତେ ଅଗୋଚର । ୫୯୩ ।
ତୋ ମନୋରଥ ସଫଳ ହେଲା ନିଶ୍ଚୟରେ ।
ବରିବୁ ଅବିଳମ୍ବେ ଶିବ ସଦ୍ଧୃତରେ । ୫୯୪ ।
ମୁହିଁ ବିଧି, ପ୍ରତେ କର ମୋହର ଗିରକୁ ।
ପିତା ଡାକିବା ମାତ୍ରେ ଯାଅ ନିଜ ପୁରକୁ । ୫୯୫ ।
ଯେବେ ତୋ ସ୍ୱପ୍ନେ ଏକ ତପସ୍ୱୀ ଦେଖାଦେବ ।
ତେବେ ତୋହର ମନୋରଥ ସମ୍ପୂର୍ଣ୍ଣ ହେବ । ୫୯୬ ।

ଏ ବାଣୀ ଶୁଣି ପାର୍ବତୀ ଚିତ୍ତ ପ୍ରମୋଦିତ ।
ଏବେ ମନ ଦେଇ ଶୁଣ ମହେଶ ଚରିତ । ୫୯୭ ।
ଯେବେ ସତୀ କୋପରେ ତନୁକୁ କଲ ତ୍ୟାଗ ।
ତେବେ ଶଙ୍କର ଚିତ୍ତକୁ ଘୋଟିଲା ବିରାଗ । ୫୯୮ ।
ସଦାଶିବ ସଦା ଜପେ ରଘୁପତି ନାମ ।
ଶୁଣଇ ମାତ୍ର ସୀତା-ନାୟକ-ଗୁଣଗ୍ରାମ । ୫୯୯ ।
ଧରଣୀରେ ଭ୍ରମି ଗତ ମଦ ମୋହ କାମ ।
ବାମଦେବ ସଦାନନ୍ଦ ଗୁଣଗୁଣଧାମ । ୬୦୦ ।
କେଉଁଠାରେ ଜ୍ଞାନଦାନ କରଇ ଯୋଗୀଙ୍କୁ ।
କେଉଁଠାରେ ରାମ କଥା କହଇ ମୌନୀଙ୍କୁ । ୬୦୧ ।
ଯଦ ଯଦ୍ୟପି ସେ ସଦାନନ୍ଦ କାମନାରହିତ ।
ଭକ୍ତ ବିଯୋଗ ଦୁଃଖରେ ହୁଅଇ ଦୁଃଖିତ । ୬୦୨ ।
ରାମ ଭକ୍ତି ଶିବଚିତ୍ତେ କ୍ରମରେ ବଢିଲା ।
ଏ ରୂପରେ ବହୁତ ସମୟ ବିତଗଲା । ୬୦୩ ।
ଜାଣି ମହାଦେବ ଗାଢ଼ ଭକ୍ତି ସାଧୁ ବ୍ରତ ।
ଶ୍ରୀରାମ ପ୍ରତ୍ୟକ୍ଷ ହୋଇ ବୋଇଲା ଏମନ୍ତ । ୬୦୪ ।
ତୁହି ଧନ୍ୟ ଆଚରିଲୁ ଅଲୌକିକ ବ୍ରତ ।
ବ୍ରହ୍ମଚର୍ଯ୍ୟଦୀକ୍ଷାରୁ ହୁଅ ଏବେ ବିରତ । ୬୦୫ ।
ସତୀ ହୈମବତୀ ହୋଇ ଜନ୍ମିଛି, ତାହାର ।
ପାଣିଗ୍ରହଣ କର ହର ସନ୍ତାପ ଭାର । ୬୦୬ ।
ତା ଶୁଣି ହର କହିଲା ଆଦେଶ ତୋହର ।
ପରମ ଧର୍ମ ଅବଶ୍ୟ କର୍ତ୍ତବ୍ୟ ମୋହର । ୬୦୭ ।
ମାତ ପିତ ଗୁରୁ ପ୍ରଭୁ ପ୍ରଦତ୍ତାଦେଶକୁ ।
ନିଷ୍ଟେ ପାଳିବାକୁ ହେବ ନ କରି ପାଛିକୁ । ୬୦୮ ।
ତୁହି ଜଗତର ମାତା ପିତା ଗୁରୁଦେବ ।
ତୋର ଅଜ୍ଞାକୁ କପରି ଲଙ୍ଘିବାକୁ ହେବ । ୬୦୯ ।
ଏମନ୍ତ ଭକ୍ତିଜ୍ଞାନ ଧର୍ମ ଯୁକ୍ତ କଥନ ।
ଶିବ ମୁଖୁଁ ଶୁଣି ଶ୍ରୀରାମ ଲଭ ତୋଷଣ । ୬୧୦ ।

ବୋଇଲୁ ଫଳିଲୁ ତ ଏବେ ତୋହର ପଣ ।
ବିଳମ୍ବ ଅଉ ନ କର ପାଳ ମୋ ବଚନ । ୬୧୧ ।
ଏତେ କହି ଶ୍ରୀରାମ ଅନ୍ତର୍ଦ୍ଧାନ ହୋଇଲା ।
ଉପଗତ ସପ୍ତର୍ଷିଙ୍କି ଶଙ୍କର ବୋଇଲା । ୬୧୨ ।

## ପାର୍ବତୀ ପରୀକ୍ଷା

ପରଖି ଗିରିଜା ପ୍ରୀତି ଏବେ ତୁମ୍ଭେ ଯାଅ ।
ତାଙ୍କୁ ପୁରେ ପହଞ୍ଚାଅ ପିତାଙ୍କୁ ପଠାଅ । ୬୧୩ ।
ହିମାଳୟ ଚିତ୍ତରେ ଜାତ ହେଲେ ସଂଶୟ ।
ନିବାରଣ କର କହି ସୁକ୍ତିବାଣୀଚୟ । ୬୧୪ ।
ଏପରି ଶିବାନୁଜ୍ଞାତ ହୋଇ ମୁନିମାନେ ।
ଯାଇ ପୁଚ୍ଛିଲେ ଗୌରୀଙ୍କି ଦେଖି ତପଃସ୍ଥାନେ । ୬୧୫ ।
କୁମାରି, ସତ କହ ଲକ୍ଷ୍ୟ କରି କାହାକୁ ।
କିସ ବାଞ୍ଛି କିମ୍ପା କରୁ ଘୋରେ ତପସ୍ୟାକୁ । ୬୧୬ ।
ତା ଶୁଣି ଗୌରୀ କହିଲେ ମୁଁ କହଇ ସତ ।
ମାତ୍ର ମୋ ଜାଡ୍ୟ ଶୁଣି ହସିବା ଅନୁଚିତ । ୬୧୭ ।
ଇଚ୍ଛିତ ମୋ ଚିତ୍ତ ଗୃହେଁ ସଲିଳ ଉପରେ ।
ଭିତ୍ତି ବାନ୍ଧିବାକୁ ନାରଦ ବଚନରେ । ୬୧୮ ।
ମୁଁ ସାହସିନୀ ଡ଼େଣା ନ ଥାଇ ଉଡ଼ିବାକୁ ।
ବାଞ୍ଛଇ ଅଜ୍ଞାନେ ଶିବଙ୍କୁ ବରିବାକୁ । ୬୧୯ ।
ମୁନିଏ ଉଚ୍ଚେ ହସି ବୋଇଲେ ତାହା ଶୁଣି ।
ତୁମ୍ଭ ତ ସ୍ୱଭାବେ ଗିରିଜାତା ଅଟ ପୁଣି । ୬୨୦ ।
ନାରଦ କହିଲା ଭଣ୍ଡ କଥାରେ ଭୁଲିଲ ।
କାହା ମନ୍ଦିରକୁ ମଣ୍ଡିବାକୁ ବାହାରିଲ ? ୬୨୧ ।
ସେ ମୁନିବାଣୀ ଶୁଣି ସତୀ ବାପଘରକୁ ।
ଯାଇ ଫେରି ଆସିଲା ନାହିଁ ପତି ଛାମୁକୁ । ୬୨୨ ।
ଚିତ୍ରକେତୁ କନକ କଶିପୁ ନୃପ ଦ୍ୱୟ ।
ତାହା କଥାକୁ ମାନି ଲଭିଲେ ଅପଚୟ । ୬୨୩ ।

ତାହାରେ ଶିକ୍ଷିତ ହେବା ନର କବା·ନାସ୍ତି ।
ଘର ଛାଡ଼ ବୁଲଇ ଦାଣ୍ଡେ ହୋଇ ଭିକାସ୍ତି । ୬୨୪ ।
ତାର ରୂପ ସାଧୁମନ କପଟର ଛାଞ୍ଚ ।
ସବୁଙ୍କୁ ତା ପର କରିବାକୁ ତାର ପାଞ୍ଚ । ୬୨୫ ।
ତୁହ ଅଜଣା ସରଳା ବାଲା ତା ବଚନ ।
ପ୍ରତେ କରି ଭ୍ରମି ଶିବେ ବଳାଇଲୁ ମନ । ୬୨୬ ।
ଶିବ ଅଟେ ନିର୍ଗୁଣ ନିର୍ଲଜ ସର୍ପଧର ।
କୁବେଶ କୁଳ ଗୃହହୀନ କପାଳକର । ୬୨୭ ।
ଅବର ବିରୂପାକ୍ଷ ଦିଗମ୍ବର ଏମନ୍ତ ।
ବରକୁ ବର ସୁଖିନୀ ହୋଇବୁ କେମନ୍ତ ? ୬୨୮ ।
କପଟି ମୁନି ବଚନ ଭ୍ରମରେ ପଡ଼ିଲୁ ।
ତୋ ମୃଦୁ ତନୁକୁ ବୃଥା କଷଣ ବାଢ଼ିଲୁ । ୬୨୯ ।
ଶିବ ସତୀଙ୍କୁ ଅତି କଷ୍ଟ ଦେଇ ଅନ୍ତରେ ।
ଅନ୍ତ କଲା ବୃତ୍ତାନ୍ତ ପ୍ରସିଦ୍ଧ ଜଗତରେ । ୬୩୦ ।
ଏକାକୀ ହୋଇ ଶଙ୍କର ଖାଏ ଭିକ ମାଗି ।
ଶୋଏ ଶ୍ମଶାନେ ନୋହେ କାନ୍ତାରେ ଅନୁରାଗୀ । ୬୩୧ ।
ଏବେ ହେଲେ ତାକୁ ଛାଡ଼ ମାନ ଅମ୍ଭ ଗିର ।
ଅମ୍ଭେ ତୋତେ ଆଣି ଦେବୁ ଉପଯୁକ୍ତ ବର । ୬୩୨ ।
ସେ ଅତ୍ୟନ୍ତ ସୁନ୍ଦର ବେଦବେଦ୍ୟ ଚରିତ ।
ସୁଗୁଣୀ ସୁଶୀଳ ଶ୍ରୀପତି ଅତି ପବିତ । ୬୩୩ ।
ଦୋଷହୀନ ସୁଖକର ବୈକୁଣ୍ଠ ମନ୍ଦିର ।
ସବୁବିଧେ ଅଟେ ସେ ଅନୁରୂପ ତୋହର । ୬୩୪ ।
ମୁନିଙ୍କ ବାଣୀ ଶୁଣି ମନେ ହସି ପାର୍ବତୀ ।
ବୋଇଲା ସତ୍ୟ ଅଟଇ ତୁମ୍ଭର ଭାରତୀ । ୬୩୫ ।
ଏ ମୋ ତନୁ ଶୈଳଜ ଅଟେ ମାତ୍ର ଏ ଗଲେ ।
ମୋ ଦୃଢ଼ ଭାବନାକୁ ତେଜିବ ନାହିଁ ତଲେ । ୬୩୬ ।
ଶିଳାଜାତ କନକ ହେଲେ ବହ୍ନିଜ୍ୱଳିତ ।
ନିଜ କାନ୍ତିକୁ ଅଳ୍ପ ମଧ୍ୟ ଛାଡ଼େ ନାହିଁ ତ । ୬୩୭ ।

ଉପେକ୍ଷିବ ନାହିଁ ମୁଁ ନାରଦୋପଦେଶକୁ ।
ମୋର କଣ୍ଠ ଡର ନାହିଁ ଏକାନ୍ତ ବାସକୁ । ୬୩୮ ।
ଗୁରୁବଚନେ ବିଶ୍ୱାସ ନାହିଁଟି ଯାହାର ।
ସ୍ୱପ୍ନରେ ମଧ୍ୟ ସୁଖ ସିଦ୍ଧି ନାହିଁ ତାହାର । ୬୩୯ ।
ହର ଗୁଣରହିତ ହରି ସୁଗୁଣାକର ।
ମନ ଯେ ଯହିଁ ରସେ ତାର ସେ ମନୋହର । ୬୪୦ ।
ପ୍ରଥମରେ ଉପଦେଶ ତୁମ୍ଭେ କରିଥିଲେ ।
ତୁମ୍ଭମାନଙ୍କ ଅଜ୍ଞାକୁ ପାଳିଥାନ୍ତି ଭଲେ । ୬୪୧ ।
କଲିଣି ମୋ ମାନସକୁ ଶିବସମର୍ପଣ ।
ବ୍ୟର୍ଥ ଏବେ ତାଙ୍କ ଗୁଣ ଦୋଷ ବିଚାରଣ । ୬୪୨ ।
ବରଘଟନ ମାତ୍ର ତୁମ୍ଭ ଉଦ୍ଦେଶ୍ୟ ହେଲେ ।
ଧରାରେ ଅନେକ କନ୍ୟା ଲଭ୍ୟ ହେବେ ହେଲେ । ୬୪୩ ।
ଶତବାର ମୁଁ କହେ ଏ ଜନ୍ମେ ମାତ୍ର ନୁହେଁ ।
କୋଟିଜନ୍ମେ ମଧ୍ୟ ଅନ୍ୟ ଜନକୁ ମୁଁ ବରେ । ୬୪୪ ।
ବରିଲେ ମହାଦେବଙ୍କୁ ମାତର ବରିବି ।
ନୋହିଲେ ଏହିପରି କନ୍ୟକା ହୋଇଥିବି । ୬୪୫ ।
ତୁମ୍ଭଙ୍କୁ ମୋର ପ୍ରଣାମ ହେଲଣି ଉତ୍ତର ।
ତୁମ୍ଭେମାନେ ସ୍ୱସ୍ଥାନ ପ୍ରତି ପ୍ରସ୍ଥାନ କର । ୬୪୬ ।
ଗିରିଜା ହୃଦୟେ ଶିବ ପ୍ରୀତିକି ଅନାଇ ।
ମୁନିଏ ବୋଇଲେ ସନ୍ତୁଷ୍ଟାନ୍ତରଙ୍ଗ ହୋଇ । ୬୪୭ ।
ଜୟ ଜଗଜ୍ଜନନି ଜୟ ଜୟ ଭବାନି ।
ଜୟ ଗିରିନନ୍ଦନି ଜୟ ଜୟ ମୃଡ଼ାନି । ୬୪୮ ।
ତୁହି ପ୍ରକୃତି ଶିବ ପୁରୁଷ ତୁମ୍ଭେ ଦୁଇ ।
ଜଗତର ଜନନୀ ଜନକ ଏତେ କହି । ୬୪୯ ।
ପାର୍ବତୀଙ୍କି ସେମାନେ ପ୍ରଣମି ତହୁଁ ଗଲେ ।
ତାଙ୍କୁ ବୁଝାଇ ଗିରିରାଜଙ୍କୁ ପଠାଇଲେ । ୬୫୦ ।
ସେ ଯାଇ ପ୍ରବୋଧି ନିଜ ପ୍ରିୟ କୁମାରୀଙ୍କି ।
ଆଣିଲେ ଆନନ୍ଦରେ ଆପଣା ନଗରୀକି । ୬୫୧ ।

ଶିବ ଜାଣି ମୁନିଙ୍କ ମୁଖୁଁ ଗୌରୀଭାବଙ୍କୁ ।
ତୁଷ୍ଟ ହୋଇ ରହିଲେ କରି ସମାଧାନକୁ । ୬୫୨ ।

## ମଦନ ଦହନ

ସେକାଳେ ତାରକାସୁର ପ୍ରତାପୀ ବଳିଷ୍ଠ ।
ଲୋକଙ୍କୁ ଲୋକେଶଙ୍କୁ ଜିଣିଲା ସେ ପାପିଷ୍ଠ । ୬୫୩ ।
ଦେବେ ଦୁଃଖୀ ଦରିଦ୍ରୀ ଭସ୍ମୂଳ ହୋଇ ଯାଇ ।
ନିଜ ଗତି ଜଣାଇଲେ ବ୍ରହ୍ମାଙ୍କୁ ମନାଇ । ୬୫୪ ।
ବିଧି ବିଚାରି ବୋଇଲେ ରୁଦ୍ରବୀର୍ଯ୍ୟୋଦ୍ଭବ—
ପୁତ୍ର ମାତ୍ର ସେ ଦୈତ୍ୟଙ୍କୁ ସଂହାରି ପାରିବ । ୬୫୫ ।
ତହିଁ ପାଇଁ ଅଛି ଏକ ଉପାୟ ମାତର ।
ସିଦ୍ଧ ହେବ ଅନୁକୂଳ ହୋଇଲେ ଈଶ୍ୱର । ୬୫୬ ।
ଦକ୍ଷଯଜ୍ଞେ ସତୀ ତେଜି ନିଜ ଶରୀରକୁ ।
ଏବେ ଜନ୍ମୁଛି ସୁତା ହୋଇ ହିମାଳୟଙ୍କୁ । ୬୫୭ ।
ଶିବାନୁରାଗରେ ସେ ବହୁତ ତପ କଲା ।
ମାତ୍ର ଶିବ ଯୋଗାସନେ ଦୃଢ଼ରେ ବସିଲା । ୬୫୮ ।
ମୋ ବୋଲ ଶୁଣି ତୁମ୍ଭେ ପଠାଅ ମନ୍ମଥଙ୍କୁ ।
ସେ ଯାଇ ବାଧା ଦେଇ ଭାଙ୍ଗୁ ଶିବ ଯୋଗକୁ । ୬୫୯ ।
ତେବେ ଅମ୍ଭେମାନେ ଯାଇ ଶିବଙ୍କୁ ପ୍ରବୋଧି ।
ଗୌରୀ ହର ବିବାହ କରାଇବା ନିରୋଧି । ୬୬୦ ।
ତାହା ହେଲେ ତୁମ୍ଭ ହିତ ହୋଇବ ସାଧିତ ।
ଏତେ ଶୁଣି ଦେବତାଏ ହୋଇ ଆନନ୍ଦିତ । ୬୬୧ ।
ସ୍ତୁତି କରନ୍ତେ ବିଷମ କାମ ଉପଗତ ।
ହୋଇ ସକଳ ବିଷୟ ହେଲା ଅବଗତ । ୬୬୨ ।
ମାନସେ ଡରେ ଭାବି ସେ ବୋଇଲା ଏପରି ।
ଶଙ୍କର ବିରୋଧ ନୁହେଁ ମଙ୍ଗଳ ମୋହରି । ୬୬୩ ।
ତଥାପି ତୁମ୍ଭ କାର୍ଯ୍ୟ ନିମନ୍ତେ କରିବି ମୁହିଁ ।
ପରୋପକାର ପୁଣ୍ୟର ଅସ୍ଥାନ ଅଟଇ । ୬୬୪ ।

ପରହିତ ପାଇଁ ଯେ ତେଜେ ନିଜ ତନୁକୁ ।
ପଣ୍ଡିତେ ସଦା କରନ୍ତି ତାହାର ସ୍ତବକୁ । ୬୬୫ ।
ଏହି ରୂପେ କହି ସ୍ମର ସୈନ୍ୟ ସହିତରେ ।
ଚଳିଲା ପୁଷ୍ପକାଣ୍ଡ କୋଦଣ୍ଡ ଧରି କରେ । ୬୬୬ ।
ବାଟରେ ସେହି ଭାବିଲା ମହେଶ୍ୱର ବୈର ।
ନିଃସନ୍ଦେହରେ କରିବ ନିଧନକୁ ମୋର । ୬୬୭ ।
ତେବେହେଁ କର୍ତ୍ତବ୍ୟ କାର୍ଯ୍ୟ କରିବି ଧୈର୍ଯ୍ୟରେ ।
ବୋଲି ପ୍ରକଟିଲା ନିଜ ପ୍ରଭାବ ପ୍ରଚୁରେ । ୬୬୮ ।
ସେ କ୍ଷଣି କାମବଶୀଭୂତ ହେଲା ଜଗତ ।
ସୁରାସୁର ମୁନିଗଣ ମର୍ଯ୍ୟାଦାରହିତ । ୬୬୯ ।
ବ୍ରହ୍ମଚର୍ଯ୍ୟ ସଂଯମ ଯୋଗ ବୈରାଗ୍ୟ ଜପ ।
ସଦାଚାର ବ୍ରତ ଧୈର୍ଯ୍ୟ ଧର୍ମ କର୍ମ ତପ । ୬୭୦ ।
ଭୟେ ରଣଭଙ୍ଗ ହୋଇ କରନ୍ତେ ଧାବନ ।
ନିଜ ସୈନ୍ୟ ଭଙ୍ଗ ଦେଖି ଜ୍ଞାନଭୂରମଣ । ୬୭୧ ।
ଅତି ଶୀଘ୍ରେ ପଳାଇ ସଦ୍‌ଗ୍ରନ୍ଥ କନ୍ଦରରେ ।
ଲୁଚି ରହିଲା ଲଭି ବୈକଲ୍ୟମାନସରେ । ୬୭୨ ।
ସ୍ଥାବର ଜଙ୍ଗମଗଣେ ସର୍ବ ସ୍ତ୍ରୀ ପୁରୁଷେ ।
ସ୍ୱନାମ୍ୟମକୁ ଖଣ୍ଡ ମାଡିଲେ ରାଗ ବଶେ । ୬୭୩ ।
ଲତାଙ୍କୁ ଦେଖି ବୃକ୍ଷେ ଶାଖାଙ୍କୁ ପ୍ରସାରିଲେ ।
ସରସୀଙ୍କୁ ଦେଖି ହ୍ରଦମାନ ଉଚ୍ଛୁଳିଲେ । ୬୭୪ ।
ନଦୀଙ୍କୁ ଦେଖି ସମୁଦ୍ର ଉଲ୍ଲାଟ ହୋଇଲା ।
ସଜୀବ ପୁରୁଷ ସ୍ଥିତି କି କହିବି ଭଲି । ୬୭୫ ।
ସକଳ ପ୍ରାଣୀମାନେ ନିଶ୍ଚେ କାମାନ୍ଧ ହୋଇ ।
ରଜନୀ ଦିନ ଅବି ବାରି ପାରିଲେ ନାହିଁ ।୬୭୬ ।
ପୁରୁଷମୟ ସ୍ତ୍ରୀମୟ ରୂପେ ବ୍ରହ୍ମମୟ ।
ବିଶ୍ୱ ଯୋଗିନୀ ଯୋଗୀଙ୍କି ହୋଇଲା ପ୍ରତ୍ୟୟ । ୬୭୭ ।
ପାମଶ୍ରୀ ପାମରଙ୍କର ମାନସ ବିକାର ।
କି ପରକାରେ ଥିବ ତାଙ୍କୁ ରୂମ୍ଭେ ବାହାର । ୬୭୮ ।

ବ୍ରହ୍ମ-କୃପାପାତ୍ର ଜନେ ମାତ୍ର ସେ କାଳରେ ।
ଅବସ୍ଥାନ କଲେ ନିର୍ବିକାର ମାନସରେ । ୬୭୯ ।
ମୁହୂର୍ତ୍ତ ମାତ୍ର ଅଟେ କାମଯାତ୍ରା ସମୟ ।
ତେବେ ଉପୁଜିଲା ପୂର୍ବ କଥିତ ବିସ୍ମୟ । ୬୮୦ ।
ହର ନିକଟବର୍ତ୍ତୀ ହୋଇ ମାର ଉଭିଲା ।
ସେ କ୍ଷଣି ପ୍ରପଞ୍ଚ ପୂର୍ବ ରୂପକୁ ଧରିଲା । ୬୮୧ ।
ମହାବ୍ରହ୍ମଧ୍ୟାନବନ୍ତଙ୍କ ମାନସ ପର୍ଯ୍ୟେ ।
ପୁଣି ସୁଷ୍ଟିସବସ୍ଥାକୁ ଲଭିଲେ ପ୍ରାଣୀଏ । ୬୮୨ ।
ଦୁର୍ଦ୍ଧର୍ଷ ଦୁର୍ଗମ ରୁଦ୍ର ରୂପକୁ ଲଙ୍ଘିବାକୁ ।
ଉଭ ମନ୍ମଥ ଶଙ୍କିତ ଥିବାକୁ ଦିବାକୁ । ୬୮୩ ।
ଅନ୍ତ୍ରେ ସେ ମରିବାକୁ ସାହାସ କର ରହୁ ।
ବନକୁ ଶକସାଇଲା ବସନ୍ତକୁ କହୁ । ୬୮୪ ।
ତରୁ ପ୍ରକର ପଲ୍ଲବ କୁସୁମ ଭରିତ ।
ଶୁକ ପିକ ସାରିକା ରୁତ ସ୍ତୁତ ରଞ୍ଜିତ । ୬୮୫ ।
ସରସୀଚୟ ନିର୍ମଳ ସଲିଳ ପୁରିତ ।
କଞ୍ଜ କୁବଳୟ କୋକନଦ ବିକସିତ । ୬୮୬ ।
ଚକ୍ର ମରାଳ ଭୃଙ୍ଗ-ନିନଦ ପ୍ରକଟିତ ।
ବୃକ୍ଷ ହୃଦୟେ ମଧ୍ୟ ଅନୁରାଗ ଉଦିତ । ୬୮୭ ।
କାମାଗ୍ନି ମିତ୍ର ସୁଗନ୍ଧ ମଳୟ ମାରୁତ ।
ମନେ ବନ୍ଧ ମାନସକୁ କରେ ଉଲ୍ଲସିତ । ୬୮୮ ।
ଏମନ୍ତ ମାରସେନା କୋଲାହଳ କରିଲା ।
ମାତ୍ର ତାହାଦ୍ୱାରା ଶିବ ଯୋଗ ନ ଟଳିଲା । ୬୮୯ ।
ତା ଦେଖି ମନୋଜ ଅତି କୁପିତ ହୋଇଲା ।
ଏକ ବାଳ ରସାଳ-ଶାଖିକାରେ ବସିଲା । ୬୯୦ ।
ନିଜ ସୁମ ଧନୁରେ ବିଷମ ବାଣ ଯୋଖି ।
ଛାଡ଼ିଲା ଯାଏ ଠାଣି ଛାଡ଼ିଲା ଲକ୍ଷ୍ୟ ଦେଖି । ୬୯୧ ।
ଶର ଶିବହୃଦେ ବାଜି ସମାଧି ନାଶିଲା ।
ଚେତ ଭବ ଯୋଡ଼ିରେ ଗୁରୁଅଡେ ଚାହିଁଲା । ୬୯୨ ।

ଅମ୍ବଗଛ ଡାଳପରେ ଦେଖି ମଦନଙ୍କୁ ।
ରୁଦ୍ର ବହ୍ନି ବିକ୍ଷେପ ତ୍ର୍ୟମ୍ବକର କ୍ରୋଧକୁ । ୬୯୩ ।
ନିଜ ତୃତୀୟ ନେତ୍ରକୁ ମେଲି ଅନାଇଲେ ।
ସେ କ୍ଷଣି ରତିପତି ଜଳି ଭସ୍ମ ହୋଇଲେ । ୬୯୪ ।
ସେ ସମୟେ ହାହାକାର କରିଲେ ଭୂତଳେ ।
ଦେବେ ଡରିଲେ ଦନୁଜେ ସନ୍ତୁଷ୍ଟି ଲଭିଲେ । ୬୯୫ ।
ସ୍ୱରସୁଖକୁ ସୁଖ ଭୋଗୀମାନେ ଭୁଲିଲେ ।
ଯୋଗୀଏ ତପସ୍ୱୀଏ ଅକଣ୍ଟକ ହୋଇଲେ । ୬୯୬ ।
ନିଜ ପ୍ରାଣପତିର ଦୁର୍ଗତି ଶୁଣି ରତି ।
ମୂର୍ଚ୍ଛିତା ହୋଇ ଚେତ କ୍ରନ୍ଦନ କରି ଅତି । ୬୯୭ ।
ଯାଇ ତ୍ରିପୁରାନ୍ତକ ଚରଣତଳେ ପଡ଼ି ।
ବହୁତ ବିଳାପ କଲା ଶୋକାବ୍ଧିରେ ବୁଡ଼ି । ୬୯୮ ।
ତା ଦଶା ଦେଖି ଆଶୁତୋଷ କୃପାଳୁ ଶିବ ।
ପ୍ରସନ୍ନ ହୋଇ ବୋଇଲେ ଶୁଣ ତୋର ଧବ । ୬୯୯ ।
ଅନଙ୍ଗନାମେ ଖ୍ୟାତ ହୋଇ ଅଙ୍ଗହୀନରେ ।
ବାସ କରିବ ସର୍ବପ୍ରାଣୀଙ୍କ ମାନସରେ । ୭୦୦ ।
ଧରାଭାର ନାଶିବାକୁ ଶ୍ରୀକୃଷ୍ଣାବତାର ।
ଦ୍ୱାପର ଯୁଗେ ହୋଇବ ତେବେ ପତି ତୋର । ୭୦୧ ।
ଶ୍ରୀକୃଷ୍ଣ ତନୟ ହୋଇ ସମ୍ଭବିବ ତାକୁ ।
ବର ତେଜିବୁ ତୁହି ଏ ବିରହାବସ୍ଥାକୁ । ୭୦୨ ।
ଏ ବର ପାଇ ରତି ନିଜ ପୁରକୁ ଗଲା ।
ତେବେ ହରି ବ୍ରହ୍ମାଦି ସୁରସଙ୍ଘ ଆସିଲେ । ୭୦୩ ।
ଆସି ମହେଶ୍ୱରଙ୍କୁ ନାନା ସ୍ତବ କରନ୍ତେ ।
ପ୍ରୀତ ହୋଇ ତଦାଗତ ହେତୁ ସେ ପୁଚ୍ଛନ୍ତେ । ୭୦୪ ।
ବିରଞ୍ଚି ଉତ୍ତର ଦେଲେ ସର୍ବଜ୍ଞତ ତୁହି ।
ତେବେହେଁ ଅମ୍ଭ ବାଞ୍ଛା ଏବେ କହଇ ମୁହିଁ । ୭୦୫ ।
ତୁମ୍ଭେ ଯୋଗ୍ୟ ରମଣୀ ପାଣି ଗ୍ରହଣ କର ।
କର ମାନସ ନେହ ପର ଅମ୍ଭ ସବୁର । ୭୦୬ ।

ଦଣ୍ଡ୍ୟ କାମକୁ ଦଣ୍ଡି ବରଦାନ ତ କଲ ।
ତପ କଲା ପାର୍ବ୍ବତୀଙ୍କ କିମ୍ପା ଉପେକ୍ଷିଲ ? ୭୦୭ ।
ତା ଶୁଣି ଶିବ ବୋଲେ ତୁମ୍ଭ ବୋଲ ପାଳିବି ।
ଗିରିସୁତାକୁ ଅବଶ୍ୟ ବିବାହ ହୋଇବି । ୭୦୮ ।
ଏ ବଚନ ଶୁଣି ଦେବେ ମୁଦିତ ହୋଇଲେ ।
ଦୁନ୍ଦୁଭି ବାଦ୍ୟ ବଜାଇ ଜୟଧ୍ୱନି କଲେ । ୭୦୯ ।

## ଗିରିଜା ଶଙ୍କର ବିବାହ

ପିତାମହ ପ୍ରେରଣେ ସପ୍ତଋଷି ସତ୍ୱରେ ।
ଯାଇ ପରବେଶିଲେ ହିମାଳୟ ମନ୍ଦିରେ । ୭୧୦ ।
ତହିଁ ଗୌରୀଙ୍କ ଦେଖି ମୋଦ ଲଭି ମନରେ ।
ଏମନ୍ତ ଛଳବଚନ ଭାଷିଲେ ମଧୁରେ । ୭୧୧ ।
ନାରଦ ଶିକ୍ଷାରୁ ଅମ୍ଭ ବୋଲ ନ ଶୁଣିଲୁ ।
ତପସ୍ୟା କରି ବୃଥା ଶ୍ରମ ମାତ୍ର ପାଇଲୁ । ୭୧୨ ।
ତୋ ପ୍ରତିଜ୍ଞା ଆଉ କିପରି ସଫଳ ହେବ ?
କାମକୁ ତ ଭସ୍ମ କଲା କୋପି ବାମଦେବ । ୭୧୩ ।
ଏ ବାଣୀ ଶୁଣି ମନେ ହସି ବୋଇଲା ଗୌରୀ ।
ତୁମ୍ଭ ମତରେ ପୂର୍ବେ ସକାମ ତ୍ରିପୁରାରି । ୭୧୪ ।
ବର୍ତ୍ତମାନ ନିଷ୍କାମ ହେଲେ କାମକୁ ଦହି ।
ତୁମ୍ଭେମାନେ ତ ବିଜ୍ଞ କିସ ବୋଲିବି ମୁହିଁ । ୭୧୫ ।
ମୋ ସ୍ଥିର ମତ ଶୁଣ ଶିବ ସଦା ସଯୋଗ ।
ନିଷ୍କାମ ନିରଞ୍ଜନ ନିର୍ଦ୍ଦୋଷ ଗତଭୋଗ । ୭୧୬ ।
ପାଇ ନିଅଁକୁ ଲାଗି ପାଉଁଶ ହେବା ପରି ।
କାମ ଭସ୍ମ ହେଲା ରୁଦ୍ରଠାରୁ ଗତଜ୍ୱର । ୭୧୬ ।
ଏହା ଶୁଣି ଉମାରେ ଦେଖି ଶିବ ସ୍ନେହକୁ ।
ମୁନିଏ ସନ୍ତୁଷ୍ଟ ହୋଇ ଭେଟି ତା ତାତକୁ । ୭୧୮ ।
ସର୍ବ ବୃତ୍ତାନ୍ତ କହି ଶୈଳ ତାର ସମ୍ମତ ।
ସ୍ଥିର କଲେ ଭଲ ଲଗ୍ନ ଗୋଟିଏ ଝଟିତ । ୭୧୯ ।

ତହୁଁ ନିମନ୍ତ୍ରଣ ପତ୍ର ତାହାଠାରୁ ନେଇ ।
ହରଷରେ ବ୍ରହ୍ମାଙ୍କୁ ଦେଲେ ସେମାନେ ଯାଇ । ୭୨୦ ।
ତାଙ୍କୁ ଦେଖି ଦେବେ ମୋଦେ ସୁମବୃଷ୍ଟି କଲେ ।
ଦଶଦିଶାରେ ମଙ୍ଗଳ କଳସ ସ୍ଥାପିଲେ । ୭୨୧ ।
ମଙ୍ଗଳ ବାଦ୍ୟ ବାଜିଲା ଅପୂର୍ବ ଗୀତ ।
ପ୍ରସରିଲା ସଜ୍ଜିତ-ଯାନ ବାହାନ-ବ୍ରାତ । ୭୨୨ ।
ନିଜ ଗଣକୃତ ବରବେଶେ ଶୋହେ ହର ।
ଜଟାରେ ଶଶିକଳା ମୁକୁଟ ପ୍ରବର । ୭୨୩ ।
ଶିରେ ଗଙ୍ଗା ସର୍ପ ଚୂଳ ଶ୍ରବଣରେ ବ୍ୟାଳ ।
କୁଣ୍ଡଳ ହସ୍ତେ ଅସ୍ଥି କଙ୍କଣ ଅଙ୍ଗେ ଖଲ୍ଲ । ୭୨୪ ।
ଉପବୀତ ନାଗ ଲେପ ଭସ୍ମ କଣ୍ଠ ଦେଶେ ।
ମୁଣ୍ଡମାଳା କରେ ଶୂଳ ଡମରୁ ପ୍ରକାଶେ । ୭୨୫ ।
ଏମନ୍ତ ଅମଙ୍ଗଳ ବେଶେ ବୃଷବାହନ ।
ହୋଇ ମଙ୍ଗଳାଳୟ ଶିବ କଲା ଗମନ । ୭୨୬ ।
ତାଙ୍କୁ ଦେଖି ମନେ ହସି ଦେବକାନ୍ତାମାନେ ।
ବୋଇଲେ ଲୋକେ କନ୍ୟା ନାହିଁ ଏହା ସମାନେ । ୭୨୭ ।
ହର ବ୍ରହ୍ମାଦି ସୁରେ ନିଜ ନିଜ ବାହାନ ।
ଅରୋହି ଆନନ୍ଦରେ କଲେ ଅନୁଗମନ । ୭୨୮ ।
ଦେବତାମାନେ ହେଲେ ମଧ୍ୟ ଅତି ସୁନ୍ଦର ।
ତାଙ୍କ ମଧ୍ୟେ ନାହିଁ ଜଣେ ହର ତୁଲ୍ୟ ବର । ୭୨୯ ।
ହୃଷୀକେଶ ନିଦେଶରେ ଦିଗଧୀଶଗଣ ।
ଚଳିଲେ ବେଷ୍ଟିତ ହୋଇ ନିଜ ପରିଜନ । ୭୩୦ ।
ଭୃଙ୍ଗୀ ପ୍ରମୁଖ ରୁଦ୍ରଗଣ କଲେ ଗମନ ।
ଜନନ କରି ଦେଖଣାହାରଙ୍କ ହସନ । ୭୩୧ ।
କାହାର ମୁଖ ନାହିଁ କାଏ ବହୁବଦନ ।
କେ ହସ୍ତାଙ୍ଘ୍ରିହୀନ କେ ବହୁ-କରଚରଣ । ୭୩୨ ।
କାଏ ଲୋଚନ ହୀନ କେ ଅନେକ ନୟନ ।
କାହାର ସ୍ଥୂଳ କାୟ କାଏ କ୍ଷୀଣାପଘନ । ୭୩୩ ।

କେ ଦୁର୍ବଳ କେ ବଳୀ କେ ଅପୂତକେ ପୂତ ।
କେଁ ହୁଏ ଭସ୍ମାନଳ ମଣ୍ଡି ଅସ୍ଥିବ୍ରାତ । ୭୩୪ ।

କେ ଏ ଖପର ଧରି କରେ ରକ୍ତ ସେବନ ।
କେ ଏ ଖରଲପନ କାର ଶ୍ୱାନବଦନ । ୭୩୫ ।

କେ କଟମୁଖ୍ କେହୁ ଶିବାସ୍ୟ ସମସ୍ତେ ତ ।
ଭୂତ ପ୍ରେତ-ପିଶାଚ-ଯୋଗିନୀ-ଯୋଗି-ବ୍ରାତ । ୭୩୬ ।

ବହୁରୂପେ ନାନା ବେଶେ ବଚନ ବାଣୀ ।
ଭଣି ଗାଇ ନାଚନ୍ତି ଅଛଥ୍ୟ ତାଙ୍କ ଠାଣି । ୭୩୭ ।

ତେଣେ ହିମାଳୟ ରଚି ରମ୍ୟ ମଣ୍ଡପକୁ ।
ସର୍ବ ନଦୀ ହ୍ରଦାବ୍ଧି ଗିରି-ବନ ଚୟକୁ । ୭୩୮ ।

ନିମନ୍ତ୍ରିଲା, ସେମାନେ ହୋଇ ସପରିଜନ ।
ଗଲେ ଧରି କାମରୂପ ଧରି ତା ଭବନ । ୭୩୯ ।

ତାହା ପୁରର ମଣ୍ଡଣି ଅତ୍ୟଧିକ ଗୃହ ।
ବାବଦତର ପିତାମହ ନିର୍ମାଣଠାରୁ । ୭୪୦ ।

ଉପବନ ବନ କୂପ ତଟିନୀ ତଡ଼ାଗ ।
କରନ୍ତି ଦର୍ଶକଗଣ ପ୍ରମୋଦାତିରେକ । ୭୪୧ ।

ପ୍ରତ୍ୟେକ ଗୃହ ପତାକା ତୋରଣ-ଶୋଭିତ ।
ମନମୋହନରୂପେ ସ୍ତ୍ରୀ ପୁରୁଷେ ବିଜିତ । ୭୪୨ ।

ଯହିଁ ଜଗଦମ୍ବାର ହୋଇଛି ଅବତାର ।
ସେ ସ୍ଥାନ ବର୍ଣ୍ଣିବାକୁ ସାମର୍ଥ୍ୟ ଅଛି କାର । ୭୪୩ ।

ସେହିଠାରେ ସକଳ ରୁଦ୍ଧ ସମ୍ପଦ ସିଦ୍ଧି ।
ନିତ୍ୟ ନୂତନ ରୂପରେ ହେଉଥାନ୍ତି ବୃଦ୍ଧି । ୭୪୪ ।

ନିଜ ପୁର ସମୀପକୁ ବରଯାତ୍ରଙ୍କର ।
ଆଗମନ ସମାଚାର ଜାଣି ଗିରିବର । ୭୪୫ ।

ସବାହନ ବନ୍ଧୁଙ୍କ ସଙ୍ଗରେ ସେନା ତରେ ।
ପାଛୋଟିବାକୁ ଗଲା ଅତି ସମାରୋହରେ । ୭୪୬ ।

ସବେ ଦେବଗଣଙ୍କୁ ଦେଖି ହେଲେ ମୁଦିତ ।
କମଳାରମଣଙ୍କୁ ଅନାଇଁ ପ୍ରମୁଦିତ । ୭୪୭ ।

ଏହାଙ୍କ ହସ୍ତ-ହସ୍ତି-ଚର୍ମ ରୁଦ୍ରଗଣଙ୍କୁ ।
ଗୃହିଁ କ୍ଷତଙ୍କ ପାଇ ପଳାଇଲ ପଛକୁ । ୭୪୮ ।
ବାଲକେ ଡର ଲାଗି ବରର ତଦ୍ଗୁଣର ।
ଉତ୍କଟବେଶ ରୂପଙ୍କୁ ବର୍ଣ୍ଣିଲେ ସତ୍ୱର । ୭୪୯ ।
ତା ଶୁଣି ତାଙ୍କ ଜନନୀ ତାତ ବିବରଣ ।
କରି କନ୍ଦ କଲେ ତାଙ୍କ ଭୟ ନିବାରଣ । ୭୫୦ ।
ଅଣି ସମସ୍ତ ବ୍ୟକ୍ତିଙ୍କ ବସା ସଞ୍ଜା ଦେଇ ।
ସମ୍ମାନ କଲା ଗିରିରାଜ ମୁଦିତ ହୋଇ । ୭୫୧ ।
ସଜନୀମାନେ ପାଇ ମେନକାର ଆଦେଶ ।
ଗିରିଜା ତାଙ୍କୁ କଲେ ବିବାହୋଚିତ ବେଶ । ୭୫୨ ।
ମେନକା ତେବେ ଭବ-ଭୟଙ୍କର ବେଶକୁ ।
ବାମାଙ୍କ ମୁଖଁ ଶୁଣି ଲଭି ଅତି ଦୁଃଖକୁ । ୭୫୩ ।
ନୟନ ନୀଳୋତ୍ପଳ-ଯୁଗଳେ ଅଶ୍ରୁ ଭରି ।
ବୋଇଲା କୁମାରୀଙ୍କ ସ୍ନେହରେ କୋଳେ ଧରି । ୭୫୪ ।
ବାପ ଦେଇ ତୋତେ ଏଡେ ସୁନ୍ଦରାକାରକୁ ।
ପାଇଥିଲି ସମର୍ପିବାକୁ ବିକୃତ ବରକୁ । ୭୫୫ ।
କଳ୍ପପାଦପ ଯୋଗ୍ୟ ଫଳକୁ ବଳେ ନେଇ ।
ଲଗାଇବାକୁ କଣ୍ଟାଗଛେ ଭାବେ ସେ ବାଇ । ୭୫୬ ।
ଘରବୁଡ଼ା ନାରଦର କଥାରେ ଭୁଲିଲି ।
ଏ ବାତୁଳ ବର ପାଇଁ କପାଳ ତପ କଲି । ୭୫୭ ।
ପ୍ରସବ ବାଧକୁ ବନ୍ଧ୍ୟା ଯେବେ ବାତ୍ସଲ୍ୟକୁ ।
ସେ ଗୃହସ୍ଥାନ-ସପତ୍ନୀ ନ ଜାଣେ ମନକୁ । ୭୫୮ ।
ଉମା ବୋଇଲା ଶୁଣି ମାତୃ ବିକଳ କଥା ।
ବିଧି ନିର୍ଣ୍ଣୟ କେବେହେଁ ନୁହଇ ଅନ୍ୟଥା । ୭୫୯ ।
ଲଭିବାକୁ ବାତୁଳ-ପତିଙ୍କ ଭାଲେ ମୋର ।
ଲିଖିତ ହୋଇଅଛି ଏଥିରେ ଦୋଷ କାର । ୭୬୦ ।
ସେ ଲେଖା ଲିଭାଇବା ଶକ୍ତି ନାହିଁ ତୁମ୍ଭର ।
ଅକାରଣେ ମୁନିଙ୍କୁ ନିନ୍ଦିବା ଅସୁନ୍ଦର । ୭୬୧ ।

କର୍ମାନୁରୂପେ ସୁଖ ଦୁଃଖ ଭୁଞ୍ଜିବ ସତ ।
ଜନନୀ ତୁମ୍ଭେ ଶୋକ କରବା ଅନୁଚିତ । ୭୬୨ ।
ଏପରି ଗିରିଜା ଭାଷୁଥିଲେ ସମୟରେ ।
ନାରଦ ତହିଁ ପ୍ରବେଶି ବୋଇଲେ ମୋଦରେ । ୭୬୩ ।
ତଥ୍ୟ ଅଛେ ମୋ ବାଣୀ ଶୁଣ ଅଗୋ ମେନକା ।
ତୋ ଦୁହିତା ଜଗନ୍ମାତା ଭବାନୀ ଅମ୍ବିକା । ୭୬୪ ।
ଶିବାର୍ଦ୍ଧାଙ୍ଗୀ ଅନାଦ୍ୟଶକ୍ତି ଅଜା ଅଚ୍ୟୁତା ।
ସୃଷ୍ଟିସ୍ଥିତ୍ୟନ୍ତକାରଣୀ ଲୀଳାତନୁଯୁତା । ୭୬୫ ।
ସତୀ ନାମରେ ଦକ୍ଷକୁ ଜନମି ପୂର୍ବରେ ।
ଶିବପତ୍ନୀ ହେଲେ କଥା ଖ୍ୟାତ ଜଗତରେ । ୭୬୬ ।
ପତିବାଣୀ ନ ମାନି ରାମ ପରୀକ୍ଷା ପାଇଁ ।
ଯାଇ ସୀତାରୂପକୁ ଧରିଲେ ମୋହ ପାଇ । ୭୬୭ ।
ସେ ଦୋଷରୁ ପତିତ୍ୟକ୍ତା ହୋଇ ବହୁ କୋହ ।
ଦକ୍ଷଯଜ୍ଞେ ଯୋଗାଗ୍ନିରେ ଜାଳିଲେ ସ୍ୱଦେହ । ୭୬୮ ।
ଏବେ ତୋ ପୁତ୍ରୀରୂପେ ଜନ୍ମି ଶିବ ନିମନ୍ତେ ।
ଘୋର ତପ କଲେ ଏ ଶିବପତ୍ନୀ ନିରତେ । ୭୬୯ ।
ଏମନ୍ତ ନାରଦୋକ୍ତି ଶୁଣି ହୋଇ ତାଟକା ।
ଖେଦକୁ ତେଜି ମୋଦକୁ ଲଭିଲେ ମେନକା । ୭୭୦ ।
ସେ ବାର୍ତ୍ତା ନଗରେ ବେଗେ ହେଲା ପ୍ରକଟିତ ।
ଶୁଣି ସମସ୍ତଙ୍କ ମନ ଆନନ୍ଦ ଭରିତ । ୭୭୧ ।
ସକଳେ ଉତ୍ସାହୀ ହୋଇ କଲେ ମହୋତ୍ସବ ।
ଭୋଜନର ପରବ କିଏ ବଖାଣି ପାରିବ ? ୭୭୨ ।
ଯେଉଁ ପୁରେ ଅନ୍ନପୂର୍ଣ୍ଣା ମାତା ବାସ କରେ ।
କିସ ଊଣା ହୋଇଥିବ ସେ ଘର ଭୋଜନରେ । ୭୭୩ ।
ଷଡ୍ରସୋପେତ ଚର୍ବ୍ୟ ଚୋଷ୍ୟ ଲେହ୍ୟ ପାନୀୟ ।
ଭକ୍ତ ସର୍ବଙ୍କୁ ଦେଇ ହିମାଦ୍ରି ହେଲେ ଗେୟ । ୭୭୪ ।
ମୁନିଙ୍କ ଅନୁଜ୍ଞାରେ ସେ ମାହେନ୍ଦ୍ର ବେଳରେ ।
ସର୍ବଦେବଙ୍କୁ ବସାଇ ବହୁତାସନରେ । ୭୭୫ ।

ରମ୍ୟ ନିର୍ମିତ ବେଦୀରେ ମଞ୍ଜୁଳ ପୀଠକୁ
ଦେଖାଇଲେ ଆନନ୍ଦରେ ମହାଦେବଙ୍କୁ । ୭୭୬ ।
ଶୁଣୁ ସ୍ତବଗାନ ସ୍ତ୍ରୀଙ୍କ ମୁଖରୁ ପ୍ରସନ୍ନ ।
ରାମଙ୍କୁ ଧ୍ୟାଇ ଶଙ୍କର ସେ ପୀଠେ ବସିଲେ । ୭୭୭ ।
ଋଷିଙ୍କ ଗିରେ ସଖୀଏ ଗୌରୀଙ୍କୁ ଆଣିଲେ ।
ତା ଦିବ୍ୟ ରୂପ ଦେଖି ଦେବେ ମୋହ ପାଇଲେ । ୭୭୮ ।
ପଛେ ନିଜ ଭ୍ରମକୁ ଚିନ୍ତି ସ୍ୱସ୍ଥ ମନରେ ।
ନମିଲେ ଜଗନ୍ମାତା—ଭବାନୀଙ୍କ ଭକ୍ତିରେ । ୭୭୯ ।
ଯେ ତ୍ରିଲୋକସୁନ୍ଦରୀ ତାହା ସୁନ୍ଦରପଣ ।
ବର୍ଣ୍ଣନ କରିବାକୁ ଜଗତେ କେ ସୁଜନ । ୭୮୦ ।
ସଖୀ-ନୀତା ଗିରିଜା ପତି ନିକଟକୁ ଗଲେ ।
ମାତ୍ର ଲଜ୍ଜାରେ ତଦ୍ରୂପ ଚାହିଁ ନ ପାରିଲେ । ୭୮୧ ।
ତେବେହେଁ ତାହା ମାନସ ଭ୍ରମର ପକ୍ଷର—
ଚରଣ ସାରସେ ଲାଗି ରହିଲା ନିକର । ୭୮୨ ।
ଉମା ମହେଶ ଦୁହେଁ ମୁନିଙ୍କ ଆଦେଶରେ ।
ପ୍ରଥମେ ଗଣେଶ୍ୱରଙ୍କୁ ପୂଜିଲେ ପ୍ରୀତିରେ । ୭୮୩ ।
ପଞ୍ଚଦେବତା ଏକ ହୋଇଥିବା କାରଣୁ ।
ସେ ପୂଜନରେ ସଂଶୟ କର ନାହିଁ ଅଣୁ । ୭୮୪ ।
ପରେ ବେଦ-ମନ୍ତ୍ର ପାଠ କଲେ ମୁନିବରେ ।
ପିତା ସମର୍ପିଲେ କନ୍ୟା କର ବର କରେ । ୭୮୫ ।
ପାଣିଗ୍ରହଣ ଶଙ୍କର କଲେ ମାତେ ଦେବେ ।
ଭୂ-ନଭୋଽନ୍ତରାଳ ପୂରିଲେ ଜୟରବେ । ୭୮୬ ।
ବିବିଧ ବାଦ୍ୟ-ନାଦ ମାନସକୁ ମୋହିଲା ।
ପୁଷ୍ପ-ବୃଷ୍ଟି ହେଲା ବିଶ୍ୱ ମୁଦିତ ହୋଇଲା । ୭୮୭ ।
ବିଧି ପ୍ରକାରେ ବିବାହ ହୋଇଲା ସମ୍ପୂର୍ଣ୍ଣ ।
ମେନକା ହିମାଳୟ ହୋଇ ସାନନ୍ଦ ତୂର୍ଣ୍ଣ । ୭୮୮ ।
ଅଳଙ୍କୃତା ଜନତୃକ ସମର୍ପି ଶିବଙ୍କୁ ।
ପ୍ରଣମି ବିନୟେ ଜଣା କଲେ ଏ ଗିରକୁ । ୭୮୯ ।

ଏ ବାଳିକା ଅମ୍ଭର ପ୍ରାଣାଧିକା, ଏହାକୁ—
ସମର୍ପିଲୁଁ ତ୍ୱଦୀୟ ଚରଣେ ଖଟିବାକୁ । ୭୯୦ ।
ଅମ୍ଭ ବେନିଙ୍କଠାରେ ହୋଇ କରୁଣାଭର ।
ଏ କରିବା ଅପରାଧ ସବୁ କ୍ଷମା କର । ୭୯୧ ।
ଶୁଣି ଏମନ୍ତ ବାଣୀ ଶାଶୁ ଶଶୁରଙ୍କର ।
ଅଭୟ ବଚନରେ ଉତ୍ତର ଦେଲେ ହର । ୭୯୨ ।
ପରେ ପ୍ରିୟ ସୁତାକୁ ମେନକା କୋଳ କରି ।
ଉଦ୍ଗାରି କହିଲେ ମୃଦୁ ସ୍ୱରରେ ଏପରି । ୭୯୩ ।
ପତି ଏକା ଦେବତା ଅଟଇ ବନିତାର ।
ପତିଠାରୁ ବଳି ଅନ୍ୟ ଗତି ନାହିଁ ତାର । ୭୯୪ ।
ଏଣୁ ତୁହି ସଦା ପତି ପଦ ସେବା କରି ।
ପତି-ମତାନୁସାରେ ସଞ୍ଚର ନିରନ୍ତର । ୭୯୫ ।
ବନିତା ସ୍ୱଚ୍ଛନ୍ଦା ନୋହୁ ଅଧୀନା ପରର ।
ଏହି ବାକ୍ୟକୁ ଭଲେ ରଖ ମନେ ତୋହର । ୭୯୬ ।
ଏତେକ ଗଦ୍ଗଦେ କହି ସେ ସୁତା-ବତ୍ସଳା ।
ବିଯୋଗ-ଦୁଃଖରେ ମୂର୍ଚ୍ଛି ବିକଳେ କାନ୍ଦିଲା । ୭୯୭ ।
ତା ଦେଖି ସକଳ ସଖୀ ପରିବାରି ଜନ ।
କଲେ ଅଧିକତର ବିଷାଦରେ କ୍ରନ୍ଦନ । ୭୯୮ ।
ମୋଦାପ୍ତ ପୁର ହେଲା କ୍ଷଣକେ ଖେଦଯୁତ ।
ଅହା ! ସଂସାର ସୁଖ ଅଚିର ଅଟଇ ତ । ୭୯୯ ।
ଗୌରୀ ଶୋକାକୁଳେ କିଛି କହି ନ ପାରିଲା ।
ଲୋତକପୂର୍ଣ୍ଣ ଲୋଚନେ ମାତାକୁ ନମିଲା । ୮୦୦ ।
ମେନକାଏ ଜନେ ମାନି ମୌନ ସାନ୍ତ୍ୱନାକୁ ।
ଶୋକ ସମ୍ଭାଳି ଦେଲେ ଆଶିଷ ଗିରିଜାକୁ । ୮୦୧ ।
ପଛକୁ ବୁଲି ବୁଲି ମାତାକୁ ଚାହୁଁଥିଲା ।
ଗିରିଜାକୁ ଘେନି ସଖୀ ସମାଜ ଚଳିଲା । ୮୦୨ ।
ତୋଷି ଦାନେ ଦରିଦ୍ରଙ୍କୁ ସମ୍ମାନେ ବୁଧଙ୍କୁ ।
ଶିବାଯୁକ୍ତ ହୋଇ ଶିବ ଗଲେ କୈଳାସକୁ । ୮୦୩ ।

ମୋଦେ ଦେବଗଣ କର ପୁଷ୍ପବର୍ଷଣକୁ ।
ପ୍ରତପ୍ରସ୍ଥାନ କଲେ ସ୍ୱକୀୟ ସଦନକୁ । ୮୦୪ ।
ସ୍ୱ-ସୁତା-ଜାମାତାଙ୍କୁ କୈଳାସେ ପହୁଞ୍ଚାଇ ।
ବାହୁଡ଼ିଲେ ଗିରିରାଜ ଦୁଃଖୀ ସୁଖୀ ହୋଇ । ୮୦୫ ।
ହିମାଳୟାର୍ଚ୍ଚିତ ହୋଇ ବନ୍ଧୁ ମୁନିମାନେ ।
ପ୍ରମୋଦରେ ପ୍ରବେଶିଲେ ନିଜ ନିଜ ସ୍ଥାନେ । ୮୦୬ ।
ଶିବା-ଶିବ ବିବିଧ ଭଙ୍ଗୀରେ କୈଳାସରେ ।
କେତେକ କାଳ ଯାଏ ବିଳାସ କଲେ ପରେ । ୮୦୭ ।
ସୁର-ସେନାନୀ-ଷଣ୍ମୁଖ ଜନ୍ମି ତାରକକୁ ।
ନାଶିଲେ ଚରିତ ସୁବିଦିତ ଜଗତକୁ । ୮୦୮ ।

## ଯାଜ୍ଞବଲ୍କ୍ୟ, ଭରଦ୍ୱାଜ ସମ୍ବାଦ

ଏପରି ଯାଜ୍ଞବଲ୍କ୍ୟ ମୁଖୁ ଶିବ-ଚରିତ ।
ଶୁଣି ଭରଦ୍ୱାଜ ହେଲେ ଅତ୍ୟନ୍ତ ମୁଦିତ । ୮୦୯ ।
ତା ରୋମାଞ୍ଚିତ ଗାତ୍ର ଅଶ୍ରୁପୂର୍ଣ୍ଣ ନୟନ ।
ଦେଖି ଯାଜ୍ଞବଲ୍କ୍ୟ ମୁନି ବୋଇଲେ ଏସନ । ୮୧୦ ।
ଧନ୍ୟ ତୁମ୍ଭ ଜନ୍ମ ତୁମ୍ଭେ ଅଟ ଶିବଭକ୍ତ ।
ଶିବଭକ୍ତିହୀନ ଜନ ନୁହେ ରାମେସକ୍ତ । ୮୧୧ ।
ରାମ ଗୌରବେ ବିନା ଦୋଷେ ସତୀଜାୟାକୁ ।
ତେଜି ଶିବ ଦେଖାଇଲେ ଭକ୍ତି-ଦୃଢ଼ତାକୁ । ୮୧୨ ।
ତାର ସମ ରାମଭକ୍ତ ରାମପ୍ରିୟ ଏହୁ ।
ସଚରାଚର ବ୍ରହ୍ମାଣ୍ଡେ ନାହିଁ ଆଉ କେହୁ । ୮୧୩ ।
ଅଗେ ତୁମ୍ଭଙ୍କୁ ଶୁଣାଇ ଶଙ୍କର ଚରିତ ।
ଜାଣିଲି ତୁମ୍ଭ ଚିତ୍ତ ରାମଭକ୍ତିରେ ରତ । ୮୧୪ ।
ଏଣୁ ମୁହିଁ ଆନନ୍ଦେ ରାମଲୀଳାକୁ ଏବେ ।
କହିବି, ଶ୍ରବଣ କର ଅତି ଭକ୍ତିଭାବେ । ୮୧୫ ।
ଶ୍ରୀରାମ ଦିବ୍ୟ ଚରିତ ଅଟଇ ଅଶେଷ ।
କୋଟିଏ ଶେଷେ କହିଲେ ତା ନୋହିବ ଶେଷ । ୮୧୬ ।

ତେବେ ହେଲେ ଯେପରି ମୁଁ ଶୁଣିଛି ସେପରି ।
ତୁମ୍ଭଙ୍କୁ କହିବି ଶିବ ରାମଙ୍କୁ ସୁମରି । ୮୧୭ ।
ରାମଚନ୍ଦ୍ର ସୂତ୍ରଧାର ଅତି କୁତୂହଳେ ।
ନିଜ ଭକ୍ତ ଜନର ହୃଦୟ ରଙ୍ଗସ୍ଥଳେ । ୮୧୮ ।
ଭାରତୀ ପୁତ୍ତଳିକାକୁ ସ୍ୱେଚ୍ଛାନୁରୂପରେ ।
ନର୍ତ୍ତୁଏ ସୁଜନ ହିତ ପାଇଁ ଥରେ ଥରେ । ୮୧୯ ।
ରାମଙ୍କୁ ପୁଣି ନମି କହେ ମୁଁ ତତପରତ ।
ଶିବା ଶିବଙ୍କ ନିତ୍ୟ ନିବାସ କୈଳାସ ତ । ୮୨୦ ।
ସେ ଧରବର ଅତି ରମ୍ୟ ତହିଁ ନିର୍ଝର ।
ସିଦ୍ଧ-ଯୋଗିଜ୍ଞାନୀ-ମୁନି-କିନ୍ନର-ନିକର । ୮୨୧ ।
ରହି ଶିବାଶିବଙ୍କୁ ସେବି ମୋଦ ଲଭଇ ।
ହରିହର ବିମୁଖ ଯେ ତାହା ନ ଦେଖଇ । ୮୨୨ ।
ସେ ଗିରିଶିଖରେ ନିତ୍ୟ ନୂତନ ରୂପରେ ।
ଶୋଭେ ଏକ ବଟବୃକ୍ଷ ଅତି ବିଶାଳରେ । ୮୨୩ ।
ତହିଁ ବହେ ମନ୍ଦ ସୁଗନ୍ଧ ଶୀତଳ ବାତ ।
ତାର ଅନାତପ କରେ ଶୀତଳକୁ ଜାତ । ୮୨୪ ।
ତା ମୂଳ କେବେ ହେଲେ ଶିବ ବସିବା ସ୍ଥଳ ।
ଏକେ ତହିଁ ମିଳି ଶମ୍ଭୁ ଲଭି କୁତୂହଳ । ୮୨୫ ।
ଆପଣେ ଉତ୍ତର ବାଘଛାଲକୁ ବସିଲ ।
ମୁନିମାନଙ୍କ ପରି ବସନ ପିନ୍ଧିଥିଲ । ୮୨୬ ।
ସେ ତ କୃପାଳୁ ଜଗତ୍କୁନ୍ଦେନ୍ଦୁ ଦରଗାର ।
ଶାରଦ ପୂର୍ଣ୍ଣଚନ୍ଦ୍ର ମୁଖ ସାରସ ନେତ୍ର । ୮୨୭ ।
ତରୁଣାରୁଣାମ୍ବୁଜଚରଣ ପ୍ରଭୁ ହର ।
ନଖ ଚନ୍ଦ୍ରିକା ହରତ ଭକ୍ତାଜ୍ଞାନ ତମିର । ୮୨୮ ।
ଆଜାନୁଲମ୍ବିତ ବାହୁ ଅର୍ଦ୍ଧେନ୍ଦୁଶେଖର ।
ଭୁଜଙ୍ଗଭୂତିଭୂଷଣ ଜଟା ଗଙ୍ଗାଧର । ୮୨୯ ।
ନୀଳକଣ୍ଠ କାମାନ୍ତକ ଏମନ୍ତ ଦିଶିଲ ।
କି ଅବା ଶାନ୍ତରସ ଅକୃତକ ଧରିଲ । ୮୩୦ ।

ଏମନ୍ତ ସୁପ୍ରସମୟକୁ ଜାଣି ଗିରିସୁତା ।
ପତି ସମୀପକୁ ଯାଇ ହୋଇ ସପ୍ରୀତା । ୮୩୧ ।
ତଦ୍‌ବାମଭାଗେ ବସି ପୂର୍ବ ଜନ୍ମ କଥାକୁ ।
ସ୍ମରି ପୁଣି ଚରଣ ବନ୍ଦି ଭବନାଥକୁ । ୮୩୨ ।
ମନେ ହସି ସକଳ ଲୋକହିତ କଥାକୁ ।
ପୁଚ୍ଛିଲା ପ୍ରକାଶ କରି ଏ ପ୍ରିୟ ଗିରିଶକୁ । ୮୩୩ ।

## ଶିବା-ଶିବ-ସମ୍ବାଦ

ମନାଥ ବିଶ୍ୱନାଥ ସକଳ ଗୁଣଧାମ ।
ଯୋଗ-ଜ୍ଞାନ-ବୈରାଗ୍ୟ-ଖନି ପରମନାମ । ୮୩୪ ।
ତ୍ରିଭୁବନ ବିଖ୍ୟାତ ମହିମ ପୁର ହର ।
ଦାସ କୈଳାସ ଶିବ ସର୍ବଜ୍ଞ ସର୍ବେଶ୍ୱର । ୮୩୫ ।
ସୁରାସୁର-ନର-ନାଗ-ପୂଜିତ ଚରଣ ।
ପାଦ ଦାସୀ ମୁହିଁ ମୋରେ ହୋଇ ସକରୁଣ । ୮୩୬ ।
ମୋ ଯୋଗ୍ୟତାକୁ ବିଚାରି ଶ୍ରୀରାମଚରିତ ।
କହି ମୋର ଅଜ୍ଞାନକୁ ବିନାଶ ତ୍ୱରିତ । ୮୩୭ ।
କଳ୍ପତରୁର ତଳେ ଥାଏ ମନ୍ଦର ଯାର ।
ନ ଥାଏ କେବେ ହେଲେ ଦାରିଦ୍ର୍ୟ ଦୁଃଖ ତାର । ୮୩୮ ।
ହେ ସୁରେନ୍ଦୁ ବହ୍ନିନେତ୍ର ! ତୁମ୍ଭ ଦାସୀ ମୁଁ ତ ।
ମୋ ଚିତ୍ତେ ଅଜ୍ଞାନ ତମଃ ସ୍ଥିତ ଅନୁଚିତ । ୮୩୯ ।
ରାମଙ୍କୁ ବ୍ରହ୍ମବାଦୀମାନେ ବ୍ରହ୍ମ ବୋଲନ୍ତି ।
ତାଙ୍କୁ ବେଦେ ପୁରାଣେ ବାଣୀ ଶେଷ ଘୋଷନ୍ତି । ୮୪୦ ।
ପୁଣି ତୁମ୍ଭେ ମୁଦେ ସଦା ଜପ ତା ନାମକୁ ।
ସେହି ଜନ୍ମିଥିଲା କି ସାକେତ-ଭୂନାଥଙ୍କୁ ? ୮୪୧ ।
ତାହା ହେଲେ ସେ ତ ଅଜ ନିର୍ଗୁଣ କିମ୍ପାଇଁ ।
ଭୂମିରେ ଜନ୍ମି ଭ୍ରମିଲା ଭାର୍ଯ୍ୟାକୁ ହରାଇ । ୮୪୨ ।
ତା ମହତ୍ୱ ଶୁଣିଛି ବନେ ଦେଖିଛି ମୁହିଁ ।
ମାତ୍ର ସନ୍ଦେହ ଅଦ୍ୟାପି ମନୁଁ ନ ଛାଡ଼ଇ । ୮୪୩ ।

ଯଦ୍ୟ ସେ ଅନୀହ ବିଭୁ ବ୍ୟାପକ ପ୍ରଜ୍ଞାନ ।
ତାକୁ କେମନ୍ତ ଆଚ୍ଛାଦି ପାରିଲା ଅଜ୍ଞାନ । ୮୪୪ ।
ମୁହିଁ ଜ୍ଞାନହୀନା କିଛି ବୁଝି ପାରୁନାହିଁ ।
ତୁମ୍ଭେ ବୋଧି ନୋହି କହ ମୋତେ ସମଝାଇ । ୮୪୫ ।
ସେ ରହସ୍ୟ ଶ୍ରବଣେ ସ୍ତ୍ରୀ ଅନଧିକାରିଣୀ ।
ବୋଲ ନାହିଁ ମୁହିଁ ତ ତୁମ୍ଭ ଅର୍ଦ୍ଧାଙ୍ଗୀ ପୁଣି । ୮୪୬ ।
ତୁମ୍ଭ ପାଦସେବାରେ ସର୍ବଦା ମୁଁ ନିରତା ।
ବିଶେଷରେ ସେ କଥା ଶ୍ରବଣେ ଉତ୍କଣ୍ଠିତା । ୮୪୭ ।
ମୋହର ପ୍ରଣତି ଘେନି କୃପାତରେ କରେ ।
ରାମ ଚରିତକୁ ମୋତେ କହ ସମଗ୍ରରେ । ୮୪୮ ।
ମୂଳାରେସୁ ରାମତତ୍ତ୍ୱ ଜ୍ଞାନଭକ୍ତିଯୋଗ ।
ବୈରାଗ୍ୟକୁ ବଖାଣି ଏବେ କର ବିଭାଗ । ୮୪୯ ।
ହେ ସର୍ବଜ୍ଞ ! ତୁମ୍ଭେ ତ୍ରିଲୋକ ଗୁରୁ ସେ ସାର ।
ତତ୍ତ୍ୱକୁ ପ୍ରକାଶି କର ପରିତ୍ରାଣ ମୋର । ୮୫୦ ।
ଏମନ୍ତ ଉମାର ପ୍ରଶ୍ନ ଶୁଣି ମହେଶ୍ୱର ।
ପ୍ରମୋଦ ପାରାବାରେ ମଗ୍ନ ହେଲେ ସତ୍ୱର । ୮୫୧ ।
ତା ହୃଦୟେ ହେଲା ରାମ ଚରିତ ସ୍ଫୁରିତ ।
ଅପଘନ ବିରାଜିଲା ହୋଇ ପୁଲକିତ । ୮୫୨ ।
ଆନନ୍ଦାଶ୍ରୁ ପୂର୍ଣ୍ଣନେତ୍ର ମୁଦ୍ରିତ ହୋଇଲା ।
ମନ ଘଡ଼ିଏ ଯାଏ ରାମ ଧ୍ୟାନେ ଲାଗିଲା । ୮୫୩ ।
ପରେ ଚେତି ସେ ପ୍ରସନ୍ନ ହୋଇ ଗିରିଜାକୁ ।
ପ୍ରଶଂସି କହିଲେ ଏହେନ ଶ୍ରୀରାମ କଥାକୁ । ୮୫୪ ।
ଯାକୁ ନ ଜାଣିଲେ ରଜ୍ଜୁ ଭୁଜଙ୍ଗ ପରାୟେ ।
ଅଳୀକ ବସ୍ତୁ ସତ୍ୟସ୍ୱରୂପେ ଜଣାଯାଏ । ୮୫୫ ।
ଯାକୁ ଜାଣିଲେ ଭ୍ରମମୟ ବିଶ୍ୱ ନ ଥାଏ ।
ଚେତନା ପରେ ସ୍ୱପ୍ନଦୃଶ୍ୟ ପଦାର୍ଥ ପ୍ରାୟେ । ୮୫୬ ।
ଯେ ଦଶରଥଅଙ୍ଗଣକ୍ରୀଡ଼ାକର ବାଳକ ।
ଯେ ମଙ୍ଗଳାଳୟ ଯେ ଅମଙ୍ଗଳହାରକ । ୮୫୭ ।

ଯା ନାମ ଜପିବା ମାତ୍ରେ ଭ୍ରାନ୍ତି ଘୁଚଇ ।
ସେ ରାମଙ୍କୁ ସଦା ମୁଁ ସାଷ୍ଟାଙ୍ଗେ ପ୍ରଣମଇଁ । ୮୫୮ ।
ଶିବରାଜକୁମାର ! ଧନ୍ୟ ମନ ତୁମ୍ଭର ।
ଯେଣୁ ରାମଲୀଳା ଶୁଣିବାକୁ ସେ ତତ୍ପର । ୮୫୯ ।
ହରିଲୀଳାମୃତ ପାନ ନ କରିବା କାନ ।
ଘୋରପନ୍ନଗଗଣବାସ ବଲ୍ମୀକ ସମାନ । ୮୬୦ ।
କେଶବଦାସ ଦର୍ଶନ ନ କରିବା ନେତ୍ର ।
ମୟୂରଚନ୍ଦ୍ରିକା ତୁଲ୍ୟ ପୁଣି ଅପବିତ୍ର । ୮୬୧ ।
ଗୋବିନ୍ଦଙ୍କୁ ଗୁରୁଙ୍କୁ ନ ପ୍ରଣମିବା ଶିର ।
ଶିର ନୁହେ ସେ କେବଳ କୁମ୍ଭୀର-ଖର୍ପର । ୮୬୨ ।
ସୀତା-ରାମ-ଗୁଣକୁ ନ ଗାଇବା ରସନା ।
କହୁଯାଏ ଭେକ-ଜିହ୍ୱା ସଦୃଶ ଗଣନା । ୮୬୩ ।
ରାମ ଲୀଳା-ରସେ ନ ତରଳିବା ମାନସ ।
ଅଟଇ ଅତି କଠୋର କୁଳିଶ ସଦୃଶ । ୮୬୪ ।
ମାଧବ-ଭକ୍ତି-ହୀନ ହୋଇଥିବା ମାନବ ।
ନିଶ୍ଚୟରେ ଗତାଗତ କରୁଥିବା ଶବ । ୮୬୫ ।
ଜଗତର ହିତ ପାଇଁ ପ୍ରବୃତ୍ତି ଯାହା ।
ମନ ଦେଇ ଶୁଣ ଏବେ କହଇ ମୁଁ ତାହା । ୮୬୬ ।
ବିବୁଧାଳି ପାଳିତ କାମଧେନୁ ପରାଏ ।
ବିବୁଧାରାଧ୍ୟ ରାମକଥା ବାଞ୍ଛା ପୂରଏ । ୮୬୭ ।
ନଷ୍ଟେ ଉଡ଼ାଇବାକୁ ସନ୍ଦେହ-ବିହଙ୍ଗାଳି ।
ସୁନ୍ଦର ରାମ-ଚରିତ ଅଟେ କରତାଳି । ୮୬୮ ।
ସେ ପୁଣି କଳି-କଲୁଷ-ପାଦପ କୁଠାର ।
ତାପତ୍ରୟ-ତୂଳପୁଞ୍ଜ ପ୍ରଚଣ୍ଡ ସମୀର । ୮୬୯ ।
ରାମ ଯେମନ୍ତ ତାହାର ଚରିତ ତେମନ୍ତ ।
ଅଗାଧ ଅବୋଧ ଶୁଦ୍ଧ ଅନାଦି ଅନନ୍ତ । ୮୭୦ ।
ତେବେ ହେଁ ତୁମ୍ଭ ପାଇଁ କହିବି ତା କଥନ ।
ଯେତେକ ମୋ ବୁଦ୍ଧି କରିପାରିବ ଗ୍ରହଣ । ୮୭୧ ।

ଯେମନ୍ତ ଅନ୍ଧ ଦେଖି ନ ପାରି ସ୍ୱରୂପକୁ ।
ମଳିନ ବୋଲି ନିନ୍ଦା କରଇ ମୁକୁରକୁ । ୮୭୨ ।
ତେମନ୍ତ ମୋହାନ୍ଧ ନ ବୁଝି ରାମ ତତ୍ତ୍ୱକୁ ।
ନିରର୍ଥକ ବୋଲି ତ୍ୟାଗ କରଇ ବେଦକୁ । ୮୭୩ ।
କାମାଦିଗ୍ରସ୍ତ ଚିତ୍ତକୁ କିପରି ରାମର—
ଅତୀନ୍ଦ୍ରିୟ ନିର୍ମଳ ତତ୍ତ୍ୱ ହେବ ଗୋଚର ? ୮୭୪ ।
ମୋହ-ମଦ୍ୟ ମତ୍ତ ନର ଅହଂଭାବଯୁତ ।
ତା ପ୍ରଳାପ ଶ୍ରବଣ କରିବା ଅନୁଚିତ । ୮୭୫ ।
ନିର୍ଗୁଣର ସଗୁଣର ନାହିଁ କିଛି ଭେଦ ।
ଏ ବିଷୟ ସୁସ୍ପଷ୍ଟରେ ଉଦ୍‌ଘୋଷଇ ବେଦ । ୮୭୬ ।
ଅଜ ନିର୍ଗୁଣ ରୂପହୀନ ବ୍ରହ୍ମ, ସ୍ୱଭକ୍ତ ।
ହିତ ପାଇଁ ସ୍ୱରୂପରେ ହୁଏ ଗୁଣଯୁକ୍ତ । ୮୭୭ ।
ହିମଜଳ କରକା ହେବା ପରି ନିର୍ଗୁଣ ।
ବ୍ରହ୍ମ ସଗୁଣ ହୋଇ କରେ ଭ୍ରମୋତ୍ପାଦନ । ୮୭୮ ।
ଭ୍ରମ-ତିମିର-ରବି ଅଟଇ ରାମନାମ ।
ଶ୍ରଦ୍ଧାରେ ତାକୁ ଜପିଲେ ଭ୍ରମ ହୁଏ ବାମ । ୮୭୯ ।
ରାମ ସଚ୍ଚିଦାନନ୍ଦ ସ୍ୱପ୍ରକାଶ ନିରୀହ ।
ତାଠାରେ କେହ୍ନେ ଥିବ ଅଜ୍ଞାନ କିବା ମୋହ । ୮୮୦ ।
ଅହଙ୍କାର ଆମୋଦ ଖେଦ ଜ୍ଞାନ ଅଜ୍ଞାନ ।
ଏମାନ ଜୀବର ଗୁଣ ବୋଲି ମନେ ଘେନ । ୮୮୧ ।
ରାମ ବ୍ରହ୍ମ ପୂର୍ଣ୍ଣ-ପୁରୁଷ ରଘୁନାଥ ।
ସର୍ବମସ୍ତ ସର୍ବେଶ୍ୱର ପରେଶ ମୋ ନାଥ । ୮୮୨ ।
ଯେମନ୍ତ ମେଘ ରୋଧେ ଶିଶୁ ଦେଖି ନ ପାରି ।
ଭାବଇ ଅସ୍ତମିତ ହୋଇଲା କୁମୁଦାରି । ୮୮୩ ।
ତେମନ୍ତ ମୋହବଶେ ଅଜ୍ଞ ଜାଣି ନ ପାରି ।
ସର୍ବେଶ ନାହିଁ ବୋଲଇ ବାତୁଳ ବାଗୁଳ । ୮୮୪ ।
ନେନଗତାଙ୍ଗୁଳିଦ୍ୱାରା ଶଶିଯୁଗ ଦିଶେ ।
ରାମ ଲଭିଲେ ପ୍ରତୀତ ହୁଏ ମୋହବଶେ । ୮୮୫ ।

ଆକାଶେ ତମୋଧୂମ ଧୂଳି ଥିବା ପରାୟେ ।
ପରଂବ୍ରହ୍ମରେ ନିର୍ଗୁଣଯୁକ୍ତ ମାୟା ଥାଏ ।୮୮୬।
ବିଷୟ ଇନ୍ଦ୍ରିୟ ତଦ୍‌ଦେବତା ଜୀବ ବୃନ୍ଦ ।
ଏକଠାରୁ ଅନ୍ୟ ଅଟେ ଚେତନାରେ ଭିନ୍ନ ।୮୮୭।
ଏ ସବୁଙ୍କର ଜଗତ ପ୍ରକାଶକ ରାମ ।
ସାକେତେଶ ମାୟାଧୀଶ ଜ୍ଞାନ-ଗୁଣ ଧାମ ।୮୮୮।

ଚୈତନ୍ୟତାର ମାୟା ସମ୍ମୋହାଦରେ ଶୋହେ ।
ଶୁକ୍ତିରେ ରୌପ୍ୟ ମରୀଚିକାରେ ଜଳ ପ୍ରାୟେ ।୮୮୯।
ମରୀଚିକାର ସଲିଳ ଶୁକ୍ତିର ରଜତ ।
ତ୍ରିକାଳ ମିଥ୍ୟା ହେଲେହେଁ ସେ ଭ୍ରମ ଅହତ ।୮୯୦।
ମାୟାସଂସାର ଅସତ୍ୟ ହୋଇ ରାମାଶ୍ରିତ ।
ହେଲେ ମଧ୍ୟ ଭ୍ରମରୁ ଦୁଃଖକର ସତତ ।୮୯୧।
ସ୍ୱପ୍ନରେ ନିଜ ଶିର ଛେଦିତ ହେଲେ ନର ।
ଜାଗିବା ଯାଏ ଦୁଃଖେ ହୁଏ ତ ଜରଜର ।୮୯୨।

ଯେ କୃପାଳୁ, ଯା ଆଦ୍ୟନ୍ତ ବେଦ ନ ଜାଣଇ ।
ସେ ରାମର କୃପା ବିନା ଭ୍ରମ ନ ତୁଟଇ ।୮୯୩।
ସେ ତ କର୍ଣ୍ଣ ବିନା ଶୁଣେ, ପାଦ ବିନା ଚଳେ ।
ତୁଣ୍ଡ ବିନା ରସ ସ୍ୱାଦେ, ଜିହ୍ୱା ବିନା ବୋଲେ ।୮୯୪।
ନାସା ବିନା ଶୁଙ୍ଘଇ, ତନୁ ବିନା ସ୍ପର୍ଶଇ ।
ନେତ୍ର ବିନା ଦେଖଇ, କର ବିନା କରଇ ।୮୯୫।
ଏପରି ସବୁ ତାହାର ଅଲୌକିକ କର୍ମ ।
କିଏ ଜାଣି ପାରିବ ତା ମହିମାର ମର୍ମ ।୮୯୬।

ସେହି ବେଦ-ସ୍ତୁତ୍ୟ ମୁନିଧ୍ୟେୟ ଭଗବାନ ।
ଭକ୍ତହିତ ପାଇଁ ହେଲେ ଦଶରଥନନ୍ଦନ ।୮୯୭।
କାଶୀର ମରଣ କାଳେ ଯାହା ନାମ କହି ।
ପ୍ରାଣୀଙ୍କ ସଂସୃତିରୁ ରକ୍ଷା କରଇ ମୁହିଁ ।୮୯୮।
ସେହି ସକଳାନ୍ତର୍ଯାମୀ ରଘୁକୁଳ-ବୀର ।
ପଦ୍ମ ଚରଣଙ୍କର ପୂଜକ ଅଟେ ମୋର ।୮୯୯।

ତା ନାମକୁ ବିବଶରେ ଉଚ୍ଚାରିବା ଜନ ।
ବହୁଜନ୍ମାପ୍ତ ପାପକୁ କରଇ ଦହନ । ୯୦୦ ।
ସାଦରେ ସ୍ମରିବା ନର ଗୋଷ୍ପଦକୁ ପରି ।
ଘୋର-ଭବ-ସାଗରକୁ ଯାଏ ହେଲେ ତରି । ୯୦୧ ।
ରାମ ତ ପରମାତ୍ମା ତାରେ ସନ୍ଦେହ କଲେ ।
ଜ୍ଞାନ ବୈରାଗ୍ୟ ପ୍ରଭୃତି ଗୁଣଗଣ ଚଳେ । ୯୦୨ ।
ଏମନ୍ତ ଭବହର-ଗିର ଭବ ମୁଖରୁ—
ଶୁଣି ଭବାନୀ ବିମୁକ୍ତା ହୋଇ ସନ୍ଦେହରୁ । ୯୦୩ ।
ରାମପାଦ-ଭକ୍ତା ହୋଇ ପ୍ରଣମି ନାଥକୁ ।
ପ୍ରକାଶିଲ ଏହି ପ୍ରେମ ପୂର୍ଣ୍ଣ ବଚନକୁ । ୯୦୪ ।
ସଂଶୟ ଶାରଦାତପ ତାପକୁ ମୋହର ।
ହରିଲ ତୁମ୍ଭ ବଚନ-ସୁଧାକର-କର । ୯୦୫ ।
ରାମ-ରୂପ-ତତ୍ତ୍ୱକୁ ଏବେ ଜାଣି ପାରିଲି ।
ତୁମ୍ଭ ଅପାର କୃପାରୁ ଧନ୍ୟା ମୁଁ ହୋଇଲି । ୯୦୬ ।
ମାତ୍ର ମୁଁ ବାଞ୍ଛଇ ତାହା କଥା ଶୁଣିବାକୁ ।
ପୂରାଅ ମୋ ବାଞ୍ଛାକୁ କହି ସମଗ୍ରେ ତାକୁ । ୯୦୭ ।
ଏତେ ଶୁଣି ଶଙ୍କର ମଜ୍ଜି ଭକ୍ତି-ରସରେ ।
ଉମା ମୁଖକୁ ଦେଖି କହିଲ ଏ ରୀତରେ । ୯୦୮ ।

## ଅବତାର କାରଣ

ଯେବେ ଦୁଷ୍ଟେ ପ୍ରବଳ କରନ୍ତି ଧର୍ମହାନି ।
ସାଧୁଜନଙ୍କୁ ବାଧନ୍ତି ହୋଇ ଅଭିମାନୀ । ୯୦୯ ।
ତେବେ ହରି ଅବତରି ଦୁଷ୍ଟଙ୍କୁ ସଂହାରି ।
ପାପକୁ ନାଶି ସୁଜନ କଷ୍ଟକୁ ନିବାରି । ୯୧୦ ।
କରନ୍ତି ଗତ ଧର୍ମକୁ ପୁଣି ସଂସ୍ଥାପନ ।
ଏ ପଦ୍ଧତି ଜଗତରେ ଅଟେ ସନାତନ । ୯୧୧ ।
ରାମଚନ୍ଦ୍ରାବତାରର କାରଣ ବହୁତ ।
ଏକରୁ ଅପର ଅଟେ ବଡ଼ ଅଚମ୍ଭିତ । ୯୧୨ ।

ତହୁଁ ଏକ ଦୁଇ ମୂର୍ତ୍ତି କରଇ ବର୍ଣ୍ଣନ ।
ଧରବରପୁତ୍ରୀ ! ଏବେ ସାବଧାନେ ଶୁଣ । ୯୧୩ ।

ହରିର ଖ୍ୟାତ-ଦ୍ୱାରପାଳ ଜୟ ବିଜୟ ।
ବିପ୍ର ଶାପୁଁ ଜନ୍ମିଲେ ହୋଇ ଦୈତ୍ୟ ତନୟ । ୯୧୪ ।

ହେମକଶିପୁ ହେମନେତ୍ର ନାମ ବହିଲେ ।
ପ୍ରତାପେ ପ୍ରଚଣ୍ଡ ହୋଇ ଦେବଙ୍କୁ ବାଧିଲେ । ୯୧୫ ।

ତପସ୍ୱୀମାନଙ୍କୁ ଦେଲେ ନାନାବିଧ କଷ୍ଟ ।
ତାଙ୍କ ଧୃଷ୍ଟତାରୁ ମର୍ତ୍ତ୍ୟେ ଧର୍ମ ହେଲା ନଷ୍ଟ । ୯୧୬ ।

ହରି କିଟିରୂପେ ହେମନେତ୍ରକୁ ମାରିଲା ।
ନୃହରି ହୋଇ ହେମକଶିପୁକୁ ଚିରିଲା । ୯୧୭ ।

ହେମକଶିପୁ-ସୁତ ପରମ ଭାଗବତ ।
ପ୍ରହ୍ଲାଦ ନାମେ ଖ୍ୟାତ, ପ୍ରସିଦ୍ଧ ତା ଚରିତ । ୯୧୮ ।

ପରେ ସେ ସହୋଦର ଦ୍ୱୟ ଦ୍ୱିତୀୟ ବାର ।
ଜନମିଲେ ପୁଣି ବହୁ ରାକ୍ଷସ ଶରୀର । ୯୧୯ ।

ରାବଣ କୁମ୍ଭକର୍ଣ୍ଣ ନାମେ ହୋଇ ବିଖ୍ୟାତ ।
ବଳରେ ପ୍ରବଳ ଯୁଦ୍ଧେ ଜିଣି ସୁରବ୍ରାତ । ୯୨୦ ।

ସାଧୁଜନଙ୍କୁ ବହୁତ ବାଧା କରିଲେ ।
ବର୍ଣ୍ଣାଶ୍ରମ ଧର୍ମକୁ ସମୂଳେ ବିନାଶିଲେ । ୯୨୧ ।

ଜନ୍ମତ୍ରୟ ପରେ ମୁକ୍ତ ହେବାକୁ ସେ ବେଳ ।
ଶାପାବସାନ ବିପ୍ର କହିଥିଲେ ସେ ଘେନ । ୯୨୨ ।

ହରି-କରେ ହତ ହୋଇଥିଲେ ହେଲେ ତେବେ ।
ମୁକତି ଲଭି ନ ପାରି ସମ୍ଭବିଲେ ଏବେ । ୯୨୩ ।

କୃପାଳୁ ହରି ବାଞ୍ଛିଲେ ପୁଣି ଅବତରି ।
ବିଶ୍ୱ ରକ୍ଷିବାକୁ ସେ ଦୁହିଙ୍କ ହତ କରି । ୯୨୪ ।

ଏ ପରଶାବତାରର ଜନନୀ ଜନକ ।
କୌଶଲ୍ୟା ଦେବୀ ଦଶରଥ ନରନାୟକ । ୯୨୫ ।

ସେ ଦୁହେଁ ପୂର୍ବଜନ୍ମରେ ଅଦିତି କଶ୍ୟପ ।
ଏ ଅବତାରେ ବିତଲେ ଗୋଟିଏ କଳପ । ୯୨୬ ।

ଅନ୍ୟ କଳ୍ପେ ଜଳନ୍ଧର ନାମକ ଦାନବ ।
ଜନ୍ମାଇଲା ଦେବଙ୍କ ମନେ ଅତି ସାଧ୍ୱସ । ୯୨୭ ।
ସୁରଗଣ ପ୍ରାର୍ଥିତ ହୋଇ ଶମ୍ଭୁ ତା ସଙ୍ଗେ ।
ଯୁଝି ତାକୁ ଜିଣି ନ ପାରିଲେ ରଣରଙ୍ଗେ । ୯୨୮ ।
ତା ପତ୍ନୀର ସତୀତ୍ୱ-ପ୍ରଭାବୁଁ ସେ ଅସୁର ।
ହୋଇଥିଲା ଅତିବଳ ଅଜର ଅମର । ୯୨୯ ।
ହରି କପଟରେ ସେ ସତୀର ସତୀତ୍ୱକୁ—
ହରି ଅଟଇଲେ ସୁରସମୂହ ହିତକୁ । ୯୩୦ ।
ପଛେ ସେ ରମଣୀ ଜାଣି ସମସ୍ତ ମର୍ମକୁ ।
କୋପ ଭରେ ଭରେ ଶାପ ଦେଲା କେଶବଙ୍କୁ । ୯୩୧ ।
ତା ଶାପ ସଫଳ କରିବାକୁ ନିଜେ ହରି ।
ରାମ ହୋଇ ରାବଣ ଜଳନ୍ଧରଙ୍କୁ ମାରି । ୯୩୨ ।
ବଧ କରି ତାକୁ ତାଙ୍କର ପ୍ରସ୍ଥାନରେ ।
ବାସ ଦେଲେ ଆପଣାର ପରମ ପଦରେ । ୯୩୩ ।
ଅପର କଳ୍ପେ ନାରଦ ମୁନି ଶାପ ଦେଲେ ।
ତେଣୁ ମର୍ତ୍ତ୍ୟେ ଶ୍ରୀରାମ ସମ୍ଭବିବାକୁ ହେଲେ । ୯୩୪ ।
ଶୁଣି ସେ ଅବତାର ନାନାବିଧ କାରଣ ।
ବର୍ଣ୍ଣିଅଛନ୍ତି ବହୁବିଧେ ମୁନି କବିଗଣ । ୯୩୫ ।
ଏତେ ଶୁଣି ଗିରିଜା ଏମନ୍ତ ପଚାରିଲେ ।
କେଉଁ ଅପରାଧକୁ ମାଧବ ଆଚରିଲେ । ୯୩୬ ।
କି ହେତୁରୁ ନାରଦ ମୁନି ଦେଲେ ଶାପକୁ ।
ଶୁଣିବାକୁ ମୁଁ ବ ଛିଡ଼ିବ ମନର ମୋହକୁ । ୯୩୭ ।

## ନାରଦ ଦର୍ପ

ଗୌରୀର ଏ ପ୍ରଶ୍ନକୁ ଶୁଣି ଶିବ ବୋଇଲେ ।
ହିମଗିରିରେ ଏକ ପୂତ ଗହ୍ୱର ଥିଲା । ୯୩୮ ।
ତାକୁ ଲଗି ଜାହ୍ନବୀ ବହେ ତା ନିକଟେ ।
ତପସ୍ୱି ପ୍ରବରଙ୍କ ପ୍ରବର ପ୍ରକଟେ । ୯୩୯ ।

ସେ ଗୁହାର ରମ୍ୟତାକୁ ଲକ୍ଷ୍ୟ ନାରଦ ।
ତହିଁ ବସି ଧ୍ୟାୟି ନୂଷ ଚନ୍ଦ୍ର ହରପଦ । ୯୪୦ ।
ଏକାନ୍ତ ସମାଧିରେ ମଗ୍ନ ହୋଇ ରହିଲେ ।
ସେ ସମ୍ବାଦ ଶୁଣି ଶକ୍ର ଚିତ୍ତ ଚମକିଲେ । ୯୪୧ ।
ଭୟେ ସେ ଅଧୀର ନିଜ ପଦସ୍ଖଳସାରୁ ।
ମୁନି ତପ କରେ ବୋଲି ଭ୍ରମେ ଭାବିବାରୁ । ୯୪୨ ।
କାମକ୍ରୋଧାସକ୍ତ ଜୀବ ଏହି ଜଗତରେ ।
ଲୁହଲେ ବାପୁଏ ପର ସମ୍ପତ୍ତିକୁ ଡରେ । ୯୪୩ ।
ଶ୍ୱ ନ ଶୁଣିଲେ ହାଡ଼ ଖଣ୍ଡେ କୈବାଡ଼ ଆଣ ।
ସିଂହକୁ ଦେଖି ଭାବେ ଆସିଛି ବାଣ୍ଟ ପାଇଁ । ୯୪୪ ।
ସେପରି ନିଜ ପୁରୀ ହୁଛ ହେଉଗଲୁ ମୌନୀ ।
ବାଞ୍ଛି ବୋଲି ଭାବସ ଇନ୍ଦ୍ର ହୋଇ ଅଜ୍ଞାନୀ । ୯୪୫ ।
ପାଇଁ ସେ ପଠାଇଲେ ସସୈନ୍ୟ ଦର୍ପକକୁ ।
ଭାଙ୍ଗିବାକୁ ସତ୍ୱର ନାରଦର ତପକୁ । ୯୪୬ ।
ସ୍ମର ସେ ଅଷ୍ଟମକୁ ଯାଇ ମାୟା ରଚିଲେ ।
ଯେଉଁଠି ଋତୁରାଜ ବସନ୍ତ ବିରାଜିଲେ । ୯୪୭ ।
ନାନା ଲତା ତରୁଚୟ କୁସୁମ ଭରିତ ।
ଶୁକ-ପିକ-ଭୃଙ୍ଗ-ନାଦେ ମାନସ ମୋହିତ । ୯୪୮ ।
ପ୍ରସର ମନ୍ଦ ସୁଗନ୍ଧ ଶୀତଳ ପବନ ।
ରତିପତି-ପାବକକୁ କଲା ଉଦ୍ଦୀପନ । ୯୪୯ ।
କାମକଳାକୁଶଳା ରମ୍ଭାଦି ଦେବାବଳ ।
ସାଇନସ୍ତ ସୁମଧୁର ଗାନେ ପ୍ରବର୍ତ୍ତିଲେ । ୯୫୦ ।
ଏପରି ସାହା ଦେଖି ତୁଷ୍ଟ ହୋଇ ମଦନ ।
ବିଟଲି ବିବଧେ ମୁନି-ବଞ୍ଚନା-ସାଧନ । ୯୫୧ ।
କାମ-ବିକାର ମୁନିଙ୍କ ନ ହେ ହୃଦେ ଗୁହଁ ।
ପଞ୍ଚୀ ମନୋଜ ତମ୍ଭିଲ ଅଡ ଗ୍ରୁତ ପଦ । ୯୫୨ ।
ତାହ ରେ କେବେ କେବେ ହରଂ ରଞ୍ଜିତ ବାଂଗ୍ର ।
ପରାତ୍ପର ନୁଏ ନାହିଁ, ଏ'ନୁର୍ଦେ ଅନ୍ତ୍ର । ୯୫୩ ।

ସସୈନ୍ୟେ ପରାଜିତ ହୋଇଯାଇ ମଦନ ।
ମୁନିଙ୍କ ନମିଲା କହୁ ବିନମ୍ର ବଚନ । ୯୫୪ ।
ରୁଷ୍ଟ କହିନ୍ତି ନାହିଁ ଯେ ସତ୍ତ୍ୱଗୁଣରାଶି ।
ହୃଷ୍ଟ କଲେ ମାରଙ୍କୁ ପ୍ରିୟବାଣୀ ପ୍ରକାଶି । ୯୫୫ ।
କନ୍ଦର୍ପ ନାରଦଙ୍କୁ ପୁଣି ପ୍ରଣାମ କରି ।
ବିଦା ହୋଇ ସେନା ସହ ଗଲା ନିଜପୁରୀ । ୯୫୬ ।

## ନାରଦାଭିମାନ

ତହୁଁ ନାରଦ ସ୍ୱର୍ଗ ଯାଇ ଶଚୀ-ଭର୍ତ୍ତାଙ୍କୁ ।
ସ୍ମର-ଦହନକୁ କହିଲେ ଆହ୍ଲାଦେ ସୁରଙ୍କୁ । ୯୫୭ ।
ଶୁଣି ଚମତ୍କୃତ ହୋଇ ସେମାନେ ମୁନିଙ୍କ ।
ପ୍ରଶଂସି ପ୍ରଣାମ କଲେ ଶ୍ରଦ୍ଧାରେ ହରଷି । ୯୫୮ ।
ସେଠାରୁ ନାରଦ ଶିବ ସମୀପକୁ ଯାଇ ।
କହିଲେ କନ୍ଦର୍ପକୁ ଜିଣି ଥିବା ବଡ଼ାଇ । ୯୫୯ ।
ସେ ବାଣୀ ଶୁଣି ବୋଇଲେ ଶଙ୍କର ଏସନ ।
ନାରଦ ! ମନରେ ଘେନ ମୋ ହିତ ବଚନ । ୯୬୦ ।
କଦାପି ଏ କଥା ନ କହ ହରି ସମ୍ମୁଖରେ ।
ପ୍ରସଙ୍ଗ ପଡ଼ିଲେ ମଧ୍ୟ ରଖ ଗୋପନରେ । ୯୬୧ ।
ସହିବେ ନ ଶୁଣିଲେ ହରି ହିତ-ବାରତା ।
ଭଗବାନଙ୍କ ଇଚ୍ଛା ଅଟେ ତ ବଳବତୀ । ୯୬୨ ।
ଜଗଦୀଶ ଯାହା ବାଞ୍ଛି ତାହା ମାତ୍ର ହୁଏ ।
ତାଙ୍କୁ ଅନ୍ୟଥାରେ କରି ନ ପାରେ କିଏ । ୯୬୩ ।
ମୁନି ନ ମାନି ମହାଦେବଙ୍କ ଭାଷଣ ।
ଦେଖିଣି ଯାଇଗଲେ ନିଜ ପିତୃଭୁବନ । ୯୬୪ ।
ଏଣେ ସେ ବୀଣାପାଣି ହୋଇ ହରିଗୁଣକୁ ।
ଗାନ କରି କରି ଗଲେ କ୍ଷୀର ସାଗରକୁ । ୯୬୫ ।
ସେ ସାଗରର ତ ଅଟଇ ଶୁଭବାସ—
ବେଦାହନାପ୍ରବର ମନୋହର ନିବାସ । ୯୬୬ ।

ମୁନିଙ୍କି ଦେଖି ସାନନ୍ଦେ ଉଠି ତା ସଦ୍ମରେ ।
ଏକାସନେ ବସି ହରି ବୋଇଲେ ଏମନ୍ତେ । ୯୬୭ ।
ମୁନିବର ! ତୁମ୍ଭର ଚିରକାଳଦର୍ଶନ ।
ଭଲ ଅଦ୍ୟ ମୋହର ମୋଦକୁ ବିବର୍ଦ୍ଧନ । ୯୬୮ ।
ତେବେ କଥାବାର୍ତ୍ତାରେ ମୁନି ଜାଣିଥାନ୍ତି ।
କହିଲେ ନ ଯାଣି ରମାକାନ୍ତର ମନାନ୍ତି । ୯୬୯ ।
ସମର ମାୟା ଅତି ଦାରୁଣା ଅଟଇ ତ ।
ତହିଁରେ ଅବା କିଏ ନୋହିବ ବିମୋହିତ । ୯୭୦ ।
ନିନ୍ଦୁ କଟାକ୍ଷେ ମୃଦୁରେ ବୋଇଲେ ମାଧବ ।
ତୋର ସ୍ମରଣେ ମୋହ କାମ ମଦ ତୁଟିବ । ୯୭୧ ।
ଯାହାର ହୃଦୟ ଜ୍ଞାନବୈରାଗ୍ୟ ଶୂନ୍ୟ ।
ତା ମନ ମାତ୍ର ମୋହଲିପ୍ତ ହେ ଜନମାନ୍ୟ । ୯୭୨ ।
ତୋର ପରି ବ୍ରହ୍ମଗୁଣନ୍ତ ବଡ଼ ଟାଣ ।
ତାକୁ ବାଧିପାରିବ କି ସ୍ମର ପୁଷ୍ପବାଣ । ୯୭୩ ।
ଏହି ବାଣୀ ଶୁଣି ମୌନୀ ହୋଇ ଅଭିମାନୀ ।
ବୋଇଲେ ସବୁ ତବ କୃପା ହେ ରମାଜାନି । ୯୭୪ ।
ମାତ୍ର ତା ମନକୁ ଜାଣି କୃପାନିଧି ହରି ।
ଭାବିଲେ ଏହା ହୃଦେ ଗର୍ବ-ତରୁ ଅଙ୍କୁର । ୯୭୫ ।
ବଢ଼ିଅଛି କରିବି ମୁଁ ତାର ଉତ୍ପାଟନ ।
ମୋ ଭକ୍ତ ଅଟଇ ତ ଭକ୍ତହିତସାଧନ । ୯୭୬ ।
ନାରଦର ହିତ ପୁଣି ମୋର କୁତୂହଳ ।
ସାଧିବି ହେବା ଉପାୟ କରଣି ମଙ୍ଗଳ । ୯୭୭ ।
ପରେ ମୁନି ହରିଙ୍କ ପ୍ରଣମି ଅବମାନ—
ସମ୍ପୂର୍ଣ୍ଣ ମାନସରେ ତହୁଁ କରିଲେ ପ୍ରସ୍ଥାନ । ୯୭୮ ।

## ବିଶ୍ୱମୋହିନୀ-ସ୍ୱୟମ୍ବର

ତେବେ ନିଜ ମାୟାକୁ ବିସ୍ତାରି ଦାମୋଦର ।
ପଥେ ରଚିଲେ ଏକ ଅଦ୍ଭୁତ ନଗର । ୯୭୯ ।

ତାର ବିସ୍ତାର ଅଟେ ଏକଶତ ଯୋଜନ ।
ବୈକୁଣ୍ଠନଗରଠାରୁ ସେ ଅତି ଶୋଭନ । ୯୮୦ ।
ସେ ପୁରର ନାରୀ ନର ରତି କାମ ସମ ।
ହୟ ହସ୍ତୀ ସୈନ୍ୟ ଅଗଣିତ ଅନୁପମ । ୯୮୧ ।
ରାଜା ଶୀଳ-ଶୌର୍ଯ୍ୟ-ନୀତି-ରୂପ-ତେଜୋବଳ—
ପୂର୍ଣ୍ଣ, ଭୋଗେ ବିଳାସେ ଶତ ଶକ୍ରଙ୍କ ତୁଲ । ୯୮୨ ।
ବିଶ୍ୱ-ମୋହିନୀ ନାମ୍ନୀ ଅଟଇ ତା ଦୁହିତା ।
ତା ରୂପକୁ ଦେଖି ଲକ୍ଷ୍ମୀ ମଧ୍ୟ ବିମୋହିତା । ୯୮୩ ।
ପୁଣି ସେ ଗୁଣପୂର୍ଣ୍ଣା ତା ସ୍ୱୟମ୍ବର ପାଇଁ ।
ସେ ସ୍ଥାନେ ଉପଗତ ବହୁତ ନରସାଇଁ । ୯୮୪ ।
ମୁନି କୁତୂହଳେ ସେ ପୁରେ ମିଳି ବୃତ୍ତାନ୍ତକୁ ।
ପ୍ରଜା ମୁଖୁଁ ଶୁଣି ଗଲେ ନୃପ ଶୁଦ୍ଧାନ୍ତକୁ । ୯୮୫ ।
ତାଙ୍କୁ ପୂଜା କରି ରାଜା ଦେଖାଇ କନ୍ୟାକୁ ।
ନିବେଦନ କଲେ ଭଲ ମନ୍ଦ କହିବାକୁ । ୯୮୬ ।
ମୁନି ତା ରୂପ ଦେଖି ଭୁଲି ସ୍ୱ-ବିରାଗକୁ ।
ବହୁକାଳ ନିରେଖି ରହିଲେ ତା ଡୌଲକୁ । ୯୮୭ ।
ପୁଣି ତା ଲକ୍ଷଣେ ଅନ୍ତ-ବ୍ୟସ୍ତ ହୋଇଲେ ।
ମାତ୍ର ନିଜ ମନୋମୋଦ ଲୁଚାଇ ରଖିଲେ । ୯୮୮ ।
ପରେ କହିଲେ ଏହାର ରମଣ ଅମର ।
ସମରବିଜୟୀ ନର ସର୍ବ ଚରାଚର । ୯୮୯ ।
ତା ବଚନାକୁ ନ କହି ପ୍ରଶଂସି କନ୍ୟାକୁ ।
ତୁଳାଥିକୁ ଚୋପି ସେ ଗଲେ ଘେନି ବିଦାକୁ । ୯୯୦ ।
ପରେ ପାଇଁ ସେ ପହିଲେ ବି ମୁକ୍ତ କରିବ ।
ମହୀପତି ଦୁହିତାକୁ କେମନ୍ତେ ଲଭିବ ? । ୯୯୧ ।
ଜପେ ତପେ କାଳକ୍ଷେପ ନ କରି ଯେପରି ।
କନ୍ୟା ମୋତେ ବରିବ କରିବ ସେପରି । ୯୯୨ ।
ସେ ମୋତେ ଦେଖିବା ମାତ୍ରେ ମୋ ଗଳାରେ ହାର ।
ଦେବା ରୂପ ସୌନ୍ଦର୍ଯ୍ୟ ମୋହର ଦରକାର । ୯୯୩ ।

ମାଧବଙ୍କୁ ମାଗିବ ମୂର୍ଖ ମୁନିବରଙ୍କୁ ।
ମାତ୍ର ବିଳମ୍ବ ହେବ ବୈକୁଣ୍ଠକୁ ଯିବାକୁ । ୯୯୪ ।
ହରି ପରି ମୋ ହିତୈଷୀ ଅନ୍ୟ କିଏ ନାହିଁ ।
ଏମନ୍ତ ବେଳେ ଅବଶ୍ୟ ସାହା ହେବ ସେହି । ୯୯୫ ।
ଏବେ ଭାବି ସେ ବହୁବିଧେ ସ୍ତବ କରନ୍ତେ ।
କୃପାଳୁ କୌତୁକୀ ପ୍ରଭୁ ପ୍ରତ୍ୟକ୍ଷ ହୁଅନ୍ତେ । ୯୯୬ ।
ମୁନି ଅନ୍ତରେ ସକଳ ବୃତ୍ତାନ୍ତ ଜଣାଇ ।
ବୋଇଲେ ତୋର ରୂପ ଦିଅ ମୋତେ ଗୋସାଇଁ । ୯୯୭ ।
ନୋହିଲେ ସେ କନ୍ୟାକୁ ଲଭି ପାରିବି ନାହିଁ ।
ମୋ-ହିତ ସାଧନ କରେ କର ଭାବଗ୍ରାହୀ ! ୯୯୮ ।
ତା ଶୁଣି ଉଚ୍ଚେ ସ୍ୱ-ମାୟା ବଳକୁ ପ୍ରଶଂସି ।
ରମାକାନ୍ତ ଏମନ୍ତ ବୋଇଲେ ମନେ ହସି । ୯୯୯ ।
ନାରଦ ! ତୋ ପରମ ହିତ ହେବ ଯେମନ୍ତ ।
ନିଃସନ୍ଦେହରେ ମୁହିଁ ଆଚରିବି ତେମନ୍ତ । ୧୦୦୦ ।
ଅପଥ୍ୟ ପଦାର୍ଥକୁ ରୋଗୀ ମାଗିଲେ ହେଲେ ।
ବିଜ୍ଞ ବୈଦ୍ୟ ଦିଏ ନାହିଁ କେଉଁଣସି କାଳେ । ୧୦୦୧ ।
ଏତେ କହି ଶ୍ରୀଧର ଅନ୍ତର୍ଦ୍ଧାନ ହୋଇଲେ ।
ମାୟା-ବିମୋହିତ ତ ତପସ୍ୱୀ ହୋଇଥିଲେ । ୧୦୦୨ ।
ହରିବାଣୀ ଗୂଢ଼ାର୍ଥ ତେଣୁ ଜାଣି ନ ପାରି ।
ସ୍ୱୟମ୍ବର ପ୍ରଦେଶକୁ ବେଗେ ଗଲେ ଫେରି । ୧୦୦୩ ।
ସେ ଭାବିଥିଲେ ଶ୍ରୀହରି-ରୂପରୁ ନିଜର ।
ଆକାର ହୋଇଅଛି ଅତ୍ୟନ୍ତ ମନୋହର । ୧୦୦୪ ।
ସେ କାରଣୁ ତାଙ୍କୁ ଦେଖି ନରପତି-ବାଳା ।
ଆନର କଣ୍ଠେ ଦେବ ନାହିଁ କୁସୁମମାଳା । ୧୦୦୫ ।
ମାତ୍ର ମୁନିର ମଙ୍ଗଳ ନିମିତ୍ତ ଶ୍ରୀହରି ।
ତାଙ୍କୁ ଅତ୍ୟନ୍ତ କୁରୂପୀ ଥିଲେ କରି । ୧୦୦୬ ।
ସ୍ୱୟଂ ବରସ୍ଥାନରେ ମଞ୍ଚପୀଠନିକରେ ।
ବସିଥିଲେ ପରିବାର ସହ ଧନ୍ଦରେ । ୧୦୦୭ ।

କାରଣ ଜାଣି ନ ପାରି ଶଙ୍କି ନାରଦଙ୍କୁ ।
ନମିଲେ ଚକ୍ରରେ ନତ କରି ମସ୍ତକକୁ ।୧୦୦୮।
ତହୁଁ ଛଦ୍ମବେଶେ ଦୁଇ ଶିବଗଣେ ଥିଲେ ।
ସେ ମାନେ ମୁନି ଚରିତ ଜାଣିଥିଲେ ଭଲେ ।୧୦୦୯।
ସେ ଦୁହେଁ ମୁନିର ପୀଠପାର୍ଶ୍ୱ ଦ୍ୱୟେ ବସି ।
ତାଙ୍କୁ ଶୁଣାଇ ଏମନ୍ତ ସମ୍ଭାଷିଲେ ହସି ।୧୦୧୦।
ଏ ତ ଦିଶୁଅଛି କେବଳ ହରି ପରି ।
ଏହାକୁ ନିଶ୍ଚୟରେ ବରିବ ସେ ସୁନ୍ଦରୀ ।୧୦୧୧।
ଏହା ଶୁଣି ମାୟାମୁଗ୍ଧ ମୁନି ହସିଲା ।
ତାଙ୍କ ବକ୍ରୋକ୍ତି-ଭାବକୁ ବୁଝି ନ ପାରିଲା ।୧୦୧୨।
ତେବେ ମାଳା ଧରି ହଂସଗତି ନୃପସୁତା ।
ସଭାମଧ୍ୟେ ପ୍ରବେଶିଲା ହୋଇ ସଖୀଯୁତା ।୧୦୧୩।
ସେ ନାରଦର କପିମୁଖକୁ ଭୟଙ୍କର ।
ସ୍ଥୂଳତନୁକୁ ଦେଖି ତହୁଁ ଗଲା ସତ୍ୱର ।୧୦୧୪।
ଅନ୍ୟାନ୍ୟ ଭୂ-ପତିଙ୍କୁ ବିଲୋକି ଯାଇ ଯାଇ ।
ଏକ ନୃପଗଳାରେ ଦେଲା ମାଳା ଲମ୍ବାଇ ।୧୦୧୫।
ସେ ନୃପ-ରୂପେ ହରି ସେଠାକୁ ଆସିଥିଲା ।
କନ୍ୟା ଘେନି ସେ ତତ୍କ୍ଷଣେ ସେଠାରୁ ଚଳିଲା ।୧୦୧୬।
ତାହା ଦେଖି ନରେନ୍ଦ୍ରବୃନ୍ଦ ହୋଇ ନିରାଶ ।
ସ୍ୱସ୍ୱସ୍ଥାନ କଲେ ତେଜି ଦୀର୍ଘ ନିଃଶ୍ୱାସ ।୧୦୧୭।

## ନାରଦ କୋପ

ମୁନି ଅତି ଦୁଃଖିତ ହୋଇ ମୋହମତରେ ।
ଚକ୍ରିଙ୍କ ପଶ୍ଚାଧନ ଧାଇଁଗଲେ ପଥରେ ।୧୦୧୮।
ହେନ ଦୈବେ ମନେ ହସି ସ୍ୱମୁଖ ମୁକୁରେ—
ଦେଖିବାକୁ ମୁନିଙ୍କ ବହୁ ଲାଗିଲେ ଡରେ ।୧୦୧୯।
ନାରଦ ସ୍ୱବଦନକୁ ବାନର ଭଳିରେ ।
ଶିବଙ୍କୁ ଏମନ୍ତ ଶାପ ଦେଲେ କୋପଭରେ ।୧୦୨୦।

ତୁମ୍ଭେ ତୁହେଁ କପଟୀ ପାପୀ ଦୁଷ୍ଟ ଦାନବ ।
ମୋତେ ହାସ୍ୟ କଲ୍ପ ଫଳ କର ଅନୁଭବ । ୧୦୨୧ ।
ମୋ ଶାପ ଫଳରୁ ତୁମ୍ଭେ ବୁଝିବେ ଏଣିକି—
ଅଟା ଅଭ କଳବ ନାହିଁ ଅନ୍ୟ ମୁନିଙ୍କୁ । ୧୦୨୨ ।
ଏତେ ବୋଲି ପୁଣି ଚଳେ ନାରଦ ପ୍ରହୃତ ।
ରୂପକୁ ଦେଖିଲେ ହେଲେ, ସେ ନୋହୁ ମୁଦିତ । ୧୦୨୩ ।
ନୋହେ ଥରଥର ହୋଇ ବୈକୁଣ୍ଠକୁ ଚଳେ ।
ଯାଉ ଯାଉ ପାଇଲ ଏପରି ସ୍ୱମତରେ । ୧୦୨୪ ।
ହରଙ୍କ ଶାପ ଦେବା ହବା ମୁହିଁ ମହବ ।
ଦୁଃସହ ପରାଭବକୁ କପର ସହିବ । ୧୦୨୫ ।
ତେବେ ପଥେ ସ୍ୱିକଜା ନପଜା ସହିତରେ ।
ଦାନବାର ଦେଖା ଦେଇ ପୁଚ୍ଛିଲ ଆଦରେ । ୧୦୨୬ ।
ମୁନିବର ! କେଉଁଠାରୁ କହୁଛ ଗମନ ?
କାହିଁକି ତୋ ମୁଖ କାନ୍ତି ହୋଇଛି ମଳିନ ? । ୧୦୨୭ ।
ସେପର ହରକ ଦେଖି, ତାର ବାଣୀ ଶୁଣି ।
କ୍ରୋଧରେ ଅଥିର ହୋଇ ମାୟାଗ୍ରସ୍ତ ମୁନି । ୧୦୨୮ ।
ବୋଇଲ ତୋହର ଇର୍ଷା କପଟ ବହୁତ ।
ତୁହି ଅଟୁ ଅବହନ ଗୁଣ-ସମ୍ଭୂତ । ୧୦୨୯ ।
ସିନ୍ଧୁ-ମନ୍ଥନ କାଳେ ବାଇ କର ହରକୁ ।
ପାନ କରାଇଲୁ ତା ମୁଖେ ହଳାହଳକୁ । ୧୦୩୦ ।
ଦେଇ ସୁରା ଅସୁରଙ୍କୁ, ଗରଳ ହରଙ୍କୁ ।
ଅପେ ଅପହରିଲୁ ରମାକୁ କୌସ୍ତୁଭକୁ । ୧୦୩୧ ।
ତୁହି ସ୍ୱାର୍ଥୀ ବୁଝିଲି ବଡ଼ କାଏ ତୋଠାରୁ ।
ନ ଥିବାରୁ ସ୍ୱତନ୍ତ୍ର ହୋଇ କହୁ ଯା ପାରୁ । ୧୦୩୨ ।
ଅନ୍ୟ ପ୍ରାଣୀ ଡ଼ହଳ ବଚଳ ହେଉଥିଲେ ।
ଶୋଚନା ନ କର ତୁହି ମୋଦ ପାଉ ଥିଲେ । ୧୦୩୩ ।
ତୋର ସରଳତା ନାହିଁ କାହାଠାରେ ହେଲେ ।
କେଉଁ କର୍ମ ମଧ୍ୟ ତୋତେ ବାଧେ ନାହିଁ ଟାଳେ । ୧୦୩୪ ।

ତୁମ୍ଭ ଏବେ ଛଳେ କଲ ମୋର ନିବାସକୁ ।
ତା ପ୍ରତିଫଳରୂପେ ଘେନ ମୋ ଏ ଶାପକୁ । ୧୦୩୫ ।
ଯେଉଁ ଦେହ ବହି ମୋତେ କଲ ପ୍ରତାରଣ ।
କଲ ତୁମ୍ଭ କର ସେହି ଦେହକୁ ଧାରଣ । ୧୦୩୬ ।
ତୁମ୍ଭ ମୋତେ କରିଥିଲ ମର୍କଟ ସ୍ୱରୂପ ।
ତେଣୁ ତୋର ଯାହା ହେଉ ମର୍କଟ କଳାପ । ୧୦୩୭ ।

ତୁମ୍ଭ କରିଅଛ ମୋର ବହୁତ ଅନିଷ୍ଟ ।
ଯେ କାରଣରୁ ପାଅ ଜାୟା ବିଚ୍ଛେଦ କଷ୍ଟ । ୧୦୩୮ ।
ଯେ ଶାପ ଦିଅ ମୋତେ ଯେବେ ଦୈତ୍ୟ-ସୂଦନ ।
ପାଇଁକି ଏହା ଅଟେ ସୁର-ହିତ ସାଧନ । ୧୦୩୯ ।
ପରେ ସେ ଋଷି ମାୟାକୁ ସଙ୍କୋଚ କରନ୍ତେ ।
ସିନ୍ଧୁସୁତା ରାଜସୁତା ଅଦୃଶ୍ୟ ହୁଅନ୍ତେ । ୧୦୪୦ ।
ନାରଦ ଜ୍ଞାତ ହୋଇ ନମି ହରି ପାଦକୁ ।
ଏମନ୍ତ ବୋଲନ୍ତି ଲଭି ଅତ୍ୟନୁତାପକୁ । ୧୦୪୧ ।
ହେ ପ୍ରଣତାର୍ତ୍ତି ହର ! ମୋରେ କରୁଣା କର ।
ନିରର୍ଥକ ହୋଇ ଯାଉ ମୋର ଶାପ ଗୀର । ୧୦୪୨ ।
ପାପୀ-ପାପ-ହରଠାରେ ଶାପ ଅଛି ବୋଲି ।
କ୍ଷେପିବା ପାପୀର ପାପ-ଭାର ନୁହେ ତୌଲି । ୧୦୪୩ ।
ଅକାରଣେ ତୋତେ ଶାପ ଦେଇ ମୁହିଁ ଦ୍ରୋହୀ ।
ଅର୍ଜିଲ ପାତକରୁ କିପରି ହେବ ତ୍ରାହି ? ୧୦୪୪ ।
ତା ଶୁଣି ବିଷ୍ଣୁ ବୋଲନ୍ତି ତୋ ଶାପ ସାର୍ଥକ—
ହେବ, ଯେଣୁ ସେ ଅଟେ ଦେବହିତସାଧକ । ୧୦୪୫ ।
ତୁମ୍ଭ ଅନ୍ତରେ ଜପ ଶିବ ନାମ ଶତକୁ ।
ମୋ ନିନ୍ଦନ-ପାତକରୁ ହେବ ମୋଚନକୁ । ୧୦୪୬ ।
ଏ ବ୍ରହ୍ମାଣ୍ଡ ଭିତରେ ଲୋକରେ ବୁଲି ବୁଲି ।
ଜାଣ ନାହିଁ ମୋର ପ୍ରିୟ ସଦାଶିବ ବୋଲି । ୧୦୪୭ ।
ଯାହାରେ କୃପା ନ କରେ ଶିବଭାବ ସାଇଁ ।
ସେ ପ୍ରାଣୀ ମୋର ଭକତ ପଦପାରେ ନାହିଁ । ୧୦୪୮ ।

ଯେବେ ମୋ ବର ମୋତେ ବଶ୍ୟେ ଭବ ଭ୍ରମଣ ।
ମୋ ମାୟା-ଜାଲରେ ଅଛି ନାହିଁ ତୋ ବନ୍ଧନ । ୧୦୪୯ ।
ଏତେ କହି ଭଗବାନ ହେଲେ ଅନ୍ତର୍ଦ୍ଧାନ ।
ମୁନି ସତ୍ୟଲୋକ ଯାଇଁ କଲେ ହରି ଧ୍ୟାନ । ୧୦୫୦ ।
ବାଟରେ ଭେଟିଲେ ସେ ଶିବଗଣଦ୍ୱୟଙ୍କୁ ।
ସେ ଦୁହେଁ ଜଣାଇଲେ ପ୍ରଣମି ନାରଦଙ୍କୁ । ୧୦୫୧ ।
ଅମ୍ଭେ ଶିବ ଲୋକରୁ ଅଟୁ ହରସହଚର ।
ଅମ୍ଭ ଅପରାଧକୁ କୃପାରେ କ୍ଷମା କର । ୧୦୫୨ ।
ତାଙ୍କୁ କୃପାଳୁ ମୁନି କହିଲେ ଏହିପରି ।
ମାୟାମୋହେ ମୁଁ କରିଛି ଅନିଷ୍ଟ ତୁମ୍ଭର । ୧୦୫୩ ।
ମୋ ଶାପାନୁସାରେ ତୁମ୍ଭେ ଦାନବ ହୋଇବ ।
ମାତ୍ର ଅତି ସମର୍ଥ ବଳବୀର୍ଯ୍ୟ ପାଇବ । ୧୦୫୪ ।
ବିଶ୍ୱବିଜୟୀ ହୋଇ ବିସ୍ତାରି ପ୍ରଭାବକୁ ।
ଚରଣେ ଲୋଟାଇବ ବୃନ୍ଦାରକ-ବୃନ୍ଦକୁ । ୧୦୫୫ ।
ତେବେ ହରି ମନୁଜ ହୋଇ ତୁମ୍ଭଙ୍କୁ ରଣେ ।
ବଧ କରି କୈବଲ୍ୟକୁ ଦେବ ସକରୁଣେ । ୧୦୫୬ ।
ଏତେ ଶୁଣି ସେ ବେନି ନମି ମୁନିଙ୍କ ପାଦ ।
ଚଳିଲେ କେତେକାଳ ପରେ ରାକ୍ଷସ ହୋଇ । ୧୦୫୭ ।
ହରି ନର ହେବାକୁ ଏହି ଏକ କାରଣ ।
ଏପରି କଳ୍ପେ କଳ୍ପେ ସମ୍ଭବ ନାରାୟଣ । ୧୦୫୮ ।
ଦୁଷ୍ଟଙ୍କୁ ମାରି ହରି ବସୁନ୍ଧରା-ଭାରକୁ ।
ତୋଷ କରେ ସୁପର୍ବ ସୁଜନ ସମୂହଙ୍କୁ । ୧· ୫୯ ।
ମୋ କଥିତ ଚରିତକୁ ଶୁଣିଲ ସଦାନ୍ତ ।
ନାରଦ ପରି ଜ୍ଞାନୀ ମଧ୍ୟ ମାୟା-ମୋହିତ । ୧୦୬୦ ।
ପୁଣି ସେତ ହରି ଭକ୍ତପ୍ରିୟ ଦୁଃଖହର ।
ଭୌତିକ ସେବାମୂଳକ କରୁଣାସାଗର । ୧୦୬୧ ।
ମାୟାରେ ମୋହିତ ନୋହୁ ସୁରାସୁର-ନର—
କେବେହେଁ କାହିଁ ? ସର୍ବେ ମାୟା-କିଙ୍କର । ୧୦୬୨ ।

ମାୟା ମୁକ୍ତକ ବାଞ୍ଛିବା ପ୍ରାଣୀର ଆଶ୍ରୟ ।
କେମନ୍ତ ମହାମାୟା-ନାଥ ଲକ୍ଷ୍ମୀ-ପ୍ରିୟ । ୧୦୬୩ ।

## ଶତରୂପା ମନୁ ତପ

ଆଉ ଏକ କାରଣରୁ କହୁଛ ଶ୍ରୀରାମ—
ଜନ୍ମିବାକୁ ହୋଇ ରଘୁକୁଳାମ୍ଭୋଧି-ସୋମ । ୧୦୬୪ ।
ଯେ କାଳ ସଙ୍ଗେ ବନେ ବାଳ ପର ବୁଲିଲ ।
ଯା ରୂପେ ସତୀରୂପ ତୁମ୍ଭ ମନ ଭ୍ରମିଲ । ୧୦୬୫ ।
ଅଦ୍ୟାବଧି ତୁମ୍ଭେ ଯାହା ମାୟାମୋହଯୁକ୍ତା ।
ସେ ବୃତ୍ତର କଥା ଶୁଣି ହୁଅ ମାୟାମୁକ୍ତା । ୧୦୬୬ ।
ପୃଥ୍ୱୀର ପ୍ରଥମେଶ ସ୍ୱାୟମ୍ଭୁବ ମନୁ ।
ତାରେ ସୁହୃତା ଶତରୂପା ନାମ୍ନୀ ସୁତନୁ । ୧୦୬୭ ।
ତାଙ୍କ ଜନ୍ମିଲ ଦେହରୁ ମାନବ ମନୁଜ ।
ନାମ୍ନୁପ ହୋଇଲା ନରଙ୍କର ସହଜ । ୧୦୬୮ ।
ସେ ଦମ୍ପତି ନରକୁଳର ଧର୍ମପରାୟଣ ।
ମନୁସ୍ମୃତି ଅଟଇ ସେ ମନୁର ରଚନ । ୧୦୬୯ ।
ଉତ୍ତାନପାଦ ନୃପ ତାହାଙ୍କ ଜ୍ୟେଷ୍ଠସୁତ ।
ଦ୍ୱିତୀୟ ତନୟ ଅଟେ ନାମ ପ୍ରିୟବ୍ରତ । ୧୦୭୦ ।
ଉତ୍ତାନପାଦ ନୃପ ପୁତ୍ର ଧ୍ରୁବ ନାମକ ।
ଯେ ବାଲ୍ୟରୁ ହେଲେ ଶ୍ରୀକାନ୍ତ-ଭକ୍ତ-ନାୟକ । ୧୦୭୧ ।
ପ୍ରିୟବ୍ରତ ନୃପଙ୍କର ଉଦାତ୍ତ ଚରିତ ।
ବେଦ-ପୁରାଣ ପ୍ରକରେ ହୋଇଛନ୍ତି ବର୍ଣ୍ଣିତ । ୧୦୭୨ ।
ସେ ଦମ୍ପତିଙ୍କ ନନ୍ଦନା ଦେବହୂତି ସତୀ ।
କର୍ଦ୍ଦମ ପ୍ରଜାପତିର ପ୍ରାଣ-ପ୍ରିୟବନିତା । ୧୦୭୩ ।
ଯାହାର ଉଦର ଶୁକ୍ତି ମୁକ୍ତା ଫଳ ପର ।
କପିଳ ମୁନିରୂପେ ଅବତରିଲେ ହର । ୧୦୭୪ ।
ଯେ ମୁନିଙ୍କର ସାଂଖ୍ୟଶାସ୍ତ୍ର ଦର୍ଶନଗଣ—
ପ୍ରମୁଖ ହୋଇ କରେ ବୁଧ-ଭକ୍ତ ତୋଷଣ । ୧୦୭୫ ।

ମନୁ ଚିରକାଳ ଧ୍ରୁବ ଧର୍ମମାର୍ଗେ ପାଳି ।
ଭୁଞ୍ଜିଲେ ସକଳ ସୁଖ ଭୋଗ-ବାଡ଼ବାଳି । ୧୦୭୬ ।
ଦିନେ ସେ ମନେ ଭାବିଲେ ହରିଚନ୍ଦ୍ର ବିନା ।
ଅପଣାର ଜୀବନ କେବଳ ବ୍ୟର୍ଥ ସିନା । ୧୦୭୭ ।
ସେ କ୍ଷଣି ସେ ବିରାଗୀ ହୋଇ ରାଜ୍ୟ ମୂଳରୁ ।
ଦେଇ ପତ୍ନୀ ସହ ଗଲେ ନୈମିଷ ବନକୁ । ୧୦୭୮ ।
ସେ ବନ ତ ପବିତ୍ର ସିଦ୍ଧିଦ ସିଦ୍ଧାବାସ ।
ଗୋମତୀ ପ୍ରଭୃତି ପୁଣ୍ୟତୀର୍ଥଙ୍କ ନିବାସ । ୧୦୭୯ ।
ଯେଠାରେ ସେ ମିଥୁନ ପ୍ରବେଶି ବଲ୍କବାସ ।
ପିନ୍ଧି ଧାରଣ କରି ସମ୍ପୂର୍ଣ୍ଣ ଋଷିବେଶ । ୧୦୮୦ ।
ତପସ୍ୱୀଙ୍କ ମେଳେ ହୋଇ ତୀର୍ଥୋଦକ ସ୍ନାତ ।
ଜ୍ଞାନୀଙ୍କ ବଦନରୁ ଶୁଣି ପୁରାଣ-ବ୍ରାତ । ୧୦୮୧ ।
ବାସୁଦେବ-ମୁଖ୍ୟମନ୍ତ୍ର-ପରବଶ ହୋଇ ।
ସଚ୍ଚିଦାନନ୍ଦ ରୂପକୁ ମାନସରେ ଧ୍ୟାଇ । ୧୦୮୨ ।
ଦ୍ୱାଦଶାକ୍ଷର ମନ୍ତ୍ରରାଜକୁ ଜପକଲେ ।
ନିର୍ଗୁଣ-ବ୍ରହ୍ମ-ଦର୍ଶନେ ମନ ବଳାଇଲେ । ୧୦୮୩ ।
ବେଦ ପ୍ରମାଣ ମାନି ତାଙ୍କ ଦୃଢ଼ ବିଶ୍ୱାସ ।
ଯାହାର ଅଂଶ ମାତ୍ର ବିଧି ବିଷ୍ଣୁ ମହେଶ । ୧୦୮୪ ।
ସେ ଅଜ ନିର୍ବିକାର ହେଲେହେଁ ନିରାକାର ।
ସ୍ୱଭକ୍ତ-ହିତ ନିମିତ୍ତେ ହୁଅଇ ସାକାର । ୧୦୮୫ ।
ବର୍ଷାଶୀତାତପକୁ ଭ୍ରୂ ନ କରି ମନେ ।
ନେଲେ କେତେକାଳ ଫଳ-ମୂଳ-ଶାକାଶନେ । ୧୦୮୬ ।
ପରେ ଜଳପାନେ ଛ ହଜାର ବତ୍ସର ।
ପବନାହାରେ ସାତ ହଜାର ସମ୍ବତ୍ସର । ୧୦୮୭ ।
ପୂର୍ବର ନିରାହାର ବ୍ରତେ ଅଦ୍ଭୁତେ ସମ ।
ଏକପାଦେ ସ୍ଥିତ ହେଲେ ସେ ଦମ୍ପତ୍ୟୁତ୍ତମ । ୧୦୮୮
ତାଙ୍କ ଘୋରତପ ଦେଖି ବିଧି ବିଷ୍ଣୁ ହର ।
ତାହାଙ୍କ ସମୀପକୁ ଯାଇ ବହୁତ ଥର । ୧୦୮୯ ।

ଚନ୍ଦ୍ରିକା ସମ ମନ୍ଦହାସ ସ୍ନିଗ୍ଧ ଶୋଭିତ ।

କମ୍ବୁ କଣ୍ଠ ସୁବିଶାଳ ହୃଦୟ ପଙ୍କଜ । ୧୧୦୪ ।

ଶ୍ରୀବତ୍ସ କୌସ୍ତୁଭମଣି ବନମାଳାଧର ।

ମନୋହରକରନ୍ୟସ୍ତ ବରଭୂଷଣର । ୧୧୦୫ ।

ରତ୍ନ କିରୀଟ କୁଣ୍ଡଳ କେୟୂର ସଙ୍କତ ।

ବକ୍ଷାଃସ୍ଥଳେ ପୀତ-ଚେଲ ଶୋଭିତ । ୧୧୦୬ ।

ଆଜାନୁଲମ୍ବିତ ବାହୁ କତ କଟି କର ।

ଯମୁନାତରଙ୍ଗ ଭ୍ରମ ସମ ନାଭିବର । ୧୧୦୭ ।

ମଧ୍ୟ ଜଙ୍ଘ-ଦ୍ୱୟ ବନ୍ଧୁପୁଷ୍ପତୋଦର ।

ପାଦ ଯୁଗ୍ମାବ୍ଜ ହୃଷ୍ଟ ମୁନି-ଚିତ୍ତ-ଭ୍ରମର । ୧୧୦୮ ।

ତା ବାମେ ସ୍ଥିତା ଅଦ୍ଭୁତ ତ୍ରିଗୁଣ-ଗଣା ।

ବିଶ୍ୱସୃଷ୍ଟିକାରିଣୀ ଶକ୍ତି ଯଶ ଜନନୀ । ୧୧୦୯ ।

ଏମନ୍ତ ଅତ୍ୟଦ୍ଭୁତ ସୀତା-ରାମ-ରୂପ ।

ଦେଖି ଅଶ୍ରୁପୂର୍ଣ୍ଣ ନେତ୍ରେ ହୋଇ ସ୍ତମ୍ଭୀ-ରୂପ । ୧୧୧୦ ।

କେତେକ୍ଷଣ ପରେ ଚେତ ପ୍ରଭୁ ବେନିପାଦ ।

ଦ୍ୱୟେ ସାଷ୍ଟାଙ୍ଗେ ନମିଲେ ଲଭି ଅତି ମୋଦ । ୧୧୧୧ ।

ତାଙ୍କୁ ସ୍ତବ କଲେ ତୋଷ କୃପାସାଗର ।

ବୋଇଲେ ମୁଁ ପ୍ରସନ୍ନ ମାଗ ବାଞ୍ଛିତ ବର । ୧୧୧୨ ।

ତାହା ଶୁଣି ମନୁ ହାତ ଯୋଡ଼ି ଧୈର୍ଯ୍ୟ ଧରି ।

ଗଦଗଦ ସ୍ୱରେ ଧୀରେ ଜଣା କଲେ ଏହିପରି । ୧୧୧୩ ।

ହେ ନାଥ ! ତୋର ଚରଣ-ସାରସ ଦର୍ଶନେ ।

ମୋର ମନୋରଥ ପୂର୍ଣ୍ଣ ହୋଇଲା ଯତନେ । ୧୧୧୪ ।

ତଥାପି ଅଛି ଏକ ଲାଳସା ମନେ ଅଛି ।

କହିବାକୁ ମୋ ମନ କୁଣ୍ଠିତ ହେଉଛି । ୧୧୧୫ ।

ନିର୍ଦ୍ଧନ ଜନ ଯାଇ କଳ୍ପତରୁମୂଳକୁ ।

ତା ମହିମା ନ ଜାଣି ମାଗେ ଅଳ୍ପ ଧନକୁ । ୧୧୧୬ ।

ତୁମ୍ଭ ଦାନୀଶ, ତୋର ଅଦେୟ ନାହିଁ କିଛି ।

ତେବେହେଁ ସନ୍ଦେହ ମୋ ଚିତ୍ତକୁ ବାଧୁଅଛି । ୧୧୧୭ ।

ତୁ ସର୍ବଜ୍ଞ ସ୍ୱବଯାନ୍ତ୍ରୀ ସଂତୋଷିତ ଭକ୍ତ ।
ମୁଁ ନ ଜାଣେ ମୋ ସ୍ପୃହା ଯୁକ୍ତ କିବା ଅଯୁକ୍ତ । ୧୧୧୮ ।
ଏମନ୍ତ ସଂଶୟାପନ୍ନ ଭକ୍ତଙ୍କୁ ଅନାଇ ।
ସୁସ୍ମିତରେ ବୋଇଲେ ଲୀଳାଦେହୀର ସାଇଁ । ୧୧୧୯ ।
ନୃପଙ୍କୁ ସଦେହଙ୍କୁ ବରଙ୍କ ମାଗ ବର ।
ପୂର୍ଣ୍ଣ କରିବି ତୋର ବାଞ୍ଛାକୁ ଏ ନଚର । ୧୧୨୦ ।
ପ୍ରଭୁବାଣୀରେ ଧୈର୍ଯ୍ୟ ବାନ୍ଧି ବୋଇଲେ ମନୁ ।
ଶୁଣ ଏବେ ପ୍ରକଟିବି ମୋ ବାଞ୍ଛାକୁ ମନୁ । ୧୧୨୧ ।
ତୋ ଏ ଦିବ୍ୟରୂପ ଦେଖି ତୋ ପରି ନନ୍ଦନ ।
ଲଭିବାକୁ ଅଭିଳାଷ କରଇ ମୋ ମନ । ୧୧୨୨ ।
ମନୁର ଏ ପ୍ରେମପୂର୍ଣ୍ଣ ବଚନକୁ ଶୁଣି ।
ତାହା ଭାବକୁ ଜାଣି ପ୍ରଭୁ 'ତଥାସ୍ତୁ' ଭଣି । ୧୧୨୩ ।
ପୁଣି ବୋଇଲେ ଜଗତେ ତୋ ସମ କିଏ ନାହିଁ ।
ଅବଶ୍ୟ ସମ୍ଭବିବ ତୋର ତନୟ ହୋଇ । ୧୧୨୪ ।
ପରେ କରଯୋଡ଼ି ଥିଲେ ରାଣୀକି ଅନାଇ ।
ବୋଇଲେ ବର ମାଗ ସଂଶୟ କର ନାହିଁ । ୧୧୨୫ ।
ତା ଶୁଣି ସେ ଜଣାଇଲେ ମୋ ଚତୁର ପତି ।
ମାଗିଥିବା ବରେ ମୋର ସମ୍ପୂର୍ଣ୍ଣ ସମ୍ମତି । ୧୧୨୬ ।
ମାତ୍ର ତୁ ତ ସର୍ବଜ୍ଞ ବ୍ରହ୍ମ ସ୍ୱପ୍ରକାଶକ ।
ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତ ପ୍ରପଞ୍ଚ-ଜନକ । ୧୧୨୭ ।
ସମ୍ମତ କଲେ ହେଲେ କଣା ହୋଇ ଚିତ୍ତରେ ।
ସବ ଅମ୍ବର ପୁତ ହେବୁ ତେବେଁ ସ୍ୱତରେ । ୧୧୨୮ ।
ଏ ସଂଶୟ ମୋ ମନକୁ ଅତ୍ୟନ୍ତ ବାଧଇ ।
ପୁଣି ମୁଁ ଜାଣେ ତୋ ବାଣୀ ଅନ୍ୟଥା ନୁହଇ । ୧୧୨୯ ।
ତୋ ବର ଦାନାନ୍ତରେ ହେବୁ ଅମ୍ଭ ସୁତ ।
ତେଣୁକ ମାତେ ତୋ ବାଞ୍ଛା ନୁହେ ସମାପତ । ୧୧୩୦ ।
ତୋ ଭକ୍ତ ବିନୟ ଦେଖି ସୁଖ ଗତ ଜ୍ଞାନ—
ଭକ୍ତି ମୁକ୍ତି, ଯେଉଁ ବର ମୋତେ ପ୍ରଦାନ । ୧୧୩୧ ।

ଏମନ୍ତ ତା ମୃଦୁ ଗୂଢ଼ ରୁଚିର ବଚନ ।
ଶୁଣି କୃପାରେ ଉଠାନ୍ତୁ ହସି ନିରଞ୍ଜନ । ୧୧୩୨ ।
ପୁଣି କହିଲେ ଜନନୀ ! ମୋ ଅନୁଗ୍ରହରୁ ।
କେବେ ନ ପିବ ଅସ୍ତନ ତୋର ଉଦରୁ । ୧୧୩୩ ।
ମନୁ ପୁଣି ପ୍ରଣମି ଜଣାଇଲେ ଏମନ୍ତ ।
ହେ ଭକ୍ତବତ୍ସଳ କୃପା କର ସୀତାକାନ୍ତ । ୧୧୩୪ ।
ତୋ ପାଦାମ୍ବୁଜଯୁଗଳେ ପ୍ରତ୍ୟକ୍ଷେ ଯେବଲ ।
ତେବେହେଁ ପୁତ୍ରୈଷଣରୁ ବିମୁକ୍ତ ନୋହିଲି । ୧୧୩୫ ।
ଏ ସମ୍ବାଦ ଶ୍ରବଣ କରିବା ଜନଚୟ ।
ମୋତେ ଜ୍ଞାନହୀନ ବୋଲି ଭାବିବେ ନିଶ୍ଚୟ । ୧୧୩୬ ।
ମଣି ବିନା ଫଣି-ଫଣା ଜଳ ବିନା ମୀନ ।
ପରାଏ ତୋହ ବିନା ମୋର ଜୀବନ ହୀନ । ୧୧୩୭ ।
ଏତେ କହି ଜଗଦୀଶ-ପାଦଯୁଗଳକୁ ।
ଧରି ମନୁ ଭୂମିଷ୍ଠ ହେଲେ ଭକ୍ତି ପୌନକୁ । ୧୧୩୮ ।
ତେବେ କୃପାଳୁ ପ୍ରଭୁ ବୋଇଲେ ତୋଳି ତାକୁ ।
ଜନକ ! ପୂରିବ ତୋ ବାଞ୍ଛା ବହ ମୁଦକୁ । ୧୧୩୯ ।
ଏବେ ଇନ୍ଦ୍ର ସମ ଭୋଗ ଭୁଞ୍ଜି ସ୍ୱର୍ଗପୁରେ ।
କେତେକାଳ ପରେ ନୃପ ହୁଅ ସାକେତରେ । ୧·୪୦ ।
ତୋ ବାଞ୍ଛାନୁସାରେ ତେବେ ନରାଙ୍ଗ ଧରିବି ।
ତୋ ସୁତ ହୋଇ ଚିତ୍ର-ଅଦ୍ଭୁତ-ଲୀଳା କରିବି । ୧୧୪୧ ।
ଯେ ସେ ଲୀଳାକୁ ଭକ୍ତିରେ ଶ୍ରବଣ କରିବ ।
ସେ ମୋହରୁ ମୁକ୍ତ ପାଇ ସଂସାରୁ ତରିବ । ୧୧୪୨ ।
ଏ ଅଦ୍ଭୁତ ଜଗଜ୍ଜନନୀ ମାୟା ମୋର ।
ଏ ମଧ୍ୟ ଧରଣୀରେ ଲଭିବ ଅବତାର । ୧୧୪୩ ।
ଏହା ସତ୍ୟ ସତ୍ୟ ସତ୍ୟ ବୋଲି ଭଗବାନ ।
ଅଦ୍ଭୁତ ସହିତରେ ହେଲେ ଅନ୍ତର୍ଦ୍ଧାନ । ୧୧୪୪ ।
ସେ ଦମ୍ପତି ହରଷଚିତ୍ତ ହୋଇ ସ୍ନେହ ଛଳେ ।
କେତେକାଳ ରହି ତନୁ ତେଜି ସ୍ୱର୍ଗ ଗଲେ । ୧୧୪୫ ।

## ପ୍ରତାପଭାନୁ-ଚରିତ

ଏବେ ଶୁଣ ଅନ୍ୟ କଥା କେକୟ ନାମକ ।
ଦେଶ ତ ବଖାଣିତ ସତ୍ୟକେତୁ ତା ନାୟକ । ୧୧୪୬ ।
ସେହୁ ଧର୍ମଧୁରନ୍ଧର ସୁନୀତି ନିଧାନ ।
ଶାନ୍ତି ପ୍ରତାପ ସଦ୍‌ଗୁଣ ଅତି ବଳବାନ । ୧୧୪୭ ।
ତାର ବେନିପୁତ୍ର ମାତ୍ର, ସେ ଦୁହେଁ ଜନକ—
ସଦ୍‌ଗୁଣ ସକଳ ପୂର୍ଣ୍ଣ ଗୁଣ ସମ୍ପୂର୍ଣ୍ଣକ । ୧୧୪୮ ।
ଜ୍ୟେଷ୍ଠ ତନୁଜକୁ ରାଜ୍ୟ ସମର୍ପଣ କରି ।
ସେ ଭୂପତି ବାନପ୍ରସ୍ଥ ହେଲେ ହରି ସ୍ମରି । ୧୧୪୯ ।
ପ୍ରଥମଜ ପ୍ରତାପଭାନୁ ହେଲେ ରାଜନ ।
ବଳବାନ ଦ୍ୱିତୀୟ ପୁତ୍ର ଅରିମର୍ଦ୍ଦନ । ୧୧୫୦ ।
ଅଟଇ ସୌହାର୍ଦ୍ଦ ଭ୍ରାତୃଦ୍ୱୟଙ୍କ ମଧ୍ୟରେ ।
ପ୍ରତାପଭାନୁ ପ୍ରଜାଙ୍କୁ ପାଳନ୍ତି ଧର୍ମରେ । ୧୧୫୧ ।
ତାର ମନ୍ତ୍ରୀ ପ୍ରଜ୍ଞାବନ୍ତ ଧର୍ମରୁଚି ନାମ ।
ଶୁକ୍ର ସମାନ ଭାର୍ଯ୍ୟାସ୍ତେ ସଂଗ୍ରାମ-ଶ୍ରମ । ୧୧୫୨ ।
ଅଟଇ ପ୍ରଚଣ୍ଡ ଚତୁରଙ୍ଗ ବଳ ସେନା ।
ଦର୍ପ କପୁ ନମିଲେ ରଣେ ସେ ଭୂମିଜାନ । ୧୧୫୩ ।
ସମସ୍ତ ଭୂଖଣ୍ଡକୁ ଜିଣି, ରାଜାଙ୍କୁ କ୍ଷତ୍ରି—
କର ସ୍ଥାପନ କଲେ ଏକଚ୍ଛତ୍ରାଧିପତ୍ୟ । ୧୧୫୪ ।
ଏପରି ସେ ରାଜର୍ଷି ହୋଇ ନିଜ ନଗରେ ।
ପ୍ରବେଶି ବର୍ଣ୍ଣାଶ୍ରମକୁ ସେବଇ ନମରେ । ୧୧୫୫ ।
ତା ପାଳନେ ଧରା କାମଧେନୁ ହେଲା ସତ ।
ସବୁ ନାଗରିକେ ସଦା ସୁଖୀ ଧର୍ମରତ । ୧୧୫୬ ।
ହରିଭକ୍ତ ଧର୍ମରୁଚି ମନ୍ତ୍ରୀ ନୃପଙ୍କେ ।
ସଦା କରାଉଥାଏ ନୃପେ ହିତ ନୀତିକେ । ୧୧୫୭ ।
ସେ ଧର୍ମ-ବର୍ଣ୍ଣ ଗୁରୁ-ସୁର-ପିତୃ-ଭୂପ—
ଯଥ ସେବା କରେ ଚନ୍ଦ୍ର ସ୍ୱଭାବେ ସେ ଯଥ । ୧୧୫୮ ।

ପୁଣି ବେଦ କଥିତ ସବୁ ଧର୍ମ କରଇ ।
ନିତ ଦାନ ଜପ, ବେଦ ପୁରାଣ ଶୁଣଇ । ୧୧୫୯ ।
ନାନାପ୍ରକାର ବାପୀ, ତଡ଼ାଗାରାମ, କୂପ,
ସୁରାଳୟ, ବିପ୍ରସ୍ୱଦ କରାଇଲା ଭୂପ । ୧୧୬୦ ।
ସେହି ବେଦପୁରାଣୋକ୍ତ ପ୍ରତ୍ୟେକ ଦାନକୁ ।
ସହସ୍ରେ ବାର କଲା ବହୁ ଅନୁରାଗରୁ । ୧୧୬୧ ।
ସେ ବିବେକୀ ସବୁ ଧର୍ମ, କର୍ମ ନିଷ୍କାମରେ ।
ଅଚଳ ଶ୍ରୀ ବାସୁଦେବ ସମର୍ପଣ କରେ । ୧୧୬୨ ।
ଦିନେ ସେ ମୃଗୟା ପାଇଁ ଅରଣ୍ୟ ଅନ୍ତକୁ ।
ଗଲା ମୃଗୟୁଙ୍କୁ ଘେନି ଶୂନ୍ୟ କାନ୍ତାରକୁ । ୧୧୬୩ ।
ସେ ବନେ ଅନେକ ମୃଗ ମାରି ପରେ ସେହୁ ।
ଭେଟିଲେ ଏକ କୋଳକୁ ଯେ ପ୍ରତ୍ୟକ୍ଷ ରାହୁ । ୧୧୬୪ ।
ଚନ୍ଦ୍ରକୁ ଗ୍ରାସି ରମ୍ୟ ବଡ଼ ହେବାକୁ ଗିଳା—
ପାନ୍ଥ ନାହିଁ ବିରଞ୍ଚି ନାହିଁ କ୍ରୋଧରେ କାଳ ।। ୧୧୬୫ ।
ତାର ବଜ୍ରନିଭ ଦଂଷ୍ଟ୍ରା ଅତ୍ୟନ୍ତ କରାଳ ।
ନୀଳଗିରି-ଶିଖର ପରି ଦେହ ବିଶାଳ । ୧୧୬୬ ।
ତା ଘୋର ଘୁର୍ଘୁରନାଦେ ଅରଣୀ କମ୍ପଇ ।
ନୃପ ହସ୍ତବର ଶକ୍ତି ପଛକୁ ଘୁଞ୍ଚଇ । ୧୧୬୭ ।
ସତର୍କେ ଭୂପ ବାଗ କାଢ଼ି ଦୃଢ଼େ ଧରିଲା ।
ବେଣ୍ଟ ଲେଉଟରେ ଚୋଟରେ ଅଶ୍ୱକୁ ମାରିଲା । ୧ ୬୮ ।
ତାହା ନ ସହୁ ଘୋଟକ ଟେକି ଦୁଇ କାନ ।
ସନ୍ତର ପ୍ରବେଗେ ବେଗେ ହୋଇଲା ଧାବମାନ । ୧୧୬୯ ।
ତା' ଦେଖି ବରାହ ବାୟୁବେଗରେ ଭାଗିଲା ।
ସଚ୍ଚିତ୍ସ୍ୱରୂପ ଭୂପ ତା ପଛେ ଗୋଡ଼ାଇଲା । ୧୧୭୦ ।
ବାଣପାତ ଦୂରରୁ ବଳି ବହୁତ ଦୂର ।
ଧାଇଁ ଧାଇଁ ଯାଇ ଅନ୍ତେ ପ୍ରେ ସେ ଭୂଦାର । ୧୧୭୧ ।
ଏକ ଗିରି ଗୁହାରେ ପଶିଲା, ଆଉ ତାକୁ ।
ଦେଖି ନ ପାରି ରାଜା ଲଭି ଅନୁଚିନ୍ତାକୁ । ୧୧୭୨ ।

ବାହୁନ୍ଦ ସାନ୍ତୁ-ଗାଳନେ ବାଟବଣା ହୋଇ ।
ହସ୍ତି ସହୁଚେ ଅପେ କ୍ଷୁଧାତୃଷାତ ପାଇ । ୧୧୭୩ ।
ପାଣି ପାଇଁ ଖୋଜୁଛନ୍ତି ବୁଲି ବୁଲି ଯେ—
ଅଶ୍ରମ ଦେଖି ଲଭିଲେ ସେ ମୋଦାତିରେକ । ୧୧୭୪ ।
ପୂର୍ବେ ତାରେ ପରାଜିତ ହୋଇ ଶୈନ୍ୟ ଦେଶ ।
ହରିଲଣ୍ଡ ଦେବରାଜା ଧରି ମୁନିବେଶ । ୧୧୭୫ ।
ପ୍ରତାପଚନ୍ଦ୍ରର ମନ ବାଞ୍ଛି ତହିଁ ବାସ ।
ଜନ୍ମଅଛି ସେହିଠାରୁ ଗଲ କେତେଦେଶ । ୧୧୭୬ ।
ତାଙ୍କୁ କପଟ ମୁନି ଚିହ୍ନିଲେ ମାତ୍ର ସେହୁ ।
ତାଙ୍କୁ ନ ଚିହ୍ନି ନମିଲେ ଅଶ୍ୱରୁ ଓହ୍ଲାଇ । ୧୧୭୭ ।
କପଟ ମୁନି ଦର୍ଶିତ ଯେ ସତ୍ୱୋବରରେ ।
ମଜ୍ଜନ ପାନ କରି ସେ ହସ୍ତି ସହିତରେ । ୧୧୭୮ ।
ଶ୍ରମ ହରି ମୁକ୍ତ ହୋଇଁ ଗଲେ ଆଶ୍ରମକୁ ।
ଏମନ୍ତ ସମୟେ ଦେବ ଲଭିଲେ ଅସ୍ତ୍ରକୁ । ୧୧୭୯ ।
ସେ ମୁନି ଦେଇ ଆସନ ନୃପଙ୍କୁ ପୃଚ୍ଛିଲେ ।
କେ ତୁମ୍ଭେ କିପାଁ ବନେ ବୁଲି ହୋଇ ଏକେଲେ । ୧୧୮୦ ।
ନୃପ କହିଲେ ପ୍ରତାପଚନ୍ଦ୍ର ନୃପତିରେ ।
ମନ୍ତ୍ରୀ ଅଟେ ମୁହିଁ, ହୋଇ ଆଖେଟେ ତତ୍ପର । ୧୧୮୧ ।
ବନେ ବୁଲି ବୁଲି ବାଟବଣା ହୋଇଲି ।
ମୋ ଭାଗ୍ୟରୁ ତୁମ୍ଭପାଦ ଦର୍ଶନ କରିଲି । ୧୧୮୨ ।
ମୁନି କହିଲେ ଏବେ ଅସ୍ତ ହେଲେ ତପନ ।
ଏଠାରୁ ତୁମ୍ଭ ନଗର ସତର ଯୋଜନ । ୧୧୮୩ ।
ବୃକ୍ଷ ତ ଅନ୍ଧାର, ବଣ ପଥ, ବାଟ ନୂଆ ।
ଏଣୁ ଏହିଠାରେ ରହ ଯାଅ କଲ୍ୟେ ବୁଝ । ୧୧୮୪ ।
ମୋ ଅତଏ ଅଭୟା ତୋତେ ଭବ ସ୍ଥବଣୀ ।
ଏ ସ୍ଥଳ ଏ ଅନ୍ତରେ ମୁରେ ଭବ ସଜନ । ୧୧୮୫ ।
ଏତେ ଶୁଣି ପ୍ରୀତ ହୋଇ ସେ ଯେ ଗଉରରେ ।
ରୋତ୍ରାକୁ କାଳ ଅତି କବିଲ ସଦନରେ । ୧୧୮୬ ।

ସ୍ୱବୃତ୍ତାନୁସାରେ ଜନ ଲଭନ୍ତି ସାହାକୁ ।
ଏ ତାହାକୁ ନ ଗଲେହେଁ ସେ ଜାଏ ଏହାକୁ । ୧୧୮୭ ।
ମୁନି ତ କପଟୀ ବେଶ ଘେନିଣ ନୃପତି ।
ଗୃହସ୍ଥେ ସ୍ୱଭାବ ପୂର୍ଣ୍ଣେ କଲାଜନ୍ତ ମତ । ୧୧୮୮ ।
ସ୍ୱ ନିଜ ନତ, ଦେଖି ଶତ୍ରୁର ଉନ୍ନତ ।
ତାର ହୃଦୟ ଦହା ପର ଜଳନ୍ତ ଅତି । ୧୧୮୯ ।
ବଳେ ନୋହିଲେ ଛଳେ ବୈରିର ପରିଶୋଧ
କରିବାକୁ ସମ୍ଭବନ୍ତ ତା ଶାସ୍ତ୍ରରେ ସାଧ । ୧୧୯୦ ।
ନୃପ ନମ୍ରେ ପଚାରନ୍ତି ଅହେ ତପଶାଳୀ !
ତୁମ୍ଭ ସ୍ୱନାମେ ପବିତ୍ର କେଉଁ ଅକ୍ଷରାଳୀ ? । ୧୧୯୧ ।
ସେ ବୋଲନ୍ତି ସାର୍ଥ ଅଟେ ମୋ ଭିକାରୀ ନାମ ।
ଯେ ହେତୁଁ ନାହିଁ ମୋର ଧନ କବା ଧାମ । ୧୧୯୨ ।
ରାଜା ଭଣାନ୍ତି ତୁମ୍ଭେ ଗଳିତାଭିମାନ ।
ଅସାଧାରଣ ହରିଚନ୍ଦ୍ରପୂର୍ଣ୍ଣ ଦାମ୍ଭଜନ । ୧୧୯୩ ।
ତୁମ୍ଭ ପର ଧନ ଧାମ ତ୍ୟାଗ ଦେବା ଲାଗି ।
ଶତ୍ରୁ ତୁମ୍ଭଙ୍କୁ ସଦା ଅଟନ୍ତି ଅନୁରାଗୀ । ୧୧୯୪ ।
ପୁଣି ତୁମ୍ଭ ପର ଜନ ତୁଷ୍ଟିତ ବେଶରେ ।
ଜନତାକୁ କ୍ରମାଗ୍ର ଅନୁଗୋପନ କରେ । ୧୧୯୫ ।
ପୂର୍ବ ଭାଗ୍ୟରୁ ତୁମ୍ଭ ପାଦ ଦର୍ଶନ କଲି ।
ମୁନିବର ! ମୁହିଁ ଏବେ କୃତାର୍ଥ ହୋଇଲି । ୧୧୯୬ ।
ଶୁଣି ଏମନ୍ତ ନୃପର ସରଳ ଗିରକୁ ।
ଅଧିକତର ବିଶ୍ୱାସ ଜାତ କରିବାକୁ । ୧୧୯୭ ।
ସେ କପଟୀ ବୋଲନ୍ତି ବହୁକାଳରୁ ମୁହିଁ ।
ଏକାକୀ ହୋଇ ଏଠାରେ ବାସ କରଇ । ୧୧୯୮ ।
ତପୋବଳ ଯାବତ ଅଟଇ ମାନ୍ୟତା ।
ଏଣୁ ଜନେ ତହିଁରେ ଦେଖାଏ ନିର୍ଲିପ୍ତତା । ୧୧୯୯ ।
ଜନସଙ୍ଗ ପରିହରି ଶ୍ରୀହରିଙ୍କ ଚିନ୍ତେ ।
କାଳ କାଟୁଅଛି ମୁହିଁ ଲତାବନରେ ମଝି । ୧୨୦୦ ।

ତୁମ୍ଭେ ସାଧୁ ବନ୍ଧୁ ପୂର୍ଣ୍ଣ ମୋରେ ସ୍ନେହଯୁକ୍ତ ।
ଏଣୁ ତୁମ୍ଭଠାରେ ହୋଇ ଅଳପ ଆସକ୍ତ । ୧୨୦୧ ।
ତେଣୁ ଏବେ ସଦାଳାପ କରିବାକୁ ଇଚ୍ଛଇଁ ।
ମାତ୍ର ତୁମ୍ଭଠାରେ ଏକ ଦୋଷକୁ ଦେଖଇଁ । ୧୨୦୨ ।
ତୁମ୍ଭ ପରି ସୁଜନ ବଦନୁ ସୁଧା ଗିର ।
ନିକଳିବା ଅନୁଚିତ ଅଟେ ନୃପବର । ୧୨୦୩ ।
ତପୋଧନମାନଙ୍କୁ ଅଛି ମୋର ଦିବ୍ୟ ଦୃଷ୍ଟି ।
ତପୋବଳ-ବଶୀ ଅଟେ ଏ ସମସ୍ତ ସୃଷ୍ଟି । ୧୨୦୪ ।
ତୁମ୍ଭେ ପ୍ରତାପସୂନୁ ଅଟ ସତ୍ୟବେତ୍ତାଜ ।
ଅରିନୃପଗଣ-ଚଣ୍ଡ-ବନମତ୍ତଗଜ । ୧୨୦୫ ।
ଏତେ ଶୁଣି ନୃପ ଅତି ଚକିତ ହୋଇଲେ
ସେ ପଦକୁ ପ୍ରଣମି କ୍ଷମା ପ୍ରାର୍ଥନା କଲେ । ୧୨୦୬ ।
କେବଳ ବାକ୍ୟ ସୁନ୍ଦର, ଗୁଡ ଶୁଭପ୍ରିୟ ।
ମାତ୍ର ସେ ଗ୍ରାସ କରଇ ବିଷଧରପ୍ରାୟ । ୧୨୦୭ ।
ଜଳର ଚଞ୍ଚଳତା ଏତେ ପରପ୍ରାୟ ।
ବେଶକୁ ବଚନକୁ ମିଳେ ନାହିଁ ନିଶ୍ଚୟ । ୧୨୦୮ ।
ନିଜ ମାୟା-ପାଶ-ବନ୍ଧ ନୃପଙ୍କି ଗୁହିଁ ।
ଶଠ ମୁନି ମାନସରେ ପରିତୃପ୍ତ ହୋଇ । ୧୨୦୯ ।
ରାଜାଙ୍କୁ ଅନେଇ ଧୀରେ ବୋଇଲା ଏମନ୍ତ ।
ହେ ନୃପ ! ତୁମ୍ଭ କଥା ନୁହେ ଅତି ଅଦ୍ଭୁତ । ୧୨୧୦ ।
ସରଳେ ପ୍ରବେଶିପ୍ର ଦେଲେ ସନ୍ତଠାରେ ।
ଅନେକ ସମ୍ପତ୍ତି ପରେ ବୋଲୁଥାନ୍ତି ଧୀରେ । ୧୨୧୧ ।
ତୁମ୍ଭେ ନୀତିଜ୍ଞ ଗର୍ବଶୂନ୍ୟ ଶ୍ରଦ୍ଧାବନ୍ତ ।
ଏଣୁ ତୁମ୍ଭଠାରେ ମୋ ମାନସ ଅନୁରକ୍ତ । ୧୨୧୨ ।
ଏତେ ବୋଲି ସେ କହୁ କେତେକେ ଧର୍ମ କର୍ମ ।
ପୂର୍ବ ବେଦ ବେଦାଙ୍ଗ ତନ୍ତ୍ରଜ୍ଞାନ ମର୍ମ । ୧୨୧୩ ।
ଶୁଣିଲ, ହେ ଭୂପାଳ ! ଏବେକ କର ତ୍ୟାଗ ।
ଯାହା ତୁମ୍ଭର ବାଣୀ କେବେ ଭୋଗରେ ମନ । ୧୨୧୪ ।

ତା ଶୁଣି ସେ କର ଯୋଡ଼ି ବୋଇଲେ ମୁହୂରେ ।
ଚତୁର୍ବର୍ଗ ପ୍ରାପ୍ତ ହେଲି ତୁମ୍ଭ ଦର୍ଶନରେ । ୧୨୧୫ ।
ତେବେ ହେ ସ୍ୱ-ସ୍ୱୀକାରକୁ ପ୍ରତିପାଳ ଏବେ—
ଦୁର୍ଲଭ ବର ଦାନ କର ମୋତେ ଗୋସାଇଁ । ୧୨୧୬ ।
ଜରା-ମୃତ୍ୟୁ-ଦୁଃଖ-ଶୂନ୍ୟ ଦେହେ କଳ୍ପ ଶତ ।
ବସୁଧାରେ ସାର୍ବଭୌମ ହୋଇଥିବି ମୁଁ ତ । ୧୨୧୭
ତା ଶୁଣି 'ତଥାସ୍ତୁ' ବୋଲି ସେ କହିଲେ ପୁଣି ।
ମୋ ବର ଅମୋଘ ଅଟେ ଅହେ ନୃପମଣି ! ୧୨୧୮ ।
ମାତ୍ର ଏକା ବ୍ରାହ୍ମଣକୁଳ ବିନା ତୋହର ।
ଚରଣେ ଲୋଟାଇ ସବେ ଶତ୍ରୁବେ ନିକର । ୧୨୧୯ ।
କେବଳ ତପୋବଳେ ବ୍ରାହ୍ମଣ ବଳୀୟାନ ।
ଅପ୍ରତିହତ ଅଟେ ପ୍ରସାଦ କ୍ରୋଧ ତାର । ୧୨୨୦ ।
ବିପ୍ର ଜାତିକି ମାତ୍ର ବଶ୍ୟ କରି ପାରିଲେ ।
ଶରୀରେ ହରିହର ବଶ୍ୟ ହୋଇବେ ଭଲେ । ୧୨୨୧ ।
ବିପ୍ରଙ୍କୁ ଅବା କିଏ ବଡ଼ ନୁହେ ବୋଲି ।
ଶାସ୍ତ୍ରରେ କହିବ ମୁଁ ଦୁଇହାତ ତୋଳି । ୧୨୨୨ ।
ବ୍ରାହ୍ମଣ କ୍ରୋଧପାତ୍ର ମାତ୍ର ତୁମ୍ଭେ ନୋହିଲେ ।
ବାଞ୍ଛିତ ସମସ୍ତ ଭାଗ୍ୟ ଭୁଞ୍ଜିବ ଅକୁଳେ । ୧୨୨୩ ।
ତା ଶୁଣି ନୃପ ବୋଇଲେ ଅହେ ବୁଧ ନାଥ ।
ତପସ୍ୟା ବଳେ ଶକ୍ତେ ହୁଏ ସବୁ ସାଧିତ । ୧୨୨୪ ।
ହେ ତପୋବର ! କୃପାରେ ମୋତେ କର ଜାଣୁ ।
ବ୍ରାହ୍ମଣ-ବଶୀକରଣ-ମନ୍ତ୍ରକ ବତାଇ । ୧୨୨୫ ।
ଏଥିକି ତ୍ରିପୁରାବତୀ-ବଂଶର ନୃପତି—
ସବୁକୁ ଜାଣି ସନ୍ତୁଷ୍ଟ ହୋଇ ସେ ତୁରନ୍ତ । ୧୨୨୬ ।
ବୋଇଲେ ତୁମ୍ଭେ ବାଃବଣା ହୋଇ ଏତାକୁ ।
ଅଶି ମୋତେ କେଉଁବା କଳ ନାହିଁ କାହାକୁ । ୧୨୨୭ ।
ଯମ ବେଳକ ମେଳନ ପ୍ରକଟେ ହେବେ ।
ଏବା କେବେ ତୁମ୍ଭକୁ ବ୍ରାହ୍ମଣ ଶାପ ହେବେ । ୧୨୨୮ ।

ନଷ୍ଟପ୍ରାୟରେ ପ୍ରାପ୍ତ ହେବ ତୁମ୍ଭର ଅପାୟ ।
ଏଣୁ ଏ ବିଷୟେ ତୁମ୍ଭେ ସାବଧାନେ ଥାଅ । ୧୨୨୯ ।
ତା ଶୁଣି ବନସ୍ପେ ଭୂପ ବୋଇଲେ ଶ୍ରେଷ୍ଠ ଦେବ ।
ମୁହିଁ ଜାଣେ ଗୁରୁ-ଶାପ-କ୍ରୋଧ-ପ୍ରଭାବ । ୧୨୩୦ ।
ବହୁ ଦୋଷ କଲେ ଗୁରୁ ଅଭୟ ଦାତା ।
ଗୁରୁ କୁପିତ ହୋଇଲେ ନାହିଁ କାହିଁ ତ୍ରାତା । ୧୨୩୧ ।
ଅନ୍ୟ ମିଳନ ତଥା ଗୁପ୍ତେ ରକ୍ଷି ପାରବ ।
ମାତ୍ର ଶାପକ୍ରୋଧରୁ କେହୁ ରକ୍ଷା ପାଇବ । ୧୨୩୨ ।
ଏମନ୍ତ ସନ୍ନ୍ୟସ୍ତ-ନୃପ-ବଚନକୁ ଶୁଣି ।
ଚନ୍ଦ୍ରାବଦନୀ ତବ ବୋଇଲା ଠାକୁରାଣୀ । ୧୨୩୩ ।
ତହିଁର ଅଛି ଉପାୟ ଗୋଟିଏ ମାତର ।
ମାତ୍ର ତାହା କଲେ ଯିବ ନିଶ୍ଚୟ ମୋ ଡର । ୧୨୩୪ ।
ମୁହିଁ ଚନ୍ଦ୍ରାବତୀରେ ନଗରେ କେତେକାଳ ।
ବାସ କରିବାକୁ ହେବ ଅହେ ମହୀପାଳ । ୧୨୩୫ ।
ଯୌବନାଂରେ ତୁମ୍ଭେ ମୋତେ କଲ ବଶୀଭୂତ ।
ନିଶ୍ଚୟ ତେବେ ନଷ୍ଟ କରିବ ତୁମ୍ଭ ବ୍ରତ । ୧୨୩୬ ।
ଏତେ ଶୁଣି ନରପତି କରି ଆନନ୍ଦକୁ ।
ବନସ୍ତେ ଜଣାଇଲେ ବନ୍ଦି ମୁନିପାଦକୁ । ୧୨୩୭ ।
ଧରି ତୁଷାର ଶିରରେ ଧବଳ ଚରଣକୁ ।
ଥାଉର ଆପଣା ପରେ ବହଳ ଯୌବନକୁ । ୧୨୩୮ ।
ଧରଣୀ କରେ ଉପରେ ଧୂଳିକି ଧାରଣ ।
ଲଭେ ମହାଜନାଦର ନୂତନ ନୂତନ । ୧୨୩୯ ।
ତାହା ଶୁଣି ସେ ତପସ୍ୱୀ ବୋଇଲେ, ଜଗତେ—
ମୋ ଅସାଧ୍ୟ ହୋଇ କିଛି ନାହିଁ କଦାଚିତେ । ୧୨୪୦ ।
ଯେ ଗ ମନ୍ତ୍ର ତପ ଯୋଗ ବଳଯୋଗପ୍ରୟେ ।
ସିଦ୍ଧ ହୁଏ ଏଣୁ ସତ୍ୟ କହିବା ଭୂପରେ । ୧୨୪୧ ।
ମୁଁ ତୁମ୍ଭ ବୁଦ୍ଧେ ରୂପେ କରୁଥିବ ବସନ ।
ତୁମ୍ଭେ ସୁଖରେ ରହୁଥିବ ପରବେଷଣ । ୧୨୪୨ ।

ସେ ଅନ୍ନ ଭକ୍ଷିବା ଜନ ପୁଣି ତାହା ପରେ ।
ଭକ୍ଷିବା ନର ବହିବ ତୁମ୍ଭ ଅଧୀନରେ । ୧୨୪୩ ।
ନିତ ଭୁଞ୍ଜମ୍ଭ ସହିତେ ଲକ୍ଷେ ବ୍ରାହ୍ମଣଙ୍କୁ ।
ଏହାହି ଭୁଞ୍ଜାଇବାକୁ କର ସଙ୍କଳ୍ପକୁ । ୧୨୪୪ ।
ଏମନ୍ତ ଅନ୍ନ କ୍ଷମେ ଅଠର ସମୟରେ ।
ସକଳ ବିପ୍ରେ ରହିବେ ତୁମ୍ଭର ବଶରେ । ୧୨୪୫ ।
ତପ୍‌ଜନ ହୋମ ଯଜ୍ଞ ବ୍ରତ ଦେବବ୍ରାତ ।
ଅକ୍ଲେଶରେ ହୋଇବ ତୁମ୍ଭର ବଶୀଭୂତ । ୧୨୪୬ ।
ନିଜରୂପେ ଯିବ ନାହିଁ ତୁମ୍ଭ ନଗରକୁ ।
ତେଣୁ ଧରିବ ତୁମ୍ଭ ପୁରୋହିତ-ରୂପକୁ । ୧୨୪୭ ।
ତାକୁ ମୋ ତପୋବଳେ ହରି ଆଣି ମୋ ସମେ ।
ରଖିବି ଏକ ବର୍ଷ ପର୍ଯ୍ୟନ୍ତ ଏ ଆଶ୍ରମେ । ୧୨୪୮ ।
ଏବେ ଯାଅ ଢେର ହେଲା ସୁଖେ ନିଦ୍ରା କର ।
ଏ ନିଶିରେ ତୁମ୍ଭେ ପୁଣି ତୁମ୍ଭ ହୟବର । ୧୨୪୯ ।
ମୋ ତପୋମହିମାରୁ ନିଜ ପୁରକୁ ଯିବ ।
ତୃତୀୟ ଦିନ ପୁଣି ଆମ୍ଭ ଭେଟ ହୋଇବ । ୧୨୫୦ ।
ପୁରୋଧା ପରି ଥିଲେ ମଧ୍ୟ ହେବ ଶଙ୍କିତ ।
ଏକାନ୍ତେ ତୁମ୍ଭଙ୍କୁ କହୁ ଏଠାର ଚରିତ । ୧୨୫୧ ।
ପରେ ତା ଆଜ୍ଞା ମାନି ନୃପ ଶୟନ କଲେ ।
ସେ ଶଠ ରଜା ନିଜର ଆସନେ ବସିଲେ । ୧୨୫୨ ।
କ୍ଷମି ନୃପ ଶୀଘ୍ରେ ନିଦ୍ରାବଶର ହୋଇଲେ ।
ଶତ୍ରୁସନ୍ତୁ ଠକର ନିଦ ନ ଅସିଲା । ୧୨୫୩ ।
ଯେ ଶୂକର ରୂପ ଧରି ଭୁଲାଇ ନୃପଙ୍କୁ ।
ଆଣିଥିଲା ଦିବସରେ ସେହି ଆଶ୍ରମକୁ । ୧୨୫୪ ।
ଯେ କପଟାକର ସେ ଶଠ ମୁନିର ମିତ ।
ସେ କାଳକେତୁ ଦୈତ୍ୟ ତେବେ ହେଲା ଅଗତ । ୧୨୫୫ ।
ତା ଦର୍ଶ ଯୋଗରେ ଶଠ ମୁନି ହୋଇ ହୃଷ୍ଟ ।
ଦେବଦାନବଙ୍କୁ ଦେଖିଥିଲେ ଅତି କଷ୍ଟ । ୧୨୫୬ ।

ଅଟମ୍ଭିତେ ନୃପତି ଗୃହେ ପ୍ରବେଶିଲେ ।
ନିଜ ମାନସରେ ସବୁ କର୍ତ୍ତବ୍ୟ ଚାହିଁଲେ । ୧୨୭୧ ।
ମୁନିର ଆଗମନକୁ ସେ ପ୍ରତୀକ୍ଷା କରି ।
ଦନକସମ୍ଭୁ ପଶିଲେ ସୁଖ ଶଯ୍ୟା ପରି । ୧୨୭୨ ।
ପରେ ସମସ୍ତ ଜାଣି ସେ ଛଦ୍ମସୁରେନ୍ଦ୍ର ।
ରାଜାଙ୍କୁ ଗୁପ୍ତେ କହିଲା ସକଳ ଚରିତ । ୧୨୭୩ ।
ରାଜା ତାଙ୍କୁ ଗୁପ୍ତ ଭାବ ମାନସ ପ୍ରମାଦେ ।
ଭମନ୍ତି କି ଲକ୍ଷେ ବସ୍ତ୍ର କୁଟୁମ୍ବଙ୍କ ମୋଦେ । ୧୨୭୪ ।
ସୁବେଧା ଚତୁର୍ବିଧ ଖାଦ୍ୟ ନାନାବିଧରେ ।
ରନ୍ଧନ କଲା ତବେ ନିଜ ମାୟାବଳରେ । ୧୨୭୫ ।
ବହୁବିଧ ମୃଗମାଂସ ବ୍ୟଞ୍ଜନ ରାନ୍ଧିଲା ।
ତହିଁରେ ବ୍ରାହ୍ମଣ-ମାଂସ ସେ ଦୁଷ୍ଟ ଯୋଗିଲା । ୧୨୭୬ ।
ନୃପ ବସନ୍ତ ଆଣି ପଖାଳ ତାଙ୍କ ପାଦ ।
ପୀଠେ ବସାଇ ଅନ୍ନ ବାଢିଲେ କରି ମୋଦ । ୧୨୭୭ ।
ସେ ସମୟେ ଆକାଶରୁ ଶୁଭିଲା ଏପରି—
ହେ ବ୍ରାହ୍ମଣେ ! ଉଠ ଉଠ ବିଳମ୍ବ ନ କରି । ୧୨୭୮ ।
ଏ ପଚନ ବ୍ରାହ୍ମଣର ମାଂସରେ ଦୂଷିତ ।
ଏଣୁ ଏହାକୁ ଛୁଇଁବା ଅଟେ ଅନୁଚିତ । ୧୨୭୯ ।
ତାହା ଶୁଣି ବିପ୍ରେନ୍ଦ୍ର ଉଠିଲେ ବଦନ ।
ଚକ୍ଷେତେଜ ସ୍ରାବ୍ୟବଶେ କହିଲେ ମହନ । ୧୨୮୦ ।
ବ୍ରାହ୍ମଣେ କଷ୍ଟ ବିଚାର ନ କରି ହିତ ।
ଏମନ୍ତ ଶାପ ଦେଲେ ହୋଇ କୁପିତମତ । ୧୨୮୧ ।
ଅରେ ପାମର ନୃପ ! ତୁହ୍ନ କୁଟୁମ୍ବ ସହ ।
ଅଚିରେ ହୋଇବୁ ଦାନବ-ଦେହ ଦେହ । ୧୨୮୨ ।
ତୁ ଯେତ ବନ୍ଧୁ ଅମ୍ଭଙ୍କୁ କରି ଆମନ୍ତ୍ରଣ ।
ଧର୍ମ ନାଶିବାକୁ କଲୁ କୁତ୍ସି ଆଚରଣ । ୧୨୮୩ ।
ଭଗବାନ ବ୍ରହ୍ମା କଲେ ଧର୍ମକୁ ଅମର ।
ତୁମ୍ଭେମାନେ ଅବରେଶ ପଢ଼ ସେହି ବର । ୧୨୮୪ ।

ତୁମ୍ଭମାନଙ୍କ ନାଶ ଏକାହ ମଧ୍ୟେ ହେଉ ।
ପାଣି ଦେବାକୁ କେହି ତୋ ବଂଶରେ ନ ଥାଉ । ୧୨ ୫ ।
ଏମନ୍ତ ବିପ୍ରଙ୍କର ଶାପବଚନ ଶୁଣି ।
ଦୁଃଖରେ ଅତ୍ୟାକୁଳ ହେଲେ ନୃପମଣି । ୧୨୮୬ ।
ତେବେ ପୁଣି ଶୁଭିଲା ଦୈବୀବାଣୀ ଏପରି ।
ହେ ବ୍ରାହ୍ମଣେ ! ଶାପ ଦେଲ ବିଚାର ନ କରି । ୧୨୮୭ ।
ନୃପତି କେତେମାତ୍ର ନୁହଇ ଅପରାଧୀ ।
ତାହାରେ ତୁମ୍ଭେମାନେ ବୃଥାରେ ହେଲ କ୍ରୋଧୀ । ୧୨୮୮ ।
ତା ଶୁଣି ବିପ୍ରଚୟ ଲଭିଲେ ବିସ୍ମୟ ।
ପରେ ନୃପତି ଗଲେ ନିଜ ମହାନସକୁ । ୧୨୮୯ ।
ପଚିତ ପଦାର୍ଥ ସମ୍ଭା ପାଚକ ଯେ ଥିଲେ ।
ନ ଥିବା ଶଙ୍କେକ ସେହୁ ବଦ୍ଧିତ ଅଛିଲେ । ୧୨୯୦ ।
ନୃପଙ୍କ ଅସି ବିପ୍ରଙ୍କୁ ସମସ୍ତ ବୃତ୍ତାନ୍ତ ।
କହି ମଧ୍ୟରେ ପଡ଼ିଲେ ହୋଇ ଶୋକାକ୍ରାନ୍ତ । ୧୨୯୧ ।
ବିପ୍ରେ ବୋଇଲେ ହେ ନୃପ ! ତୁମ୍ଭେ ଦୋଷହୀନ ।
ହେଲେହେଁ ବିଚିତ୍ରବାଣୀ ନୋହିବ ଟ ଆନ । ୧୨୯୨ ।
ବ୍ରାହ୍ମଣ ଶାପ ଅଟଇ ଅତ୍ୟନ୍ତ ଦାରୁଣ ।
କେହି ଟାଳିବାକୁ ତାକୁ କେ ନୁହେ ଭାଜନ । ୧୨୯୩ ।
ଏତେ କହି ବିପ୍ରେ ଯେ ସ୍ଥାନୁ ପ୍ରସ୍ଥାନ କଲେ ।
ଯେ ସମ୍ବାଦକୁ ଶୁଣି ପୁରବାସୀ ସକଳେ । ୧୨୯୪ ।
ଦୁଃଖାକୁଳ ହୋଇ ନିନ୍ଦା କଲେ ଯେ ଦୈବକୁ ।
ଯେ ନୃପଙ୍କୁ ଅବସ୍ଥି ଘଟିଲା ତାଙ୍କୁ । ୧୨୯୫ ।
ତାଙ୍କଠାରୁ ପଣ୍ଡିତ ପୁରେ ପୁରୋଧାକୁ ।
ସମସ୍ତ ବୃତ୍ତାନ୍ତ କହିଲେ ସ୍ୱଜାତି ସଖାକୁ । ୧୨୯୬ ।
ଯେ ଦୁଷ୍ଟ ଶେଷ ପତ୍ରିତା ଗଣ୍ଡୁଷ ଜାଣି ।
ଚତୁରଙ୍ଗ ସୈନ୍ୟ ସହ ଅଛି ସଜ୍ଜଶ୍ରେଣୀ । ୧୨୯୭ ।
ନଗରକୁ ବେଢ଼ି ଦସ୍ୟୁଙ୍କର ପୁର ଭଙ୍ଗ ।
କରି ସମ୍ପେତେ ପ୍ରତାପନରକୁ ନାଶିଲ । ୧୨୯୮ ।

ପରେ ସେ ତହୁଁ ଏକ ବିଖ୍ୟାତ ନୃପବର ।
ବାହୁବଳ ଗର୍ବ ସଙ୍ଗେ ଜୟ ଲକ୍ଷ୍ମୀର ଧର । ୧୨୯୯ ।
ଧର୍ମର ତପୁଙ୍କର ଶାପ ମହିମାରେ ।
ରହିଲା ନାହିଁ ସତ୍ୟକେତୁ-ବଂଶ ଧରାରେ । ୧୩୦୦ ।
ବିଧି ବାମ ହୋଇଲେ ଜନକ ହୁଏ ଯମ ।
ରେଣୁ ହୁଏ ଗିରି, ରଜ୍ଜୁ ହୁଏ ଭୁଜଙ୍ଗମ । ୧୩୦୧ ।

ବାନ୍ଧବ ସହିତରେ ପ୍ରତାପଭାନୁ ନୃପ ।
କାଳକ୍ରମେ ଜନ୍ମିଲା ମର୍ତ୍ତ୍ୟେ ହୋଇ କୌଣପ । ୧୩୦୨ ।
ଦଶ ମସ୍ତକ ବିଂଶତି ଭୁଜ ଯୁକ୍ତ ଦେହ ।
ରାବଣ ନାମେ ଖ୍ୟାତ ପ୍ରଚଣ୍ଡ ବୀର ହୋଇ । ୧୩୦୩ ।
ତାହା ଅନୁଜ ଅରି ମର୍ଦ୍ଦନ, କୁମ୍ଭକର୍ଣ୍ଣ—
ନାମରେ ବିଖ୍ୟାତ ହେଲା ହୋଇ ବଳପୂର୍ଣ୍ଣ । ୧୩୦୪ ।
ମନ୍ତ୍ରୀ ଧର୍ମରୁଚି ତାଙ୍କ ବୈମାତ୍ର ସୁତ ।
ବିଭୀଷଣ ନାମେ ଖ୍ୟାତ ହରିଭକ୍ତି-ରତ । ୧୩୦୫ ।
ନୃପତିର କୁଳରେ ବନ୍ଧୁମାନେ ତନୁଜେ ।
ଜନ୍ମିଲେ ହୋଇ ଅନ୍ୟାନ୍ୟ ଦୁର୍ଦ୍ଧର୍ଷ ଦନୁଜେ । ୧୩୦୬ ।

ସବେ କାମରୂପୀ ପାପୀ ଜନ୍ତୁଙ୍କର ଖଳ ।
ମୂଢ଼ କୃପାହୀନ ହିଂସ୍ର ଅବାଚ୍ୟ କୁଟିଳ । ୧୩୦୭ ।
ଜାତ ହେଲେହେଁ ପୁଲସ୍ତ୍ୟ-ପୂତ-ପବିତ୍ରକୁଳେ ।
ବିପ୍ର-ଶାପରୁ ସେମାନେ ପାପିଷ୍ଠ ହୋଇଲେ । ୧୩୦୮ ।
ରାବଣ କୁମ୍ଭକର୍ଣ୍ଣ ବିଭୀଷଣ ଭ୍ରାତୃଗଣ—
ତପସ୍ୟା କରିବାରୁ ତୁଷ୍ଟ ହୋଇ ବ୍ରହ୍ମଣ । ୧୩୦୯ ।

ତାହାଙ୍କ ସମ୍ମୁଖକୁ ଯାଇ ଯାଚିଲା ବର ।
ତାହା ଶୁଣି ଏମନ୍ତେ ମାଗିଲା ଦଶଶିର । ୧୩୧୦ ।
ହେ ପିତାମହ ! ନର ବାନରଙ୍କୁ ମୋହର ।
ମାନସରେ ଲେଶମାତ୍ର ହେଲେ ନାହିଁ ଡର । ୧୩୧୧ ।
ଅମର ସୁରାସୁର ପ୍ରଭୃତିଙ୍କର ହାତରେ ।
ମୋ ମୃତ୍ୟୁ ନୋହିବା ଭଳି କର ଦୟା ମୋତେ । ୧୩୧୨ ।

'ତଥାସ୍ତୁ' ବୋଲି ବିଧି ଦେଖି କୁମ୍ଭକର୍ଣ୍ଣଙ୍କୁ ।
ଶଙ୍କିଲେ ଏ ପେଟୁ ନିତ୍ୟ କଲେ ଭୋଜନକୁ । ୧୩୧୩ ।
ଏ ବିଶ୍ୱ ନିଃଶେଷ ହେବ ଅଳ୍ପକାଳେ ଯେଣୁ ।
ଏହାର ବର୍ଷକେ ଦୁଇ ଖାଦ୍ୟ ଯୁକ୍ତ ତେଣୁ । ୧୨୧୪ ।
ଏତେ ପାଇଁ ଧାତା ବାଣୀ ଦ୍ୱାରା ତାହା ଶଠ ।
ବଦଳାଇଲେ ସେହୁ କାରଣରୁ ସେ ମତ । ୧୨୧୫ ।
ସଦା ଶୋଇ ରହୁ ଛ ମାସରେ ଏକ ଥର ।
ଉଠି ଖାଉଥିବାକୁ ମାତ୍ର ମାଗିଲା ବର । ୧୩୧୬ ।
ବିଭୀଷଣ ବିଧାତାଙ୍କୁ ଚିତ୍ତରେ ନମିଲା ।
ହରିଚରଣୈକାନ୍ତଭକ୍ତି-ପ୍ରାପ୍ତି ମାଗିଲା । ୧୩୧୭ ।
ବାଞ୍ଛିତ ବରଦାନେ ତିନିଙ୍କି ତୃପ୍ତ କରି ।
ନାଭିଜାତ ସମ୍ଭବ ଗମିଲା ନିଜ ପୁରୀ । ୧୩୧୮ ।
ତନୟଙ୍କ ଆନନ୍ଦରେ ଗଲେ ନିଜ ପୁର ।
ରାବଣଙ୍କୁ ଦେଲା ସ୍ୱ-ସୁତାକୁ ମୟାସୁର । ୧୩୧୯ ।
ସେ ଅତି ସୁନ୍ଦରୀ ମନ୍ଦୋଦରୀ ନାମବତୀ ।
ତାକୁ ପାଟରାଣୀ କଲା ଦାନବାଧିପତି । ୧୩୨୦ ।
ପରେ ସେ ନୃପପୁତ୍ରୀ କନ୍ୟାମାନଙ୍କୁ ଆଣି ।
ଭାଇଙ୍କ ବିବାହ କଲା ତାଙ୍କ ମନ ଜାଣି । ୧୩୨୧ ।
ସିନ୍ଧୁ ମଧ୍ୟେ ଉଦ୍ଧୃତ ତ୍ରିକୂଟ ପର୍ବତ ।
ଅଟଇ ଯେ ଅତ୍ୟନ୍ତ ଦୁର୍ଗମ ଅତ୍ୟଦ୍ଭୁତ । ୧୩୨୨ ।
ତାର ଶିଖରେ ମଣି-କଟକ ହେମମୟ—
ଦାନବଙ୍କ ବନ୍ଧୁ-ବଧେ ବିରଚିଲା ମୟ । ୧୩୨୩ ।
ସେ ପୁର ଅତି ସୁନ୍ଦର, ତାର ନାମ ଲଙ୍କା ।
ଯା ଆଗେ ଅମରାବତୀ ଭୋଗବତୀ ରଙ୍କା । ୧୩୨୪ ।
ଜାମ୍ବୁନଦ-ହାଟକ ତା ଦୃଢ଼ ପ୍ରାକାର ।
ପରିଖା ଅଟଇ ଅତି ଗମ୍ଭୀର ପାରାବାର । ୧୩୨୫ ।
ହରି ପ୍ରେରଣେ ପୂର୍ବେ ଚକ୍ରେ ସେଠୁ ଅସୁର ।
ଏବେ ପ୍ରତାପି ଜନ ହୋଇ ଲଙ୍କେଶ୍ୱର । ୧୨୨୬ ।

ଯକ୍ଷ ଭୂପ ସେ ସୁଖେ ସୈନ୍ୟ ସମେତରେ ।
ଅବସ୍ଥାନ କରୁଥାଏ ସେ ଲଙ୍କା ନଗରେ । ୧୩୨୭ ।
ତହୁଁ ଦାନବ ସ୍ୱଚ୍ଛନ୍ଦେ ବାସ କରୁଥିଲେ ।
ତାଙ୍କୁ ଦେବତାମାନେ ସମରେ ସହାରିଲେ । ୧୩୨୮ ।
ପରେ ମନ୍ୱନ୍ତରରେ କୁବେରର କୋଟି ।
ରକ୍ଷକ ଭୃତ୍ୟମାନେ ରହିଲେ ହୋଇ ଗୋଟି । ୧୩୨୯ ।

## ରାବଣ-ବିଭବ

ସେ ଦୁର୍ଦ୍ଦାନ୍ତ ରାବଣ ସ୍ୱୀୟ ସୈନ୍ୟ ସହିତେ ।
ଯାଇ ସେ ଲଙ୍କା ଦୁର୍ଗକୁ ଘେରିଲା ତ୍ୱରିତେ । ୧୩୩୦ ।
ଦାନ୍ତିକ ରିପୁଙ୍କୁ ଦେଖି ଗତ ଭାଗ୍ୟ କରି ।
ଯକ୍ଷଗଣ ପଳାଇଲେ ନିଜ ପ୍ରାଣ ଧରି । ୧୩୩୧ ।
ଦେଖି ସେ ପୁର ସୁବିଧା, ତା ସୁନ୍ଦର ପଣ ।
ତାକୁ ନିଜ ରାଜଧାନୀ କରିଲା ରାବଣ । ୧୩୩୨ ।
ସେ ପୁର-ଗୃହଚୟ ଉପଯୁକ୍ତ ମତରେ ।
ବାଣ୍ଟି ଭୃତ୍ୟଙ୍କୁ ଦେଲା ସେ ଅତି ପ୍ରୀତିରେ । ୧୩୩୩ ।
ପରେ ଦାନବେଶ୍ୱର ପୁଷ୍ପକ ବିମାନକୁ ।
ଆଣିଲା ବାହୁବଳରେ ଜିଣି କୁବେରକୁ । ୧୩୩୪ ।
ଧନେଶ ସେ କୁତୂହଳେ ଗଲା କୈଳାସକୁ ।
ନିଜ ଭୁଜ ବଳ ଜାଣି ଲଭିଲା ମୋଦକୁ । ୧୩୩୫ ।
ଦେବ ନର କିନ୍ନର ଗନ୍ଧର୍ବ ଯକ୍ଷ ନାଗ—
ପ୍ରତ୍ୟେକଙ୍କି ସମରେ ଜିଣି ହୋଇ ସରାଗ । ୧୩୩୬ ।
ସେମାନଙ୍କ ରୂପବତୀ କନ୍ୟାଙ୍କୁ ଆଣି ।
ବଳେ ନିଜର ରାଣୀ କଲା ବାଂଛିତପାଣି । ୧୩୩୭ ।
ତା ଜନ୍ମ ସହାସ୍ୟ ସୁଖ ସଂଗତ ସନ୍ତାନ ।
ସୈନ୍ୟସଙ୍ଗ ପ୍ରତାପ ମହତ୍ତ୍ୱ ନାନାଜନ । ୧୩୩୮ ।
ପ୍ରତ୍ୟେକ ସଙ୍ଗେ ଲେଖା ପର ଦିନକୁ ଦିନ ।
ବୃଦ୍ଧିକି ପାଉଥାଏ ହୋଇ ନିତ୍ୟ ନୂତନ । ୧୩୩୯ ।

ତାର ଭ୍ରାତା କୁମ୍ଭକର୍ଣ୍ଣ ଅତି ବଳବାନ ।
ତେଜେ ଯୁଦ୍ଧେ କେଏ ନାହିଁ ବିଶ୍ୱେ ଯା ସମାନ । ୧୩୪୦ ।
ସେ ଦିନେ ଖାଇ ମଦ ପିଇ ଛ ମାସ ଯାଏ ।
ଚେଷ୍ଟାହୀନ ହୋଇ ଘରେ ଶବ ପ୍ରାୟେ ଶୋଏ । ୧୩୪୧ ।
ଯଦି ସେ ଦନୁଜ ନିତ ଭୋଜନ କରନ୍ତା ।
ଏ ଚରାଚର ବିଶ୍ୱ ନାରଖାର ହୁଅନ୍ତା । ୧୩୪୨ ।
ସେ ଦୁଷ୍ଟ ସଚେତ ହୋଇ ବହିବା ଦିନରେ ।
ଲୋକତ୍ରୟ ଥରଥର ହୁଅଇ ଭୟରେ । ୧୩୪୩ ।
ରାବଣର ଜ୍ୟେଷ୍ଠପୁତ୍ର ମେଘନାଦ ବୀର ।
ସମରେ ଅତି ନିପୁଣ ଜଗଦେକ ଶୂର । ୧୩୪୪ ।
ତାହା ସଙ୍ଗେ ଯୁଝିବାକୁ ଯୋଦ୍ଧା କେହୁ ନାହିଁ ।
ତା ନାମ ଶୁଣିଲେ ସୁରପୁର କମ୍ପିଯାଇ । ୧୩୪୫ ।
କୁମ୍ଭ ଧୂମ୍ରକେତୁ ଅତୀକ ଅକମ୍ପନ ।
ବଜ୍ରଦନ୍ତାଦି ଯୁଦ୍ଧେଟେ ଚଢ଼ିଁ ଅଗଣନ । ୧୩୪୬ ।
ଜଣେ ଜଣେ ଅନାୟାସେ କରି ସଂଗ୍ରାମକୁ ।
ଜୟ କରି ପାରନ୍ତି ସମସ୍ତ ଜଗତକୁ । ୧୩୪୭ ।
ସର୍ବେ ମାୟାବୀ କାମରୂପୀ ତାଙ୍କ ମନରେ ।
ଦୟା କିବା ଧର୍ମ ସ୍ୱପ୍ନେ ମଧ୍ୟ ନ ସଞ୍ଚରେ । ୧୩୪୮ ।
ଅନେକ ରାବଣ ସିଂହପୀଠାଧୀନ ହୋଇ ।
ନିଜର ଅପରିମିତ ପୁତ୍ରପୌତ୍ରଶ୍ରେଣୀ । ୧୩୪୯ ।
ନିଜ ବନ୍ଧୁ ପରିଜନମାନଙ୍କୁ ଡାକିଣ ;
ସର୍ବେ କ୍ରୋଧେ ଏମନ୍ତ ବୋଇଲେ ତାଙ୍କୁ ଡାକି । ୧୩୫୦ ।
ହେ ଦାନବ ବୀରେ ! ଶୁଣ ଅମ୍ଭମାନଙ୍କର ।
ସହଜ ଶତ୍ରୁ ଅଟନ୍ତି ନିର୍ଜ୍ଜର ନିକର । ୧୩୫୧ ।
ସେମାନେ ଅମ୍ଭକୁ ଦେଖି ପଳାନ୍ତି ଭୟରେ ।
କେବେହେଁ ସ୍ୱତନ୍ତ୍ର ନାହିଁ ରହି ସମ୍ମୁଖରେ । ୧୩୫୨ ।
ସେ ହେତୁରୁ ସହି ନାହିଁ ତାହାଙ୍କ ନିଧନ ।
ଏ ଉପାୟକୁ ଏବେ କର ଅବଲମ୍ବନ । ୧୩୫୩ ।

ଯଜ୍ଞ ଯାଗ ଶ୍ରାଦ୍ଧକର୍ମ ବ୍ରାହ୍ମଣ ଭୋଜନ ।
ଧ୍ୱଂସ, ତୁମ୍ଭେମାନେ କରି ଜଗତେ ଭ୍ରମଣ । ୧୩୫୪ ।
ଏସବୁ କଲେ ଦେବେ କ୍ଷୀଣ ହୋଇ ସେମାନେ ।
ଆସିବେ ମୋର ସମ୍ମୁଖେ ଅନାଗତଧ୍ୟାନେ । ୧୩୫୫ ।
ତେବେ ତାଙ୍କୁ ମାରିବା କିବା ପ୍ରାଣେ ରଖିବା ।
ମୋର ମାନସାନୁସାରେ ନିର୍ଣ୍ଣୟ କରିବା । ୧୩୫୬ ।
ମୋ ପୁତ୍ର ମେଘନାଦ । ସାହସରେ ତୁମ୍ଭର ।
ସମ୍ପ୍ରେରିତ ଧୂର୍ତ୍ତ ବନ୍ଧୁଧମାନଙ୍କର । ୧୩୫୭ ।
ଜୀବନ ହର, ନତୁବା ତାଙ୍କୁ ବନ୍ଦ କର ।
ମୋ ସମ୍ମୁଖକୁ ଆଣ ଜଣେ ଦୟାକୁ ନ ଧର । ୧୩୫୮ ।
ଏପରି ଅନ୍ୟ ଦୈତ୍ୟଙ୍କୁ ମଧ୍ୟ କହି ସେହୁ ।
ତାଙ୍କୁ ସଙ୍ଗେ ଘେନି ଗଲେ ରଣୋତ୍ସାହୀ ହୋଇ । ୧୩୫୯ ।
ଅନେକ ପୁଷ୍ପକଯାନ ବାହାରନ୍ତେ ମଧ୍ୟ ।
ଲକ୍ଷିଲ ଚନ୍ଦ୍ରଙ୍କ ସୈନ୍ୟଗତ ନ ସହୁ । ୧୩୬୦ ।
ରାକ୍ଷସ ବର୍ବର ଘୋର ସିଂହନାଦରେ ।
ସୁରସ୍ତ୍ରୀଙ୍କ ଗର୍ଭପାତ ହେଲା ସ୍ୱର୍ଗପୁରେ । ୧୩୬୧ ।
ରାବଣର ଆଗମନ ଜାଣି ସର୍ବପୁରେ ।
ଦେବେ ପଳାଇ ଲୁଚିଲେ ମେରୁ କନ୍ଦରରେ । ୧୩୬୨ ।
ଦଶମୁଖ ଭ୍ରମଣ କରି ଶୂନ୍ୟ ସୁରପତ ।
ଲୋକଙ୍କୁ ମାତ୍ର ଦେଖି ହୋଇ କୁପିତ ମତ । ୧୩୬୩ ।
ସିଂହନାଦ କଲା ବଜ୍ରବତେ ଗାଳି ଦେଲା ।
ମାତ୍ର ପ୍ରତିବାଣୀ ଏ ଶୁଣି ନ ପାରିଲା । ୧୩୬୪ ।
ସୁଭାବଳାପେ ଜଗତ ଯାତ ସେ ବୁଲିଲା ।
ପ୍ରତ୍ୟକ୍ଷ ହୋଇ କେଏ ତାଙ୍କୁ ନ ଦର୍ଶିଲା । ୧୩୬୫ ।
ଲଙ୍କନ୍ତୁ ବାଟଗ୍ରୀ ତାଳ ବୃତାନ୍ତ ବର୍ଣ୍ଣ—
ପଞ୍ଚବାନ ପ୍ରଭୃତି ଦେବାଧିକାରଗଣ । ୧୩୬୬ ।
ଅନ୍ୟ ସୁର କଲେ ପଳାଇ ସ୍ଥିର ନରେ ।
ସବେ ସ୍ୱଧର୍ମ ମାର୍ଗରୁ ଚ୍ୟୁତ ହେଲେ ତବେ । ୧୩୬୭ ।

ପରମେଷ୍ଠି ସୃଷ୍ଟିର ସମସ୍ତ ସ୍ତ୍ରୀ ପୁରୁଷେ ।
ଦକ୍ଷନନ୍ଦନର ବଶୀ ହୋଇ ଅତି ହରଷେ । ୧୩୬୮ ।
ତା ଚରଣେ ପ୍ରଣମି, ତା ଆଜ୍ଞା ଶିରରେ ।
ଧରି ତାକୁ ଭଜୁଥିଲେ ସବୁ ସମୟରେ । ୧୩୬୯ ।
ମହାରାଜାଧିରାଜ ହୋଇଣ ଜଗତକୁ ।
ବଶୀକରି ଅଧିକାର କଲା ସମସ୍ତଙ୍କୁ । ୧୩୭୦ ।
ପ୍ରୟୋଗ କରି କେବଳ ଆପଣାର ମନ୍ତ୍ର ।
ପରିଚାଳନା କଲା ସକଳ ରାଜ୍ୟତନ୍ତ୍ର । ୧୩୭୧ ।
ତାହା ଆଦେଶେ ମେଘନାଦାଦି ନିଶାଚରେ ।
ଅମରଙ୍କୁ ବାଧିଲେ ଅନେକ ପଥରେ । ୧୩୭୨ ।
ପୁଣି ଧର୍ମ ଧ୍ୱଂସିବାକୁ ନାନାରୂପ ଧରି ।
ଲୁଚାଇଲେ ବେଦ ନଷ୍ଟିଲେ ଧର୍ମମାନ କରି । ୧୩୭୩ ।
ଗୋ ବିପ୍ର-ଦ୍ୱିଜ-ନଗର-ପୁର ଗ୍ରାମଚୟ ।
ଅଙ୍ଗାର ଦହି କଲେ ଲଗାଇ ଧନଞ୍ଜୟ । ୧୩୭୪ ।
ଦୈତ୍ୟେ କରନ୍ତି ବେଦ-ବିପ୍ର-ଗୁରୁ-ନିନ୍ଦନ ।
ଯୋଗେ ଏ ହେବେ ନାହିଁ ତାଙ୍କ ସଦାଚରଣ । ୧୩୭୫ ।
ଆଚରନ୍ତି ନାହିଁ କେହି ଯଜ୍ଞ ତପ ଦାନ ।
ଶୁଣନ୍ତି ନାହିଁ କେହୁ ବେଦ କଥା ପୁରାଣ । ୧୩୭୬ ।
ତପୋଜପ-ବିରାଗ ଯୋଗମୂଳ ପ୍ରଭୃତି ।
ସତ୍କର୍ମ ଶ୍ରବଣ ମାତ୍ରେ ଦୈତ୍ୟପତି । ୧୩୭୭ ।
ଆପେ ସେ ହୁଅନ୍ତି ଏଥିରୁ ଅତି ରୁଷ୍ଟ ।
ସଂହାରନ୍ତି ସତ୍ୱର ନିକର କରେ ନଷ୍ଟ । ୧୩୭୮ ।
ବେଦଶାସ୍ତ୍ର-ପୁରାଣ-ବକ୍ତାଙ୍କୁ ଆଣିଣ ।
ଦେଖି ସେବକେ ଦେଇ ବାଧା ନାନାପ୍ରକାର । ୧୩୭୯ ।
ଦୈତ୍ୟେ ତ ଧର୍ମର ହିଂସ୍ର ଦୁଷ୍କୃତାଚରିତ ।
ତାଙ୍କ ପାପାଚରଣ ଅଟଇ ଅଦ୍ଭୁତ । ୧୩୮୦ ।
କ୍ରମରେ ବଢିଲା ଜଳ ସ୍ରୋତ ତୁଲ୍ୟରେ—
ପରନାରୀ ପରଧନ ଲମ୍ପଟ ପ୍ରଭୃତି । ୧୩୮୧ ।

ଦେବ ମାତୃ ପିତୃ ଗୁରୁ ବଚନେ ନ ଧରନ୍ତ ।
ଜନେ ସଜ୍ଜନଙ୍କଠାନ୍ତୁ ସେବନ ଯେନନ୍ତ ।୧୩୮୨।
ଏମନ୍ତ ନରଗଣ ପ୍ରତ୍ୟକ୍ଷ ଦୃଷ୍ଟ ତ ।
ଏଣୁ ଧର୍ମଚ୍ୟୁତ ହେଲ ସମସ୍ତ ଜଗତ ।୧୩୮୩।
ସର୍ବସିନ୍ଧୁ ପର୍ବତାଦ୍ରି ଭାରଠାରୁ ଜଣେ—
ଦ୍ରୋହୀ ଗୁରୁତର ବୋଲି ବସୁନ୍ଧରା ମଣେ ।୧୩୮୪।
ଖ୍ୟାତ ଦୁଃଖିତ ଧରା ଧରି ଗୋ ସ୍ୱରୂପକୁ ।
ଯାଇ ସୁରମୁନିଙ୍କି କହିଲ ସ୍ୱ-କଷ୍ଟକୁ ।୧୩୮୫।
ଶୁଣି ସେମାନେ ଦୁଃଖ ପ୍ରକଟ ମାତ୍ର କଲେ ।
ପ୍ରତୀକାର କଷ୍ଟ ହେଲେ କରି ନ ପାରିଲେ ।୧୩୮୬।
ମାତ୍ର ସମସ୍ତେ ମିଶି ସଙ୍ଗେ ଘେନି ଭୂମିକି ।
ସତ୍ୟରେ ଗମନ କଲେ ବିରଞ୍ଚି ଭେଟକି ।୧୩୮୭।
ତାଙ୍କୁ ଦେଖି ସବୁ ଜାଣି ବୋଇଲେ ବିଧାତା ।
ମୁହିଁ ହୋଇ ପାରିବ ନାହିଁ ଧରଣୀ-ତ୍ରାତା ।୧୩୮୮।
ଆଗୋ ଧରି ! କେତେକାଳ ଧୀର ହୋଇଥାଅ ।
ଜଗଦୀଶ ମାତ୍ର ଅମ୍ଭମାନଙ୍କ ସହାୟ ।୧୩୮୯।
ସେତ୍ତୁ ସଂକଳ୍ପ ଅମ୍ଭମାନଙ୍କ ଈଶ୍ୱର ।
ସେ ଅବଶ୍ୟ ହୋଇବ ତୋହର ଦୁଃଖହର ।୧୩୯୦।
ଏବେ ଅମ୍ଭେ ସବେ ସେ ସର୍ବଶକ୍ତି-ଚରଣ—
ପାରସରେ ସମସ୍ତରେ ପଶିବା ଶରଣ ।୧୩୯୧।
ଏମନ୍ତେ ଚତୁରାନନ ବଚନକୁ ଶୁଣି ।
ଧୈର୍ଯ୍ୟକୁ ଅବଲମ୍ବି ସବେ କରି ସ୍ତୁତି ।୧୩୯୨।
କେତେ ବନ୍ଧୁ ବୋଇଲେ ଯିବା ବୈକୁଣ୍ଠକୁ ।
ଅନ୍ୟେ ବୋଇଲେ ଯିବା କ୍ଷୀରସମୁଦ୍ରତଟକୁ ।୧୩୯୩।
ଭୋ ଭବାନୀ ସେ ସଭାରେ ମୁହିଁ ମଧ୍ୟ ଥିଲି ।
ଅମ୍ଭ ଜାଣି ଏମନ୍ତ ଉପଦେଶ କଲି ।୧୩୯୪।
ହରି ଅନ୍ତର୍ଯ୍ୟାମୀରୂପେ ପୂର୍ଣ୍ଣ ସବୁ ଠାନରେ ।
ବାହ୍ୟରୂପରେ ସେ ଦିଶେ କେବଳ ପ୍ରେମରେ ।୧୩୯୫।

ତହ ଲ ନା ଏଭେଦଗ ଭାଳ ଲବା ଦେଶ ।
ସର୍ବରେ ସମ୍ପୂର୍ଣ୍ଣରୂପେ ନାହିଁ ଜଗଦୀଶ । ୧୩୯୬ ।
ବଜ୍ରରେ ଯେ ଦେହର ବଢ଼େ ସମେ ବନ୍ଧୁ ।
ଅରଣ୍ୟରୁ ଅତ୍ରିପର ପ୍ରେମେ ସ୍ତବଠଲ । ୧୩୯୭ ।
ଏ ମୋ ବାଣୀକି ସତ୍ୟକ ମାନସ ମାନନ୍ତ ।
ସାଧୁ ସାଧୁ ବୋଲି ବ୍ରହ୍ମା ମୋତେ ପ୍ରଶଂସିଲ । ୧୩୯୮ ।
ପରେ ଅନନ୍ତାଶ୍ରୁ-ନେତ୍ର ପୁଲକିତ-ଗାତ୍ର ।
ହୋଇ ଯେ କରଯୋଡ଼ି କଲି ଏମନ୍ତ ସ୍ତୋତ୍ର । ୧୩୯୯ ।
ଜୟ ଭୁବନାଧିପ ଜନ ସୁଖ ଦାୟକ ।
ଗୋ-ବିପ୍ର-ସଂରକ୍ଷକ ଦୁଷ୍ଟଦାନବାନ୍ତକ । ୧୪୦୦ ।
ଷଡ଼ଧର୍ମଧର ସୀମାର୍ଦ୍ଧି-ମୁକ୍ତ-ବର ।
ପାଳିତ ଚକ୍ରଧର ଧରାପୀଡ଼ାହର । ୧୪୦୧ ।
ଭଗବାନ କୃପାକର ପୀନନ୍ଦ୍ୟାପର ।
ତୋ ସହଜ କରୁଣାରେ ଅମ୍ଭଙ୍କୁ ଉଦ୍ଧର । ୧୪୦୨ ।
ଜୟ ନାରାୟଣ ଜୟ ସଚ୍ଚିଦାନନ୍ଦ ।
ଜୟ ସକଳଗତି ଜୟ ଜୟ ମୁକୁନ୍ଦ । ୧୪୦୩ ।
ଅବାଙ୍ମନସଗୋଚର ଅଚିନ୍ତ୍ୟ-ଚରିତ ।
ମାୟାତୀତ ପରିପୂର୍ଣ୍ଣ ଅଚିନ୍ତ୍ୟ ପବିତ୍ର । ୧୪୦୪ ।
ବୈରାଗୀ ଅନୁରାଗୀ ମନ ତୋରେ ଲଗାଇ ।
ଭକ୍ତି ସନ୍ତୋଷୀ ତୋତେ ପାଇ ତୋ ଗୁଣ ଗାଇ । ୧୪୦୫ ।
ତୁ କର୍ତ୍ତା ପର ସାହା ଛଡ଼ା ତ୍ରିଗୁଣମୟ ।
ଜଗତର ସୃଷ୍ଟି ପାଳନ ଯେବେ ପ୍ରଳୟ । ୧୪୦୬ ।
ସ୍ତ୍ରୀ ପାତକୀ ଜନ ଭବଭୟଭଞ୍ଜନ ।
ମୁଁ ତୋର-ଭକ୍ତିହୀନ ନ ଜାଣେ ତୋ ପୂଜନ । ୧୪୦୭ ।
ଏ ଦୁରେ କରିଣ ଇଚ୍ଛେ ତୋ ପଦ ଭଜନ ।
ଅପରାଧ ! ମୋତେ ଅପରୁ ଉଦ୍ଧର । ୧୪୦୮ ।
ଅନନ୍ତ ବେଦବେଦ୍ୟ ମହାନନ୍ଦମୟ ।
ତୋତେ ଜାଣନ୍ତି ନାହିଁ ଏହା ସତେ ନିଶ୍ଚୟ । ୧୪୦୯ ।

ମାତ ବେଦ କହେ ତୁମ୍ଭ ଧ୍ୟାନପିଣ୍ଡ ବୋଲି ।
ସେ ଦର୍ଶାନ୍ତି ମନର-ଧୃତ ସଦ୍ଗୁଣପାଳ । ୧୪୧୦ ।
ସେ ସ୍ୱର୍ଗ-ପ୍ରକର ସର୍ବପ୍ରକାର ସୁନ୍ଦର ।
ଜଗ୍ଗାଳି ସୁର ସିଦ୍ଧ ମୁନିଙ୍କି ରକ୍ଷା କର । ୧୪୧୧ ।
ତା ଶୁଣି ସର୍ବଙ୍କ ହର ଅଭାଶୁଁ ଏମନ୍ତ ।
ଗମ୍ଭୀରେ ଭଣିଲ ଅପେ ନୋହୁ ପ୍ରକଟିତ । ୧୪୧୨ ।
ସେ ସୁର-ସିଦ୍ଧ ମୁନି ପ୍ରକର । ତୁମ୍ଭ ପର୍ଶେ—
ପରାତ୍ପର ମିଶ୍ରିବଣରେ ଜନ୍ମପତ ହୋଇ । ୧୪୧୩ ।
ଅବତରିବ ସର୍ବାଂଶ ସହିତେ ନରବର ।
ଅଦିତି କଶ୍ୟପଙ୍କୁ ତ ମୁଁ ଦେଇଛି ବର । ୧୪୧୪ ।
ସେ ଦୁହେଁ ସାକେତରେ କୌଶଲ୍ୟା ଦଶରଥ—
ରୂପେ ଜନ୍ମିଅଛନ୍ତି ମୁଁ ହେବି ତାଙ୍କ ସୁତ । ୧୪୧୫ ।
ନାରଦ-ବଚନ ସତ୍ୟ ପାଳିତ ହୋଇବ ।
ଅଦୃଶ୍ୟ ପ୍ରଚ୍ଛନ୍ନ ବ, ତୁମ୍ଭ କଷ୍ଟ ଯିବ । ୧୪୧୬ ।
ଏମନ୍ତେ ପ୍ରଭୁଙ୍କ ବାଣୀ ସର୍ବେ କରି ଶ୍ରବଣ ।
ମହାନନ୍ଦରୁ ଲଭି ଗଲେ ସ୍ୱ ସ୍ୱ ଭବନ । ୧୪୧୭ ।
ବିଧିର ଅନୁମତ ସ୍ୱତନ୍ତ୍ର ସର୍ବଦେବେ ।
ଋକ୍ଷ ବାନର ହୋଇ ମର୍ତ୍ତ୍ୟେ ଜନ୍ମିଲେ ତେବେ । ୧୪୧୮ ।
ସେମାନେ ବଳଶାଳୀ ମହାବୀର ଚତୁର ।
ତାଙ୍କ ଆୟୁଧ କେବଳ ବୃକ୍ଷ ପ୍ରସ୍ତର । ୧୪୧୯ ।
ହରିଙ୍କ ଅଗମନକୁ ନିରେଖି ସକଳେ ।
ବାସ କଲେ ବନ ବପିନ ଗିରିସ୍ଥଳେ । ୧୪୨୦ ।

## ଶ୍ରୀରାମାବତାର

ଅଯୋଧ୍ୟାରେ ଦଶରଥ ନାମକ ନୃପତି ।
ରଘୁବଂଶ-ଚନ୍ଦ୍ର ହୋଇ ବିଦିତ ଜଗତ । ୧୪୨୧ ।
ସେ ଧର୍ମ ଧୁରନ୍ଧର ସୁଗୁଣାକର ରାଜା ।
ପ୍ରଜାପାଳନ-କରଣ-ଶାସନ-କର୍ତ୍ତା ଦାତା । ୧୪୨୨ ।

ତାର ପତ୍ନୀ କୌଶଲ୍ୟା ପ୍ରଭୃତି କାନ୍ତାତତି ।
ସର୍ବେ ପରମ ସୁନ୍ଦରୀ ହରିଭକ୍ତା ସତୀ । ୧୪୨୩ ।
ପୁତ୍ରାର୍ଥୀ ସେ ନୃପତି ଅନେକ ସ୍ୱଦେଶିକ ।
ସ୍ୱପ୍ନରେ ମିଳି ତାଙ୍କୁ ନମି ନିଜର ଦୁଃଖ । ୧୪୨୪ ।
ଜଣାନ୍ତେ ବଶିଷ୍ଠ ମୁନି ବୋଇଲେ ଚିନ୍ତନ ।
କର ନାହିଁ, ସମ୍ଭବିବେ ଗୃହେ ଶ୍ରେଷ୍ଠ ନନ୍ଦନ । ୧୪୨୫ ।
ଏତେ କହି ଡକାଇ ଋଷ୍ୟଶୃଙ୍ଗ ଋଷିଙ୍କ ।
ସେ ତାହାରେ କରାଇଲେ ପୁତ୍ରକାମେଷ୍ଟିକ । ୧୪୨୬ ।
ଯାଗ କୁଣ୍ଡୁ ପାୟସ-ପାତ୍ର ଧରି ପାବକ ।
ପ୍ରତ୍ୟକ୍ଷ ହୋଇ ବୋଇଲେ ହେ ଭୂମିନାୟକ ! ୧୪୨୭ ।
ଏହା କ୍ରମେ ବାଣ୍ଟିଦିଅ ତୋ ପତ୍ନୀଗଣଙ୍କୁ ।
ଭୁଞ୍ଜ ପାଇବୁ ବଶିଷ୍ଠ ଭାବିତ ଫଳକୁ । ୧୪୨୮ ।
ଏତେ କହି ନୃପଙ୍କୁ ଦେଇ ପାୟସ-ପାତ୍ର ।
କ୍ଷଣେ ଅନ୍ତର୍ଦ୍ଧାନ ହୋଇଲେ ବହ୍ନିହୋତ୍ର । ୧୪୨୯ ।
ପାୟସକୁ ନେଇ ଭୂପ ପ୍ରମୋଦିତ ହୋଇ ।
ନିଜ ପତ୍ନୀମାନଙ୍କୁ ସେ ସ୍ଥାନକୁ ଅଣାଇ । ୧୪୩୦ ।
ପ୍ରୀତରେ କୌଶଲ୍ୟାକୁ ଦେଲେ ପାୟସୁଁ ଅଧେ ।
କୈକେୟୀଙ୍କୁ ଦାନ କଲେ ଅଧକରୁ ଅଧେ । ୧୪୩୧ ।
ପରେ ବଳିଲା ଯାହାକୁ କରି ଭାଗ ବେନି ।
ପୁଣି ସେ ଦୁହିଁଙ୍କ ହସ୍ତେ ଦେଲେ ଭୂମିଜାନି । ୧୪୩୨ ।
ସେ ଦୁହେଁ ସେ ଭାଗଦ୍ୱୟ ଏକା ସମୟରେ ।
ସୁମିତ୍ରାଇ କରେ ଦେଲେ ସମାନ ପ୍ରେମରେ । ୧୪୩୩ ।
ତା ପରେ ତିନିରାଣୀ ଗର୍ଭଧାରଣ କଲେ ।
ଶୁଣେ ଶୀଳେ ଗାତ୍ରରେ ଅଧିକେ ଶୋଭିଲେ । ୧୪୩୪ ।
ତାଙ୍କ ଗର୍ଭ ସମୟେ ଘଟିଲା ପ୍ରକାର ।
ଶୁଣ ସଜ୍ଜନ ସ୍ୱାସ୍ଥ୍ୟ ସନ୍ତୋଷ ପ୍ରଚାର । ୧୪୩୫ ।
ଦିନେ ଦିନେ ନବମାସ ପୂରନ୍ତେ ବହିତ ।
ପ୍ରସବ ସମୟ ଆସି ହେଲା ଉପଗତ । ୧୪୩୬ ।

ପବିତ୍ର ଚୈତ୍ରର ଶୁକ୍ଳନବମୀ ତିଥିରେ ।
ପୁନର୍ବସୁ ନକ୍ଷତ୍ରରେ ଅଭିଜିତ୍କାଳରେ । ୧୪୩୭ ।
ଉଚ୍ଚସ୍ଥ ଗ୍ରହପଞ୍ଚକେ କର୍କଟ ଲଗ୍ନରେ ।
ଶୁଭଯୋଗେ ସୁକରଣେ ମାହେନ୍ଦ୍ରକ୍ଷଣରେ । ୧୪୩୮ ।
ରମଣୀରୋତ୍ତମ ସମୟେ କୌଶଲ୍ୟା ମହିଷୀ ।
ଲୋକମଙ୍ଗଳକର କୁମାରକୁ ପାଇଲା । ୧୪୩୯ ।
ତେବେ ଚତୁର୍ଦ୍ଦିଗ ପ୍ରସନ୍ନବତ ହୋଇଲା ।
ପର୍ବତ ସମୂହ ମଣିଗଣେ ଝଟକିଲା । ୧୪୪୦ ।
ମନ୍ଦ ସୁଗନ୍ଧ ଶୀତଳ ପବନ ବହିଲା ।
ନିର୍ମଳ ସଲିଳେ ନଦୀସମୂହ ଶୋଭିଲା । ୧୪୪୧ ।
ସୁରମ୍ୟଭାବେ ଅଗ୍ନିହୋତ୍ରାଗ୍ନି ଜଳିଲା ।
ସମସ୍ତ ବିଶ୍ୱ ଆନନ୍ଦସାଗରେ ଭାସିଲା । ୧୪୪୨ ।
ବ୍ରହ୍ମାଦି ଦେବେ ଚଢ଼ି ନିଜ ନିଜ ବିମାନ ।
ଯାଇ ଶୂନ୍ୟେ ରହି କଲେ ହରିଗୁଣ ଗାନ । ୧୪୪୩ ।
ନାଗେ ମୁନିଏ କଲେ ନାନା ପ୍ରକାରେ ସ୍ତୁତ ।
ରଙ୍ଗରେ ନର୍ତ୍ତନ କଲେ ଅପ୍ସରେ ଯେତେ । ୧୦୪୪ ।
ଗନ୍ଧର୍ବେ କଳରେ ଗୀତ ସୁତାନେ ଗାଇଲେ ।
ସକଳେ ପାରିଜାତ କୁସୁମ ବୃଷ୍ଟି କଲେ । ୧୪୪୫ ।
ସ୍ୱର୍ଗବାସୀଙ୍କ ଚହଲେ ଦୁନ୍ଦୁଭି-ଧ୍ୱନିରେ ।
ଧରାକାଶ ମଧ୍ୟ ଦେଶ ପୂରିଲା ସାନ୍ଦ୍ରରେ । ୧୪୪୬ ।
ପରେ ପ୍ରଭୁବରକୁ ସର୍ବେ ପ୍ରଣାମ କଲେ ।
ଆନନ୍ଦେ ନିଜ ନିଜ ନିବାସେ ପହଞ୍ଚିଲେ । ୧୪୪୭ ।
କୌଶଲ୍ୟାର କୁମାର ସଜ୍ଜନ-ହୃଦର ।
କୋଟିକମୁନିଜନଙ୍କର ଆନନ୍ଦଦାୟର । ୧୪୪୮ ।
ସୁନ୍ଦର ନୀଳଘନ ସମାନ କଳେବର ।
ଏକକ ସଦାସୁଖକର ଚତୁରବର । ୧୪୪୯ ।
କୌସ୍ତୁଭହୃଦୟଭୂଷଣ ପୁଣ୍ଡରୀକଲୋଚନ ।
ସର୍ବଲୋକନିଧାନ ଜଳାସୁରସୂଦନ । ୧୪୫୦ ।

ରାଜା ନାନ୍ଦୀମୁଖ ପରେ କଲେ ଜାତକର୍ମ ।
ବିପ୍ରଙ୍କୁ ଦେଲେ ବହୁ ଗୋରତ୍ନାମ୍ବରବର୍ମ । ୧୪୬୫ ।
ଗଗନୁ ପାରିଜାତ ପୁଷ୍ପ ବୃଷ୍ଟି ହୋଇଲା ।
ଧ୍ୱଜ-ତୋରଣ-କୁମ୍ଭଚୟେ ପୁର ଶୋଭିଲା । ୧୪୬୬ ।
କସ୍ତୁରୀ ଚନ୍ଦ୍ର-ଚନ୍ଦନ କୁଙ୍କୁମ କେଶର—
ପ୍ରକଟ ସୁଗନ୍ଧରେ ଚହଟିଲା ନଗର । ୧୪୬୭ ।
ପୁରୀର ନାରୀ ନରେ ସର୍ବେ ଅତ୍ୟାନନ୍ଦରେ ।
ଉତ୍ସବମାନଙ୍କୁ କଲେ ଅନେକ ବିଧରେ । ୧୪୬୮ ।
ପରେ କୈକେୟୀ ଏକ, ସୁମିତ୍ରା ବେନିସୁତ ।
ପାଇବାରୁ ହେଲା ପୁର-ମୋଦ ବିବର୍ଦ୍ଧିତ । ୧୪୬୯ ।
ନିଶା-ଯୋଷା ଉତ୍କଣ୍ଠିତା ହୋଇ ସନ୍ଧ୍ୟାରେ ।
ସହସା ଦିନନାଥଙ୍କୁ ଦେଖି ଲଜ୍ଜାଭରେ । ୧୪୭୦ ।
ବିବର୍ଣ୍ଣା ହୋଇ ସନ୍ଧ୍ୟା-ରୂପ ଧରିଲା ପରି ।
ସେ କାଳେ ପ୍ରତୀୟମାନା ଅଯୋଧ୍ୟା ନଗରୀ । ୧୪୭୧ ।
ଅଗରୁ-ଧୂପ ଚର୍ଚ୍ଚି ନିଶାମୁଖ-ତମିର ।
ଅବିର ଲସ୍ତେ ଚନ୍ଦ୍ରମା ସାନ୍ଦ୍ର ସମ୍ଭାର । ୧୪୭୨ ।
ମନ୍ଦରଜଡ଼ିତ ରତ୍ନଚୟ ତାରାଗଣ ।
ପୂର୍ଣ୍ଣ କଳାଏ ପୂର୍ଣ୍ଣିମା ତାରକା-ରମଣୀ । ୧୪୭୩ ।
ବେଦୋଦାର୍ତ୍ତ ନାଦାଶ୍ରିତ ସ୍ୱଜନ ଗର୍ଜନ ।
ନାନାଜାତି ବିହଙ୍ଗମ ପ୍ରକର କୂଜନ । ୧୪୭୪ ।
ଏମନ୍ତ କୌତୁକ ଦେଖି ଲୋକ ବଚନ ।
ଏକମାସ ଯାଏ ଅଭୁ ନ କଲା ଗମନ । ୧୪୭୫ ।
ରବିସ୍ତମ୍ଭରୁ ରାତି ଆସି ପାରିଲା ନାହିଁ ।
ମାସ ଦିନ ହେଲା ମୋତେ ନ ଜାଣିଲେ କେହି । ୧୪୭୬ ।
ପରେ ବହୁବିଧରେ ହରଙ୍କ କଲେ ସ୍ତୁତି ।
ପ୍ରଚଳିତ ଭ୍ରମଣ କଲା ପଦ୍ମିନୀ-ପତି । ୧୪୭୭ ।
ହରିଜନ୍ମୋତ୍ସବ ଦେଖି ଲଭି ଅତ୍ୟାନନ୍ଦ ।
ବାହୁଡ଼ିଗଲେ ଗନ୍ଧର୍ବ-ମୁନି-ନାଗ-ବୃନ୍ଦ । ୧୪୭୮ ।

ହେ ରାଜନ ! ମୁଁ ଋଷ୍ୟଶୃଙ୍ଗ ତାପସ ସଙ୍ଗରେ ।
ନରରୂପେ ସାକେତର ଜନ୍ମ ଉତ୍ସବରେ । ୧୪୭୯ ।
ମଧ୍ୟ ବୁଲି ବୁଲି ଯେ ମହୋତ୍ସବକୁ ଦେଖି ।
ଚରିତାର୍ଥ କରିଥିଲି ସେତେ ମୋର ଆଖି । ୧୪୮୦ ।

ତେବେ ଏଥୁଁ ସନ୍ତୁଷ୍ଟ ହୋଇ ନୃପବର ।
ଦେଲ ମୋତେ ଗଜାଶ୍ୱ ରଥ ରତ୍ନ ହେମାମ୍ବର । ୧୪୮୧ ।
ଭୂପତି ସୁତେ ଚିରଞ୍ଜୀବୀ ହୁଅନ୍ତୁ ବୋଲି ।
ସେବେ ମୋତେ ଆଶୀର୍ବାଦ କଲେ କର ତୋଳି । ୧୪୮୨ ।
କେତେକ ଦିନ ପରେ ଆଣାଇ ବଶିଷ୍ଠଙ୍କୁ ।
ନୃପ କହିଲେ ପୁତ୍ର ନାମ କରଣକୁ । ୧୪୮୩ ।
ମୁନି ବୋଇଲେ ହେ ଭୂପ ! ତୋ ଜ୍ୟେଷ୍ଠ ସୁତର ।
ଅନେକ ନାମ ଜଗତେ ପ୍ରସିଦ୍ଧ ଯାହାର । ୧୪୮୪ ।
ଏ ତ ଲୋକସୁଖକର ଆନନ୍ଦାକୂପାର ।
ଏହୁ ହେତୁରୁ ସୁତ୍ର ରାମ ନାମ ଏହାର । ୧୪୮୫ ।
ବିଶ୍ୱ ଭରଣ ପୋଷଣ କାରଣୁ ଭରତ—
ନାମରେ ତୋ ଦ୍ୱିତୀୟ ପୁତ୍ର ହେଉ ଖ୍ୟାତ । ୧୪୮୬ ।
ଜଗଦାଧାର-ରାମପ୍ରିୟଲକ୍ଷଣାକର ।
ଏଣୁ ଲକ୍ଷ୍ମଣ ନାମ ତୋ ତୃତୀୟାତ୍ମଜର । ୧୪୮୭ ।
ଶତ୍ରୁହର ହେବାରୁ ତୋ ଚତୁର୍ଥ ନନ୍ଦନ ।
ଶତ୍ରୁଘ୍ନ ନାମରେ ହେଉ ମିତ୍ରଭଜନ । ୧୪୮୮ ।
ଏପରି ନାମକରଣ କରି ମୁନିବର ।
ବୋଇଲେ ଅନନ୍ତ ଛନ୍ତି ହେ ଦଣ୍ଡଧର । ୧୪୮୯ ।
ତୋ ଗୃହ ସୁତେ ଅଛନ୍ତି ବହୁବେଦସାର ।
ମୁନିଜନ ସର୍ବସ୍ୱ ସବର ପ୍ରାଣାଧାର । ୧୪୯୦ ।

ଏତେ ଶୁଣି ନୃପ ମୋଦେ ମୁନିଙ୍କି ନମିଲ ।
'ସତ୍ୟ ହେଉ ଆଶୀର୍ବାଦ, ମହାତ୍ମନ୍' ବୋଇଲେ । ୧୪୯୧ ।
ଶୁକ୍ଳପକ୍ଷର ନବ-ସୁଧାକର ପ୍ରଭା'ରେ ।
ଦିନଦିନାଭିବୃଦ୍ଧି ଲଭିଲେ କୁମାରେ । ୧୪୯୨ ।

ନାକର ଦ୍ୱାର ପୁଣି ପଞ୍ଚ ପରସ୍ପେ ଦ୍ୱାର ।
ଲକ୍ଷଣ ସ୍ୱାମୀ ହୁଏ ନାଭ ଗମ୍ଭୀ ଯେବ । ୧୪୯୩ ।
ଚରଣ ଷଟ୍‌ପଦ୍ମ ପ୍ରଦ୍ଧବେଦଭ ଘାତରେ ।
ପଦ୍ମବୁଦ ସ୍ୱେଦ-ପାଶେ ବନ୍ଧ ନିରନ୍ତରେ । ୧୪୯୪ ।
ବେନି ଯୋଡ଼ପାଦ ଶ୍ୟାମ ଗୌର କଳେବର ।
ଲୋକ-ଲୋଚନ-ସୁଖଦ ଅତି ମନୋହର । ୧୪୯୫ ।
ତାଙ୍କ ସୌନ୍ଦର୍ଯ୍ୟ ଦେଖି ମାତାମାନେ ଭୁଲାନ୍ତି ।
ଲୁଣ୍ଡ୍ରାଇ ଫିଙ୍ଗନ୍ତି ସ୍ୱ-ଦୃଷ୍ଟି ଦୋଷ ଯିବାକୁ । ୧୪୯୬ ।
ଶ୍ୟାମ ରୂପ ସୌନ୍ଦର୍ଯ୍ୟଶାଳୀ ସୁଗୁଣାକର ।
ମାତ୍ର ତାହାଁ ଅଗ୍ରଜ ଅଟେ ଅଧିକତର । ୧୪୯୭ ।
ଯାର ହୃଦୟେ ସଦା ଭାରୁଣୀ ଚନ୍ଦ୍ର ଥାଏ ।
ତାର ଚରଣ ମନ୍ଦହାସେ ପ୍ରକାଶ ପାଏ । ୧୪୯୮ ।
ଯେ ଅହ୍ଲାଦକ ନିର୍ଗୁଣ ବ୍ରହ୍ମ ନିରଞ୍ଜନ ।
ଜଗତ-ଆମୋଦ କାନ୍ତ ଅଙ୍ଗ ସନାତନ । ୧୪୯୯ ।
ଯେହୁ ବାତ୍ସଲ୍ୟ ଭକ୍ତ ବଶେ ମର୍ତ୍ତ୍ୟଲୋକରେ ।
କୌଶଲ୍ୟା-କୋଳେ ଖେଳର ବାଳଭାବରେ । ୧୫୦୦ ।
ନୀଳାମ୍ବୁଦ ନୀଳାମ୍ବୁଜ-ଶ୍ୟାମ-କଳେବର ।
ଅପାର ଭକ୍ତ-ଶତକୋଟିସ୍ମରମଦର । ୧୫୦୧ ।
କୁଳିଶ-ଧ୍ୱଜାଙ୍କୁଶାଦ୍ୟ ରେଖାଙ୍କିତ ପଦ ।
ତରସ୍ତଚ-ପଦ୍ମଯୁଗମଣ୍ଡି-ବୋଧନଦ । ୧୫୦୨ ।
ନଖ ନିନ୍ଦ-ନକ୍ଷତ୍ର ଯୌତ୍ରବନ୍ଦିତ ।
ରତ୍ନ-ନୂପୁର ନାଦ ମୋହିତ ମୁନିମନ୍ତ । ୧୫୦୩ ।
କିଙ୍କିଣୀଯୁକ୍ତ କଟି, ତ୍ରିବଳିଯୁତୋଦର ।
ଗମ୍ଭୀର ନାଭି କ୍ଷତ ପୁନ'ସମୁନ୍ନତର । ୧୫୦୪ ।
ମଣି-କେୟୂର-ମଣ୍ଡିତ ଦୀର୍ଘ ଭୁଜଦ୍ୱୟ ।
ଭୃଗୁପଦଚିହ୍ନାଙ୍କିତ ବିଶାଳ ହୃଦୟ । ୧୫୦୫ ।
ଶାର୍ଦ୍ଦୂଳ ନଖ ଯୁଗଳ ପଦକ ସଂଯୁତ ।
କମ୍ବୁମୁକ୍ତା ନବରତ୍ନ ହାର-ବିଭୂଷିତ । ୧୫୦୬ ।

ଜମ୍ବୁ ସମାନ କଣ୍ଠ, ମନୋହର ଚିବୁକ ।
ମୁଖ ଜିତ-ଶାରଦସୁଧା-ନିଶାନାୟକ । ୧୫୦୭ ।
ଦନ୍ତଚତୁଷ୍ଟୟ-ଦ୍ୟୁତି ଦୂଷିତ ହୀରକ ।
ଅରୁଣାଧର, କାନ୍ତି ନିର୍ଜିତ-ପ୍ରବାଳକ । ୧୫ ୮ ।
ନିରୁପମ କର୍ଣ୍ଣ ନାସା ଜିତ ତିଳସୁମ ।
ମାଂସଳ କପୋଳ ହତ ସମୁଦ୍ଗୋପମ । ୧୫୦୯ ।
ଅସ୍ପୃଷ୍ଟ ମୃଦୁତ୍ୱ ମୂର୍ଦ୍ଧଜ ସୁକୁନ୍ତଳ ।
ମନୋରମ ନିବିଡ଼ ନୀଳାଳକକୁନ୍ତଳ । ୧୫୧୦ ।
ଏମନ୍ତେ ଶିଶୁ ରାମ ହାସ୍ୟକେ ଲୁବ୍ଧରେ ।
ଶୋଭୁ ଥିବାର ଥିବା ହଳଦିଆ ବାଟରେ । ୧୫୧୧ ।
ଯେ ମନୋହର ଆକାର ବେଦଶେଷାଗୋଚର ।
ଯେ ସ୍ୱପ୍ନେ ଦେଖିଅଛି, ଜାଣଇ ସେ ମାତର । ୧୫୧୨ ।
ଦୂରୀକୃତ ପ୍ରାକୃତ ମାୟାମୋହ ହର ହର ।
ସ୍ୱର୍ଗୀ ରାଜ ପ୍ରେମେ ଲୀଳେ ଶିଶୁତନୁ ଧର । ୧୫୧୩ ।
ବିଶ୍ୱମାତୃପିତୃରୂପ ଶ୍ରୀରାମ ସକଳ ।
ସାକେତବାସୀଙ୍କି କରେ ଆନନ୍ଦ ବହଳ । ୧୫୧୪ ।
ଯେଣୁ ସ୍ୱମାୟ ଦେ ରତ କରେ ନିଜ ମତ ।
ଯେଣୁ ଅବଶ୍ୟ ଲଭଇ ସେହୁ ପର ଗତ । ୧୫୧୫ ।
ରାମ-ପାଦ-ଅମ୍ବୁଜ କେବେ ହେଲେ ଏ ଭୋର ।
ସଂସାର-ସାଗରକୁ ହୋଇ ନ ପାରେ ପାର । ୧୫୧୬ ।
ଧର୍ମିତରବଦବସ୍ତ୍ର ପାପୀ ହଇ—
ଭକ୍ତ ହୋଇ ନାହେ ତା ଭ୍ରୂଭଙ୍ଗ ଅନୁସର । ୧୫୧୭ ।
ଯେ ସ୍ତୁତ୍ୟରୂପ ଯନ୍ତ୍ର ନିଦରଣ ଶୁଣିବେ ।
ପଢ଼ିବୁ ବଳେ, ତାହାରେ ପ୍ରଭୁ କୃପାକରେ । ୧୫୧୮ ।
ସାଧୁମାନେ ଏମନ୍ତ କୋଳେ କରି ଦୋଳିରେ ।
ଚଢ଼ାଇ ଯାଆନ୍ତି ତା ବେଢ଼ି ବହୁଧରେ । ୧୫୧୯ ।
ସୁତବତ୍ସଳା କୌଶଲ୍ୟା ଜାଣି ନ ପାରଇ ।
କେବେ ଜନ ଅଙ୍କ କେବେ ବଦନ୍ତି ଦୂରରେ । ୧୫୨୦ ।

## ବିଶ୍ୱରୂପ ଦର୍ଶନ

ଅନେକ ଯାତ୍ରା ସମସ୍ତ ମାର୍ଜଣା କରିବ ।
ବେଶ କରି ଗଜଦନ୍ତ-ଦୋଳାରେ ଶୁଆଇ । ୧୫୨୧ ।
ଇଷ୍ଟଦେବତା ପୂଜା ନିମିତ୍ତ ନାନା କରେ ।
ନାନାବିଧ ପିଷ୍ଟକ କରି ଉତ୍ସବରେ । ୧୫୨୨ ।
ଦେବତାଙ୍କୁ ପୂଜି ପକ୍ୱାନ୍ନଙ୍କୁ ରଖିଲ ।
ଯେଉଁଠାରେ କୃଷ୍ଣ ଥିଲେ ପୁତ୍ରଙ୍କୁ ବସାଇଲ । ୧୫୨୩ ।
ସେ ଭକତା ହୋଇ ଦେଖିଲ ଭବର ଗମନ ।
କରି ଅନାଇଲ ତହିଁ ଶୋଭନ୍ତି ନନ୍ଦନ । ୧୫୨୪ ।
ଫେରିଆସି ଦେଖିଲ ସ୍ୱପୁତ୍ର ଏ ଠାବରେ ।
ପିଷ୍ଟକ ଭୋଜନ କରୁଅଛି ଆନନ୍ଦରେ । ୧୫୨୫ ।
ଏମନ୍ତ ଯେ ସ୍ଥାନଦ୍ୱୟରେ ତନୟଦ୍ୱୟଙ୍କୁ ।
ଦେଖି ପାଇଲ ବିସ୍ମୟ ପୁଣି ବିଭ୍ରମଙ୍କୁ । ୧୫୨୬ ।
ସତୀ କିବା ଭ୍ରାନ୍ତି କିବା ମହିମା କାହାର ।
କିଛି ନ ଜାଣି ପାରି ଅଛନ୍ତି ଚିନ୍ତି ତାର । ୧୫୨୭ ।
ମାତାର ଏମନ୍ତ ଜାଣି ମନଭାବ ହରି ।
ଅତ୍ୟଦ୍ଭୁତ ରୂପଙ୍କୁ ପ୍ରକାଶିଲ ହରି । ୧୫୨୮ ।
କୋଟି କୋଟି ବ୍ରହ୍ମାଣ୍ଡ ପ୍ରତ୍ୟେକ ରୋମକୂପେ ।
ପରିଭ୍ରମଣ କରନ୍ତି ଅଣୁର ସ୍ୱରୂପେ । ୧୫୨୯ ।
ଅନେକ ରବି ଶଶୀ ବେ ଚନ୍ଦ୍ରାନନ,
ଭୁବନେ ପାରାବାର ଧରାଧର କାନନ । ୧୫୩୦ ।
ଦେଶ କାଳ କର୍ମାଦି ସମସ୍ତ ଦୃଷ୍ଟିଗତ ।
ଯାହା ସ୍ୱପ୍ନରେ ମଧ୍ୟ ହୋଇ ନ ଥିଲ ଶ୍ରୁତ । ୧୫୩୧ ।
ଜଗନ୍ମୋହିନୀ ମାୟା ଦେଖେ ଯୋଡ଼ିଛି ହାତ ।
ଭଗବାନ ମାୟା-ନର୍ତ୍ତିତ ଜୀବବ୍ରାତ ୧୫୩୨ ।
ଭବ-ମୁକ୍ତି-ଦାତୀ ଭକ୍ତି ସେବା କରେ ସ୍ତୁତ ।
ସେ ସବୁ ଦେଖି ଯଶୋଦା ବୋଇଲ୍ୟାର ମତ । ୧୫୩୩ ।

ସେ ଅବଳା ଚରଣରେ ଯୋଡ଼ି ବେନି ପାଣି ।
　　ପୁଲକିତଗାତ୍ରରେ ହୋଇ ଗଦଗଦବାଣୀ । ୧୫୩୪ ।
କୌଶଲ୍ୟାଙ୍କୁ ବୁଝି ରାମ ଚରଣରେ ।
　　ପ୍ରଣମିଲ ଭକ୍ତି-ଶ୍ରଦ୍ଧା-ଯୁକ୍ତ ମାନସରେ । ୧୫୩୫ ।
ଭକ୍ତିରତା ମାତାଙ୍କୁ ଦେଖି କରୁଣାରେ ହରି ।
　　ବର୍ତ୍ତମାନ ପୂର୍ବ ଶିଶୁ-ଶରୀରକୁ ଧରି । ୧୫୩୬ ।
ମାତା ସ୍ତବ କରି ନ ପାରି ହର୍ଷର ଭରେ ।
　　ଜଗତ୍ପିତାଙ୍କୁ ମୁଁ ତ ମଣେ ସୁତ ରୀତରେ । ୧୫୩୭ ।
ହେ ଦୟାମୟ ! ମୋହଠାରେ କରୁଣା କରି ।
　　ମାୟାସମ୍ପର୍କଜନ୍ମ ମୋତେ ସନ୍ତତ ରକ୍ଷର । ୧୫୩୮ ।
ପରେ ରାମ ମାତାଙ୍କୁ ବହୁତ ପ୍ରବୋଧିଲେ ।
　　ଏ ରହସ୍ୟ ପ୍ରକାଶ କରିବା ନିଷେଧିଲେ । ୧୫୩୯ ।
ଏପରି ବାଲକ୍ରୀଡ଼ା ବହୁବିଧରେ କରି ।
　　ସାକେତପୁରବାସୀଙ୍କି ସୁଖୀ କଲେ ହରି । ୧୫୪୦ ।
ବଶିଷ୍ଠ ମୁନୀଶ ଅସି କେତେକାଳ ପରେ ।
　　ଗୃହସ୍ଥଙ୍କ ଚୂଡ଼ାକର୍ମ କଲେ କ୍ରମରେ । ୧୫୪୧ ।
ଭ୍ରାତୃଚତୁଷ୍ଟୟ ଜନ-ମନସ୍-ନୟନ—
　　ଆନନ୍ଦୋତ୍ପାଦ, ଖେଳନେ କରେ କାଳଯାପନ । ୧୫୪୨ ।
ଯେ ନିତ୍ୟ ବ୍ରହ୍ମ ମନୋବଚନାଗୋଚର ।
　　ସେ ହେଲେ ଦଶରଥ-ଚତ୍ୱରେ କ୍ରୀଡ଼ାପର । ୧୫୪୩ ।
ଭୋଜନ ପାଇଁ ଜନନୀ ଜନକ ଡାକିଲେ ।
　　ରାମ ପଳାୟନ କରେ ବାଳକଙ୍କ କୁଳେ । ୧୫୪୪ ।
ଯାକୁ ମହାଦେବ ବିଧା ବେଦ ଜାଣେ ନାହିଁ ।
　　ତାଙ୍କୁ ଧରିବ ଜନନୀ କେ ଭାବ ଗୋଡ଼ାଇ । ୧୫୪୫ ।
ଧରେ ନ ଅଛି ରାମ ଦଧି ଖଚ ମୁହଁରେ—
　　ଲକ୍ଷିପଥ ହୋଇବାକୁ ଧାଇଁ ଚଉବରେ । ୧୫୪୬ ।
ରାମ ପୂର୍ବେ ନିଶ୍ଚଳ ଏବେ ଅତି ଚଞ୍ଚଳ ।
　　ତା ଚରିତ ତ ଅଗମ୍ୟ ଦୁରୂହ ନିର୍ମଳ । ୧୫୪୭ ।

ଯେ ବର୍ଣ୍ଣକର୍ମର ବାହ୍ୟଜାଳ ହେତୁ ।
ତାହାରେ ହେଲେ କେବେହେଁ ନୁହନ୍ତି ବର୍ଣ୍ଣିତ । ୧୫୪୮ ।
ବାଲ୍ୟ ସମୟୁ ରାମଚନ୍ଦ୍ର ଗୃହସୂତ୍ରଙ୍କର ।
ଉପନୟନ କଲେ ଅଯୋଧ୍ୟାପୁରୀଶ୍ୱର । ୧୫୪୯ ।
ମୁନିବର ବଶିଷ୍ଠଙ୍କ ଅନ୍ତିକକୁ ଯାଇ ।
ବିଦ୍ୟାଭ୍ୟାସ କଲେ ଅତି ଶ୍ରଦ୍ଧାଯୁକ୍ତ ହୋଇ । ୧୫୫୦ ।
ଯାହାର ନିଃଶ୍ୱାସରୁ ନିଗମ ନିର୍ଗତ ।
ସେ ଶ୍ରଦ୍ଧାରେ ପଢ଼ିବା ନୁହେ କି ଅଚମ୍ଭିତ । ୧୫୫୧ ।
ଅତି ସ୍ୱଳ୍ପ ସମୟରେ ସେହୁ ରଘୁବର ।
ବହିଲେ ସକଳ ବିଦ୍ୟାନିପୁଣ ହୋଇ । ୧୫୫୨ ।
କାଣ୍ଡ କୋଦଣ୍ଡ ଧରି ସେମାନେ ଚଢ଼ିଧରେ ।
ବିହରନ୍ତି ହର୍ଷେ ରମ୍ୟୋଦ୍ୟାନମାନଙ୍କରେ । ୧୫୫୩ ।
ତାଙ୍କ ରୂପ ଲାବଣ୍ୟ ଦେଖିବା ପ୍ରାଣୀଚୟ ।
ମୋହ-ପାରାବାରରେ ବୁଡ଼େ ହୋଇ ଅଥୟ । ୧୫୫୪ ।
ରାମଙ୍କୁ କୋଶଳର ସକଳ ନାରୀ-ନରେ ।
ଦେଖନ୍ତି ସ୍ୱପ୍ରାଣଠାରୁ ଅଧିକ ପ୍ରେମରେ । ୧୫୫୫ ।
କେବେ କେବେ ଅନୁଜ ମିତଙ୍କ ସଙ୍ଗେ ରାମ ।
ବନକୁ ଗମନ କରି ମାରି ମୃଗଗ୍ରାମ । ୧୫୫୬ ।
ସେ ମାଂସ କରେ ଭ୍ରାତୃମିତ୍ରସହ ଭୋଜନ ।
ପାଳେ ସର୍ବଦା ଜନନୀ-ଜନକ-ବଚନ । ୧୫୫୭ ।
ନିର୍ବାଣ-ହେତୁ ମୁନି ଯାଏ ବୈକୁଣ୍ଠକୁ ।
ରାମ ସଦା କରେ ଲୋକହିତସାଧନକୁ । ୧୫୫୮ ।
ନିତ ସକାଳେ ଉଠି ମାତୃପିତୃ ଗୁରୁଙ୍କୁ ।
ପ୍ରଣମି ସେ କରନ୍ତି ଅନ୍ୟ କାର୍ଯ୍ୟମାନଙ୍କୁ । ୧୫୫୯ ।
ପୁଣି ସେ ବୃଦ୍ଧଙ୍କ ମୁଖୁଁ ବେଦଶାସ୍ତ୍ର ଶୁଣି ।
କ୍ରମେ ମିତ୍ରଙ୍କୁ ବୁଝାଏ ବିପଦରେ ବଣି । ୧୫୬୦ ।
ଏମନ୍ତ ରାମଚନ୍ଦ୍ରର ସଦାଚରଣ ।
ନୃପର ମନକୁ କଲା ପୂର୍ଣ୍ଣ ଆନନ୍ଦେ । ୧୫୬୦ ।

ଯେ ଜନ୍ମ-ରୂପ-ନାମ ରହିତ ସର୍ବଗତ ।
ବ୍ରହ୍ମ ନିରୀହ ନିଷ୍କଳ ନିର୍ଗୁଣ ଅଚ୍ୟୁତ । ୧୫୬୨ ।
ସେ ମର୍ତ୍ତ୍ୟଲୋକରେ ଜନ୍ମି ଭଲ ଭକ୍ତଗଣ ।
ତାରଣ କାରଣ ବହୁ ବସୁଦ୍ଧାଚରଣ । ୧୫୬୩ ।

## ବିଶ୍ୱାମିତ୍ରାଗମନ

ଶୁଣ ଅନ୍ୟ ଚରିତ ବିଶ୍ୱାମିତ୍ରାଶ୍ରମର ।
ପାଶେ ଥାନ୍ତି ମାରୀଚ ସୁବାହୁ ନିଶାଚର । ୧୫୬୪ ।
ସେ ବେଦଦ୍ୱେଷୀଙ୍କ ଭୟେ ଯେତେ ମୁନିକୁଳ ।
ଯଜ୍ଞଯାଗ କରି ନ ପାରି ବଡ଼ ଆକୁଳ । ୧୫୬୫ ।
ଗାଧି ବିଶ୍ୱାମିତ୍ର ଏକ ଯଜ୍ଞ କରିବାକୁ ।
ପାଇଲେ ପ୍ରଥମେ ସେ ଦୁଷ୍ଟଙ୍କୁ ଦଣ୍ଡିବାକୁ । ୧୫୬୬ ।
ସେ କାର୍ଯ୍ୟ କରିବାକୁ ଶ୍ରୀରାମ ବିନା କେହି ।
ସମର୍ଥ ନୁହେ ବୋଲି ଚିତ୍ତେ ସୁସ୍ପଷ୍ଟ ହୋଇ । ୧୫୬୭ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ନେବାକୁ ସେ ମୁନିଶ ।
ଦଶରଥ-ସିଂହଦ୍ୱାରେ ହୁଅନ୍ତେ ପ୍ରବେଶ । ୧୫୬୮ ।
ବାର୍ତ୍ତା ଶୁଣି ନୃପ ଆସି ନମି ସେ ଋଷିଙ୍କୁ ।
ନେଇ ନିଜ ପୀଠ ଦେଇ ପଖାଳି ପାଦକୁ । ୧୫୬୯ ।
ବହୁମତେ ପୂଜା କରି ବିବିଧ ଭୋଜନେ ।
ସନ୍ତୃପ୍ତ କରି ବସାଇ ସୁକୋମଳାସନେ । ୧୫୭୦ ।
ସେ ପୁତ୍ରଙ୍କୁ ଆଣି ତାଙ୍କୁ ପ୍ରଣାମ କରାଇ ।
ରାମ ମୁଖ ଦେଖି ମୁନି ବିରତ ଭଜିଲ । ୧୫୭୧ ।
ରାମାନନ-ଶରଚ୍ଚନ୍ଦ୍ର ଅଗ୍ରେ ସେ ମୌନିବର ।
ନେତ୍ରନିଶ୍ଚଳ-ମନସ ହୋଇଲେ ଚକୋର । ୧୫୭୨ ।
ରାଜା ବୋଇଲେ କରିବେ କି ଦେବ ତପୋଧନ ।
କହ କାହିଁକି ଏଠାକୁ ତୁମ୍ଭ ଆଗମନ । ୧୫୭୩ ।
କେଉଁ ଅଭାବକୁ ମୁହିଁ ପାଳିବ ଅରେ ।
ପାଳନ ଦଣ୍ଡବୁଝି ନ ବଞ୍ଚିବ ମନରେ । ୧୫୭୪ ।

ତା ଶୁଣି ମୁନି ବୋଇଲେ ଅହେ ନରବର ।
ଏତ ଯଜ୍ଞ କରିବାକୁ ସଙ୍କଳ୍ପ ମୋହର । ୧୫୭୫ ।
ସ୍ୱତ୍ୱ ପୀଡ଼ାକୁ ତେଜ ସ୍ୱଜନରକ୍ଷଣେନ୍ଦ୍ର !
ମୋ ହସ୍ତେ ପଠାଅ ଲକ୍ଷ୍ମଣ ରାମଚନ୍ଦ୍ର । ୧୫୭୬ ।
ଯଜ୍ଞ ରକ୍ଷ, ମିଥ୍ୟା ମାୟା ମୋହ କର ଦୂର ।
ଏଥିରେ ତୁମ୍ଭ ଧର୍ମ ଗୋତ ହେବ ବିସ୍ତାର । ୧୫୭୭ ।
ପୁଣି ତୁମ୍ଭ ନନ୍ଦନଙ୍କ ମଙ୍ଗଳ ହୋଇବ ।
ମୋହର ସଙ୍କଳ୍ପିତ ଯଜ୍ଞ ସିଦ୍ଧ ପୂରିବ । ୧୫୭୮ ।
ଏମନ୍ତ ଅପ୍ରିୟବାଣୀ ଶୁଣନ୍ତେ ନୃପବର ।
ହୃଦୟ କମ୍ପିଲା ମୁଖ ହେଲା ଅସୁନ୍ଦର । ୧୫୭୯ ।
ସେ ବୋଇଲେ ହେ ମୁନୀଶ ! ବୃଦ୍ଧ ସମୟରେ ।
ଲଭିଲି ଏ ଚାରୋଟି ପୁତ୍ର ବହୁ ଯତ୍ନରେ । ୧୫୮୦ ।
ସେ ବିଷୟ ବିବେଚନା କିଛିହିଁ ନ କର ।
ତୁମ୍ଭେ କରୁଛ କଠିନ ଯାଚନା ଏପର । ୧୫୮୧ ।
ମାଗ ଗୋ, ପୃଥ୍ୱୀ କୋଷ ଏବଂ ଦେହ ପ୍ରାଣ ।
ପଲକେ ପ୍ରମୋଦ ଚିତ୍ତେ କରିବି ମୁଁ ଦାନ । ୧୫୮୨ ।
ମୋ ପ୍ରାଣଠାରୁ ସକଳ ସୁତେ ଅତିପ୍ରିୟ ।
• ତାଙ୍କୁ ଦେଇ ପାରିବି ନାହିଁ ହେ ସହୃଦୟ । ୧୫୮୩ ।
ପୁଣି ଜ୍ୟେଷ୍ଠଠାରେ ଘୋର ରାକ୍ଷସପ୍ରକର ।
କେଉଁଠାରେ ସୁକୁମାର କୁମାରେ ମୋହର । ୧୫୮୪ ।
ଏତେ ଶୁଣି ନୃପତିର ବାତ୍ସଲ୍ୟ ଭାବକୁ ।
ମନେ ଗଣି ଋଷି ମୁନି କ୍ରୁଦ୍ଧିଲେ ମୋହକୁ । ୧୫୮୫ ।
ତେବେ ବଶିଷ୍ଠ ବୁଝାଇ ଅନେକ ପ୍ରକାରେ ।
ନୃପର ସଂଶୟ ନିବାରିଲେ ତରେ । ୧୫୮୬ ।
ତେବେ ନୃପ ଡାକିଲେ ରାମକୁ ଲକ୍ଷ୍ମଣଙ୍କୁ ।
ବହୁବିଧେ ଉପଦେଶ ଦେଇ ସୌମିତ୍ରିଙ୍କୁ । ୧୫୮୭ ।
କହିଲେ ଏ ମୋ ପ୍ରାଣପ୍ରିୟ ନନ୍ଦନ ଦ୍ୱୟ ।
ହେ ମୁନିବର ! ଏଣିକି ତୁମ୍ଭର ତନୟ । ୧୫୮୮ ।

ଏତେ ବୋଲି ପୁତ୍ରଙ୍କର ବେନି ଦଣ୍ଡକର ।
ମୁନି କରେ ସମର୍ପଣ କଲେ ନରବର । ୧୫୮୯ ।
ପରେ ସେ ଦୁଇ କୁମର ଜନକଙ୍କୁ ପ୍ରଣମି ।
ଅନ୍ତଃପୁରରେ ପ୍ରବେଶି ଜନନୀଙ୍କି ନମି । ୧୫୯୦ ।
ମସ୍ତକରେ ନିବେଶି ତାହାଙ୍କ ଆଶୀର୍ବାଦ ।
ବିଶ୍ୱାମିତ୍ର ସଙ୍ଗେ ଗଲେ ଲଭି ଅତି ମୋଦ । ୧୫୯୧ ।
ସେ ପୁରୁଷ ସିଂହ ଦ୍ୱୟ ଅରୁଣ ଲୋଚନ ।
ନୀଳାମ୍ବୁଜ ଚମ୍ପକକାନ୍ତି ଯୁବାପଘନ । ୧୫୯୨ ।
ପୀତାରୁଣାମ୍ବରଧର ତୃଣୀର-କର ।
ବିଶ୍ୱାମିତ୍ର ମୁନିକାଙ୍କ୍ଷୀ କରଣ ତତ୍ପର । ୧୫୯୩ ।
ସେ ତନଦ୍ୱେଁ ଯାଇ ଘୋର ବନ ପ୍ରଦେଶରେ ।
ଭୟଙ୍କରୀ ତାଡ଼କାକୁ ଭେଟିଲେ ବାଟରେ । ୧୫୯୪ ।
ମୁନି ପ୍ରେରଣେ ଏକ ମାର୍ଗଣେ ତାକୁ ରାମ ।
ବଧି କୃପାରେ ପ୍ରଦାନ କଲେ ନିଜ ଧାମ । ୧୫୯୫ ।
ସେକାଳେ ବଳାତିବଳା ବିଦ୍ୟାଯୁଗଳକୁ ।
ମୁନି ମୋଦେ ଦେଲେ ସ୍ୱପ୍ରଭୁ ବିଦ୍ୟାକରକୁ । ୧୫୯୬ ।
ଯା ପ୍ରଭାବେ କ୍ଷୁଧାତୃଷା କେବେ ନ ଲାଗଇ ।
ବଳ ବଢ଼ାଇ ପ୍ରତାପ ବେଶୀ ପ୍ରକାଶଇ । ୧୫୯୭ ।
ପରେ ସେ ଦୁହିଁକି ସେ ନିଜର ଆଶ୍ରମକୁ ।
ନେଇ ଦାନ କଲେ ଦିବ୍ୟ ଶସ୍ତ୍ରାସ୍ତ୍ରଚୟକୁ । ୧୫୯୮ ।
ପୁଣି କନ୍ଦମୂଳଫଳ ଭୋଜନେ ତାଙ୍କୁ ସେ ।
ତୃପ୍ତ କଲେ ଅତି ପ୍ରେମଯୁକ୍ତ ମାନସେ । ୧୫୯୯ ।
ପରଦିନେ ମୁନିଏ ଯାଗେ ପ୍ରବେଶିତ ହୋଇ ।
ମଖ ରକ୍ଷନ୍ତେ ଜଗି ରହିଲେ ବେନି ଭାଇ । ୧୬୦୦ ।
ସବନ ଉପାନ୍ତର ଶୁଣି ନାଗଗୃହର ।
ତେବେ ସୁରବୈରୀଙ୍କ ଆଇଲେ ସତ୍ୱର । ୧୬୦୧ ।
ରାମ ଅପ୍ରମାନ ଏକ ବାଣ ପ୍ରୟୋଗିଲେ ।
[illegible] ସିନ୍ଧୁପାରେ [illegible] । ୧୬୦୨ ।

ପୁଣି ସେ ପବନାସ୍ତ୍ରେ ସୁବାହୁକୁ ନାଶିଲ ।
ଅବଶିଷ୍ଟ ଦୈତ୍ୟଙ୍କୁ ଲକ୍ଷ୍ମଣ ସହାରିଲ । ୧୨୦୩ ।
ଦୈତ୍ୟେ ମରନ୍ତେ ଋଷିଏ ନିଶ୍ଚିନ୍ତ ହୋଇଲେ ।
ବେଦସ୍ତବଙ୍କି ଦେବେ ମୁନିଏ ସ୍ତୁତି କଲେ । ୧୨୦୪ ।
ରାମଚନ୍ଦ୍ର କୃପା କର ବ୍ରାହ୍ମଣଜନରେ ।
କେତେ କାଳ ନିବାସ କଲ ସେ ଆଶ୍ରମରେ । ୧୨୦୫ ।
ସେ ସବୁଁ ହେଲେ ମଧ୍ୟ ତାଙ୍କୁ ବିପ୍ର ପାଳି ।
କନ୍ତରେ ଶୁଣୋଇଲ ପୁରାଣଚରିତମାଳା । ୧୨୦୬ ।
ଦିନେକ ବିଶ୍ୱାମିତ୍ର ମିଥିଲ-ଧନୁର୍ଯାଗ—
ବୃତ୍ତାନ୍ତକୁ କହନ୍ତେ ରାମ ହୋଇ ସରାଗ । ୧୨୦୭ ।
ତାଙ୍କୁ ଦେଖିବା ନିମିତ୍ତ ଲକ୍ଷ୍ମଣ ସହିତ ।
ମୁନିବର ପଶ୍ଚାତରେ ଗମିଲ ତ୍ୱରିତ । ୧୨୦୮ ।
ଗୌତମର ସଦ୍ଧାନ ଏକ ଆଶ୍ରମକୁ ।
ମାର୍ଗରେ ଦେଖି ରାମ ପୁଚ୍ଛନ୍ତେ ତା ହେତୁକୁ । ୧୨୦୯ ।
ମୁନିଏ ସେ କାରଣକୁ ବଖାଣି ବୋଇଲ ।
ଶାପ ହେତୁରୁ ଗୌତମ ପତ୍ନୀ ହୋଇ ଶିଳା । ୧୨୧୦ ।
ତୋ ପାଦ-ରଜକୁ ବାଞ୍ଛି ଅଛି ଏଠାରେ ।
ହେ କୃପାକର ! ଏବେ କୃପା କର ତାହାରେ । ୧୨୧୧ ।

## ଅହଲ୍ୟା-ଶାପୋଦ୍ଧାର

ତା ଶୁଣି ନିଜ ପବିତ୍ର ପଦେ ରଘୁମଣି ।
ଛୁଇଁନ୍ତେ ଶିଳା ଅହଲ୍ୟା ହୋଇ ସେହିକ୍ଷଣି । ୧୨୧୨ ।
ଲୋକାଭିରାମ ରାମକୁ ସମ୍ମୁଖେ ଅନାଇ ।
ବେନି କରତଳ ଯୋଡ଼ି ଭକ୍ତିପୂର୍ଣ୍ଣା ହୋଇ । ୧୨୧୩ ।
ପୁଲକିତ ଶରୀରେ ଗଦ୍‌ଗଦ କଣ୍ଠସ୍ୱରେ ।
ପ୍ରଣମି ପଖାଳିଲ ତ ପାଦ ପ୍ରେମାଶ୍ରୁରେ । ୧୨୧୪ ।
ପରେ ହରି-କୃପା ପାତ୍ରୀ ହୋଇ ଧୈର୍ଯ୍ୟ ଧରି ।
ମଞ୍ଜୁଳ ବଚନରେ ସ୍ତୁତି କଲ ଏପରି । ୧୨୧୫ ।

ଜୟ ଜ୍ଞାନାଗମ୍ୟ ରାମ ! ଅପୂତା ସ୍ତ୍ରୀ ମୁହିଁ ।
ସଂସାରକର୍ମପ୍ରବନ୍ଧରେ ଅଛି ଛୁହି । ୧୬୧୬ ।
ହେ ଦୁଷ୍ଟାସୁରକୁଳ-ବନ ଦାବ-ପାବକ !
ଚନ୍ଦ୍ରେଶ-ଚକୋର-ସୁଧାନିଶା-ନାୟକ । ୧୬୧୭ ।
ହେ କରୁଣାଳବାଳ ! ସଜ୍ଜନସୁନ୍ଦର ।
ତୋ ଚରଣ ମୋ ଶରଣ, ମୋତେ ରକ୍ଷା କର । ୧୬୧୮ ।
ମୁନି ଶାପ ଦେଇ ଥିଲେ ମୋ ଅନ୍ୟାଚାର ।
ଯେଣୁ ଦେଖି ପାଇଲି ତୁଲେ ତୋ ଅବତାର । ୧୬୧୯ ।
ତୋ ଦର୍ଶନ ଅଟଇ ଭବାମ୍ବୁଧି-ମୋଚନ ।
ତା ମହିମାକୁ ଜାଣେ କେବଳ ତ୍ରିଲୋଚନ । ୧୬୨୦ ।
ମୋ ମନାଳି ତୋ ପଦ-ପଦ୍ମ-ପରାଗାସକ୍ତ ।
ସଦା ହେଉ, ଏହା ଦାନ କର ହେ ଶ୍ରୀଯୁକ୍ତ ! ୧୬୨୧ ।
ଯେଉଁ ପାଦଜାତଗଙ୍ଗାକୁ ଶିବ ଶିରେ ଧରେ ।
ଯାହାକୁ ବିଧାତା ପୂଜି ପାଇଥିଲା ଥରେ । ୧୬୨୨ ।
ସେ ପାଦେ ମୋ ମ୍ଳାନ ଶିର ଲଗାଇ ପାରିଲି ।
ଆଉ କେଉଁ ଭାଗ୍ୟ ଅଛି ଏହାଠାରୁ ବଳି ? ୧୬୨୩ ।
ଏହା ବୋଲି ଗୌତମ ପତ୍ନୀ ପୁଣ ଶ୍ରୀରାମ—
ଚରଣ ତଳେ ଜାନୁ ଯୁଗେ କରି ପ୍ରଣାମ । ୧୬୨୪ ।
ସମ୍ପଦକୁ ଲଭି ରାମାନୁଜଙ୍କୁ ପାଇ ।
ନିଜ ପତି-ସନ୍ନିଧିକି ଗଲା ପ୍ରୀତା ହୋଇ । ୧୬୨୫ ।
ପରେ ସେ ଭାଇ ଦୁହେଁ ସେହି ସ୍ଥାନରୁ ଚଳିଲେ ।
ଯାଇ ଗଙ୍ଗା ତୀରେ ଆସରେ ପହୁଞ୍ଚିଲେ । ୧୬୨୬ ।
ପୂଜନୀୟ ଗଙ୍ଗାକୁ ସଲକ୍ଷ୍ମଣ ଶ୍ରୀରାମ ।
ଅତ୍ୟନ୍ତ ଭକ୍ତିଭାବେ ଅର୍ପିଲେ ପ୍ରଣାମ । ୧୬୨୭ ।
ମୁନି ମୁଖୁଁ ସେ ନଦୀର ସମସ୍ତ ଚରିତ ।
ଶ୍ରବଣ କରି ବେନିବୀର ହେଲେ ମୁଦିତ । ୧୬୨୮ ।
ପରେ ସେ ଭାଇ ଦୁହେଁ ସେ ତରଣୀ-ସବଳରେ ।
ସ୍ନାନାଦି ତର୍ପଣ କଲାପ ଅତରି ସମରେ । ୧୬୨୯ ।

## ମିଥିଳାପ୍ରବେଶ

ସେଠାରୁ ଗମନ କରି ମିଥିଳା ନଗରେ ।
ଅନାୟାସେ ପ୍ରବେଶିଲେ ଯଥା ସମୟରେ । ୧୬୩୦ ।
ସେ ପୁରବର-ରମ୍ୟତା ଶ୍ରୀରାମ ଲକ୍ଷ୍ମଣ—
ମାନସକୁ ଅବଲମ୍ବେ କଲେ ଆକର୍ଷଣ । ୧୬୩୧ ।
ବହୁବିଧ ବାପୀକୂପତଡ଼ାଗପ୍ରକର ।
ସୁଧାସମ ଜଳେ ମଣି-ସୋପାନେ ସୁନ୍ଦର । ୧୬୩୨ ।
ପୁଣି ବିବିଧ ଜଳଜାତବ୍ରାତେ ଶୋଭିତ ।
ନାନା ବର୍ଣ୍ଣ ଭୃଙ୍ଗ-କଳନାଦେ ମୁଖରିତ । ୧୬୩୩ ।
ପୁରର ଚଉପାଶେ ଉପବନ ରଞ୍ଜିତ ।
ମନୋହର ପତ୍ର ପୁଷ୍ପ ଫଳ ଭରିତ । ୧୬୩୪ ।
ବହୁ ବିହଗ-କୂଜିତ କରେ କର୍ଣ୍ଣରଞ୍ଜନ ।
ବହେ ସଦା ମନ୍ଦଗନ୍ଧ ଶୀତଳ ପବନ । ୧୬୩୫ ।
ପଟ୍ଟଣ ବାଟ ବେଦୀ ରଚନ୍ତି ଦ୍ୱିଜଗଣ ।
କରଇ ଦର୍ଶକମନୋନୟନ ରଞ୍ଜନ । ୧୬୩୬ ।
ପଣ୍ୟାପଣରେ ବହୁ ସର୍ବଦ୍ରବ୍ୟଚୟ ।
ସମସ୍ତ ସମୟରେ ହୁଏ କ୍ରୟ ବିକ୍ରୟ । ୧୬୩୭ ।
ଗୃହ ବନ୍ଦନୀୟ ମଧ୍ୟ ସୁଗନ୍ଧପୂର୍ଣ୍ଣ—
ହୋଇ ଘ୍ରାଣେନ୍ଦ୍ରିୟକୁ ଦେଉଥାଏ ନିଏ ତୂର୍ଣ୍ଣ । ୧୬୩୮ ।
ସକଳ ନାଗରେ ପରମ ସୁଚରିତ୍ର ।
ଧାର୍ମିକ ସଦାଚାର ଜ୍ଞାନୀ ପୁଣ୍ୟବନ୍ତ । ୧୬୩୯ ।
ପୁର ପ୍ରଶସ୍ତ ଚତୁରଙ୍ଗ-ବଳ-ସଙ୍କୁଳ ।
ଚହୁଁ କେବଳ ମାଗଧ ସ୍ତବ କୋଳାହଳ । ୧୬୪୦ ।
ତାହାର ମଧ୍ୟରେ ରହେ ରାଜଭବନ ।
ତାରକା ମଧ୍ୟରେ ପୂର୍ଣ୍ଣଚନ୍ଦ୍ର ଯେସନ । ୧୬୪୧ ।
ମଣିକାଞ୍ଚନ ମୟ ପ୍ରାକାର-ସୌଧ-ଯୁତ ।
ଯେ ମନୋହର ସଦନ ଜଗତେ ଅଦ୍ଭୁତ । ୧୬୪୨ ।

ଯେଉଁ ମନ୍ଦରବର ଉଦ୍ୟାନ ନିବାସ ।
ଯାହାକୁ ଅମରଗଣ କରେ ଅଭିଳାଷ । ୧୬୪୩ ।
ତାକୁ ବର୍ଣ୍ଣିବାକୁ କବି ହେଲେ ମଧ୍ୟ ଶେଷ ।
ବଖାଣି ପାରିବ ନାହିଁ ତା ସୌନ୍ଦର୍ଯ୍ୟ ଲେଶ । ୧୬୪୪ ।
ସ୍ୱକର୍ମଗୃହସ୍ଥ ଦିବ୍ୟ ନିବାସମାନ ।
ବିଦ୍ୟମାନ ହୋଇ ଭୂପ ଭବନ ସମାନ । ୧୬୪୫ ।
ତଟିନୀ-ତଟରେ ସେ ପୁରର ଏକପାଶେ ।
ଅଗତ ନୃପତିଙ୍କ ବସାମାନ ପ୍ରକାଶେ । ୧୬୪୬ ।
ସେ ଉଦ୍ୟାନେ ଯାଇ ଯାଇ ଏକ ଅଭିରାମ ।
ଶୀତଳ ଚୂତୋଦ୍ୟାନ-ବନେ କଲେ ବିଶ୍ରାମ । ୧୬୪୭ ।
ବିଶ୍ୱାମିତ୍ର ମୁନୀଶ୍ୱର ଆଗମନ ଜାଣି ।
ମନ୍ତ୍ରୀ ପୁରୋହିତାଦି ପରିଜନଙ୍କୁ ଘେନି । ୧୬୪୮ ।
ମିଥିଳାଧିପ ଜନକ ଯାଇ ତା ପାଦକୁ ।
ପ୍ରଣମି ଗ୍ରହଣ କଲେ ତା ଆଶୀର୍ବାଦକୁ । ୧୬୪୯ ।
ପରେ ମୁନୀଶ ନରେଶ ବସି ଆସନରେ ।
ପରସ୍ପର କୁଶଳ-ପ୍ରଶ୍ନ କଲେ ସାଦରେ । ୧୬୫୦ ।
ତେବେ ନୃପତି-ଦୃଷ୍ଟିକି କଲା ଆକର୍ଷଣ ।
ସୁନ୍ଦର ଶ୍ୟାମ-ଗୌର-ମୂର୍ତ୍ତି-ଯୁଗ ବହନ । ୧୬୫୧ ।
ଦେଖୁଁ ସେ ଦେବ ରୂପ ତା ମାନସ ଦ୍ରବିଲା ।
ପୁଲକାଙ୍କୁରେ ସମସ୍ତ ଶରୀର ପୂରିଲା । ୧୬୫୨ ।
ଜେଣୁ ସେ ବାଞ୍ଛେ ବୋଇଲ ଅହେ ମୁନିବର ।
ଏ କିବା ବାଳକଦ୍ୱୟ କାହାର କୁମର । ୧୬୫୩ ।
ମୁନି-ତନୟ କିବା ଅମରବର-କୁମର ।
କିବା ପୁଣ୍ୟପୋଷିମନ ସୁଗଣାବତାର । ୧୬୫୪ ।
ଏହାଙ୍କ ମୁଖେନ୍ଦୁ ତ ଦେଖି ଭ୍ରମଭ୍ରାନ୍ତ ।
ମୋର ବିରକ୍ତ ମାନସ-ଉଦ୍ଭ୍ରାନ୍ତ । ୧୬୫୫ ।
ଏତେ ଶୁଣି ବୋଇଲେ ମୁନି ହସି ମନରେ ।
ଏ ମୂର୍ତ୍ତି-ଦ୍ୱୟ ଅଭିନବ-ରୋଚକରେ । ୧୬୫୬ ।

ରବି-କୁଳ-ଚନ୍ଦ୍ର ଦଶରଥଙ୍କୁ [illegible]ଣି ତ ।
ଏ ବେନି କୁମାରେ ସେହି ନୃପବର-ସୁତ । ୧୬୧୭ ।
ଯେ ମୋରେ ସଦୟ ହୋଇ ମୋ ଯଜ୍ଞରକ୍ଷଣେ ।
ଆସନ୍ତେ ଏହାଙ୍କୁ ମୋ ସଙ୍ଗେ କଲ ପ୍ରେରଣେ । ୧୬୧୮ ।
ଏ ଶ୍ରୀରାମ ସେ ଲକ୍ଷ୍ମଣ ଏ ଦୁଇ କୁମର ।
ବିଦ୍ୟା-ବଳ-ଶୀଳ-ରୂପ-ପ୍ରତାପ-ସାଗର । ୧୬୧୯ ।
ଏ ଦୁହେଁ କୃପାରେ କଲେ ମୋ ମଖ ରକ୍ଷଣ ।
ହେଲେ ବିନାଶ ଖଳ ଘୋର ରକ୍ଷଗଣ । ୧୬୨୦ ।
ତା ଶୁଣି ନୃପ ବୋଇଲେ ହେ ବ୍ରହ୍ମର୍ଷି ବର ।
ଧନ୍ୟ ହେଲି ଦର୍ଶନ କରି ପାଦ ତୁମ୍ଭର । ୧୬୨୧ ।
ଏ ଦୁହେଁ ତ ଅନନ୍ତର ଅନନ୍ତ ଅଚିନ୍ତ୍ୟ ।
ବ୍ରହ୍ମ ଶିବ ପର୍ଯ୍ୟେ ଧ୍ୟେୟମାନ ହୁଅନ୍ତି । ୧୬୨୨ ।
ତୁମ୍ଭେ ଜନାଦେଁ ମୋଠାରେ ହୋଇ କୃପାକର ।
ଆସି ଏବେ ପାବନ କଲ ମୋର ମନ୍ଦର । ୧୬୨୩ ।
ଏତେ କହି ସେ ତାଙ୍କୁ ନେଇ ଦିବ୍ୟ ଭବନେ ।
ରଖି ସନ୍ତୁଷ୍ଟ କଲ ବହୁବିଧ ପୂଜନେ । ୧୬୨୪ ।
ଅନନ୍ତର ସାୟାହ୍ନ ସମୟେ ବେନିବୀର ।
ନଗରେ ଭ୍ରମଣ କଲେ ମୁନି ଆଜ୍ଞା ପାଇ । ୧୬୨୫ ।
ପୁରବାସୀଏ ତାଙ୍କ ଶୋଭା ଦେଖିବା ପାଇଁ ।
ନିଜ କାର୍ଯ୍ୟାବଳୀ ତେଜି ଆସି ଜୁଣ୍ଡ ହୋଇ । ୧୬୨୬ ।
ଏତୁ ଅନେକ ମୁଦେ କୁହାକୁହି ହୋଇ ।
ତାଙ୍କ ସୌନ୍ଦର୍ଯ୍ୟ ଏମନ୍ତ ବର୍ଣ୍ଣିଲେ ଆଠାଇ । ୧୬୨୭ ।
ତାପତ୍ରୟହର, ମୁଖ ଜିତ-ପୂର୍ଣ୍ଣଚନ୍ଦ୍ର ।
ଯାହାକୁ ଦେଖି ଭୁଲି ଜୋଇ ହୋଇ ସାନ୍ଦ୍ର । ୧୬୨୮ ।
ତଳତ ଯେ ଦେବେ ଅର୍ଦ୍ଧେନ୍ଦୁ ସମାନ ଭାଳରେ ।
ଜବା ଯମା ପ୍ରଭେଦମେ ମଣି-ମୁକୁଟରେ । ୧୬୨୯ ।
ନବନୀରଦରୁ ନିନ୍ଦାକରେ ନୟନ ।
ଅନୁପମ ଚର୍ଚ୍ଚେ କନ୍ଦରଙ୍କ ଯୌବନ । ୧୬୩୦ ।

ନାଭୀ କ୍ଷତ-ତଳସୁମ, ପଦ୍ମବନ୍ଧ୍ୟାଧିକ ।
କନ୍ଧର ପରିଭୂତ ଦକ୍ଷିଣାବର୍ତ୍ତଦର । ୧୬୭୦ ।
ବିଶାଳ ହୃଦୟ ଧୃତ ଗଜମୁକ୍ତାହାର ।
ପ୍ରଲମ୍ବ ବାହୁ ମଦ କରି-କର ପ୍ରକାର । ୧୬୭୧ ।
ସିଂହ ସମ ମଧ୍ୟ ପୀତ-କୌଶେୟ-ବସନ—
ବେଷ୍ଟିତ କଟିତଟ ମତ୍ତହସ୍ତି-ଗମନ । ୧୬୭୩ ।
ତନୁ ବର୍ଣ୍ଣ ନବଜ-ନୀଳୋତ୍ପଳ, ସୁବର୍ଣ୍ଣ—
ଭୂଷଣ କବଚାଏ ପିଠିରେ ବସ୍ତ୍ରାପର୍ଣ୍ଣ । ୧୬୭୪ ।
ଏପରି ଅନେକ ଲୋକେ ବହୁତ ସ୍ନେହରେ ।
ଭାଙ୍ଗ ବର୍ଣ୍ଣି ବର୍ଣ୍ଣି ତାଙ୍କ ପଛରେ ଗମିଲେ । ୧୬୭୫ ।
ସେ ସମୟେ ନାରୀଏ ପଞ୍ଜରସ୍ଥ ଚମକ୍ରି ।
ଦେଖି ଅନ୍ୟାନ୍ୟ କହିଲେ ଲଭି ବିସ୍ମୟକୁ । ୧୬୭୬ ।
ବ୍ରହ୍ମା ଚତୁର୍ମୁଖ, ବିଷ୍ଣୁ ଚତୁର୍ଭୁଜ, ଶିବ,
ପଞ୍ଚାସ୍ୟ ବିରୂପାକ୍ଷ, ମାର ଗତାବୟବ । ୧୬୭୭ ।
ଇନ୍ଦ୍ର ସହସ୍ରାକ୍ଷ, ଅନ୍ୟ ସୁର ନର ନାଗ ।
ଧବଳା ବୁଆ କି ନୁହେ ଏହାପରି ସମ । ୧୬୭୮ ।
କିଏ ଏହି ? କି ଅଦ୍ଭୁତ ସ୍ୱରୂପ ଏହାର ।
ଭୁବନତ୍ରୟ-ଦୁର୍ଲଭ ଏ ମୋହନାକାର । ୧୬୭୯ ।
ବୃତ୍ତାନ୍ତ ଶୁଣିଥିବା ଏକ ବାମା ବୋଇଲା ।
ଏ ଦୁଇ କୁମର ଅଯୋଧ୍ୟା ନୃପତିର ବଳା । ୧୬୮୦ ।
ରାମ ଲକ୍ଷ୍ମଣ ନାମ ବଳ ପ୍ରତାପ ଜାଣ ।
ଯାଗ ଯଜ୍ଞ ରକ୍ଷିବାକୁ ବିଶ୍ୱାମିତ୍ର ମୁନି । ୧୬୮୧ ।
ଏହାଙ୍କୁ ଆଣିଲୁ, ଏ ଦୁହେଁ ରାକ୍ଷସଗଣ ।
ନାଶ କରି କଲେ ମୁନି-ମଖ ସଂରକ୍ଷଣ । ୧୬ ୨ ।
ରାମ-ଚରଣ-ରଜ ଲାଗି ଅହଲ୍ୟା-ଶିଳା ।
ସ୍ୱରୂପକୁ ବହିଲ ପୁଣ୍ୟବତୀ ହୋଇଲା । ୧୬୮୩ ।
ଧନୁର୍ଦ୍ଧର ମହୋତ୍ସବ ଦେଖିବ ପିତାଙ୍କୁ ।
ଏ ବେଳ କୁମର ଏବେ ଆଣିଛନ୍ତି ଏଠାକୁ । ୧୬୮୪ ।

ଦ୍ୱିତୀୟା କହଇ ଶୁଣିସଖି, ଏ ରାମ ଅମ୍ବର ।
ରାଜକୁମାରୀ ସୀତାର ଅନୁରୂପ ବର । ୧୬୮୫ ।
ଊର୍ମିଳା କୁମାରୀର ଅନୁରୂପ ରମଣ ।
ଅଟଇ ଏ ସୁଲକ୍ଷଣ-ସମ୍ପନ୍ନ ଲକ୍ଷ୍ମଣ । ୧୬୮୬ ।
ତୃତୀୟା ପଚାରିଲା, ଏ ବେନି ମନୋହର ।
ହୋଇ ନାହାନ୍ତି କି ନୃପ-ନୟନ ଗୋଚର ? । ୧୬୮୭ ।
ପ୍ରଥମା କହିଲା, ଏ ଦୁହେଁ ମୁନି ସହିତ ।
ରଙ୍ଗାଗାରେ ଅଛନ୍ତି ନୃପେ ହୋଇ ଅଦ୍ଭୁତ । ୧୬୮ ।
ଦ୍ୱିତୀୟା ବୋଇଲା, ତା ହେଲେ ଭୂପ ଏହାଙ୍କୁ ।
ପ୍ରଦାନ କରିବ ନିଜ ପ୍ରିୟ ପୁତ୍ରିକାଙ୍କୁ । ୧୬୮୯ ।
ଅନ୍ୟା ମଣ୍ଡନ କରି ତା କେବେ ହେବ ନାହିଁ ।
ବିଧିବଶେ ନରପତି ଅବିବେକ ହୋଇ । ୧୬୯୦ ।
ଘୋର ପ୍ରତିଜ୍ଞା କରି ତାକୁ ଧରି ବସିଛି ।
ଏଣେ ସୁତାଙ୍କ ତରୁଣ ସମୟ ଯାଉଛି । ୧୬୯୧ ।
ଦ୍ୱିତୀୟା ବୋଇଲା, ସୁକୃତଫଳପ୍ରଦ ଦୈବ ।
ଅନୁକୂଳ ହେଲେ ସବୁ ସଂଘଟନ ହେବ । ୧୬୯୨ ।
ଜେମାଙ୍କର ଏହାଙ୍କର ବିଭା ବିଧିବଶେ ।
ହେଲେ ସର୍ବେ ମଜ୍ଜିବେ ଆନନ୍ଦ ସୁଧାରସେ । ୧୬୯୩ ।
ପୁଣି ଅମ୍ଭେ ଏ ବେନିଙ୍କ ମନୋହରାକାର ।
ଦର୍ଶନ କରିଥିବା ଏଠାରେ ବାରମ୍ବାର । ୧୬୯୪ ।
ଯଦି ଅମ୍ଭମାନଙ୍କ ସୁକୃତ-ଫଳ ଥିବ ।
ଏ ସଂଘଟନ ଅଚିରେ ଅବଶ୍ୟ ହୋଇବ । ୧୬୯୫ ।
ଅପରା ବୋଇଲା, ସର୍ବଥା ଯୋଗ୍ୟ ତୋ ବଚନ ।
ସବୁଙ୍କ ମଙ୍ଗଳ ହେବ ହେଲେ ଏ ମିଳନ । ୧୬୯୬ ।
ମାତ୍ର ବାମଦେବ-ଚାପ ଅତ୍ୟନ୍ତ କଠୋର ।
ଏହୁ ଶ୍ୟାମଳ କୋମଳ ଶରୀର କଇଶୋର । ୧୬୯୭ ।
ଇତରା ବୋଇଲା, ମୁହିଁ ଶୁଣିଛି ଏ କଥା ।
ସୁକୁମାର ହେଲେହେଁ ଏହା ବଳ ଅପାର । ୧୬୯୮ ।

ଯେଉଁ ବିଧାତା ସୀତାଙ୍କୁ ଦେଇଛନ୍ତି ଜନମ ।
ସେ ବିଚାର କରିଥିବ ଏହାର ବଚନ । ୧୬୯୯ ।
ଏହା ଶୁଣି ସମସ୍ତେ ଆନନ୍ଦିତ ହୋଇଲେ ।
ତଥାସ୍ତୁ ତଥୈବାସ୍ତୁ ବଚନ ପ୍ରକାଶିଲେ । ୧୭୦୦ ।
ସରଣୀରେ ବେଳଗୁଳ ଯାଉଁ ନାହିଁ ନରେ ।
କୁସୁମ-ବୃଷ୍ଟି କରୁଥାନ୍ତି ପ୍ରମୋଦରେ । ୧୭୦୧ ।
ଏମନ୍ତେ ଦୁହେଁ ପୂର୍ବମୁଖେ ଯାଇ ଯାଇ ।
ହୃଷ୍ଟ ହେଲେ ଧନୁର୍ଯଜ୍ଞ-ମଣ୍ଡପ ଅନାଇଁ । ୧୭୦୨ ।
ସେ ଚତୁରସ୍ର ଅତି ବିଶାଳ ସୁଧାମୟ ।
ଚତୁର୍ଦ୍ଦିଗ ସ୍ତମ୍ଭ ବଳୀବୃତ ଦର୍ଶନୀୟ । ୧୭୦୩ ।
ତାର ଚତୁଃପାଶେ ହେମନିର୍ମିତ ମଞ୍ଚାଳି ।
ସ୍ଥାପିତ, ବସିବା ପାଇଁ ନରପତିପାଳି । ୧୭୦୪ ।
ତା ପଛରେ ଅଳପ ଉଚ୍ଚରେ ମଞ୍ଚଗଣ ।
ରଚିତ ବସିବା ପାଇଁ ସର୍ବସାଧାରଣ । ୧୭୦୫ ।
ତା ପଛେ ବେଶୀ ଉଚ୍ଚେ ଥିବା ବଖରାମାନ ।
ଶ୍ରେଷ୍ଠଚାନ୍ଦ୍ରରୂପେ ନାରୀ ସମୂହର ସ୍ଥାନ । ୧୭୦୬ ।
ଜନକ ଭୂପଙ୍କ ସଙ୍ଗେ ଯାଇଥିବା ବାଳକେ ।
ତାଙ୍କୁ ସବୁ ଦେଖାଇଲେ ପୃଥକେ ପୃଥକେ । ୧୭୦୭ ।
ତାଙ୍କ ଆଦରେ ହରଷି ସେ ବାଳକମାନେ ।
ତାଙ୍କୁ ନିକଟ କରି ବୁଲନ୍ତି ଏଣେ ତେଣେ । ୧୭୦୮ ।
ଯା ଆଜ୍ଞାରେ ମାୟା ରଚେ ପଳକେ ବିଶ୍ୱକୁ ।
ସେ ଭକ୍ତେ ଭୃତ୍ୟେ ବାଳେ ଦେଖାଇଲେ ସ୍ଥଳକୁ । ୧୭୦୯ ।
ଯା ଡରେ ଡର ଭୟେ ଡରେ ସେ ରାମ ଡରେ ।
ଫେରିଲେ ଡେରି ହେଲା ବୋଲି ଗୁରୁଙ୍କ ଡରେ । ୧୭୧୦ ।
ବାଳକଙ୍କୁ ମେଲାଣି ଅତି ସ୍ନେହରେ ଦେଇ ।
ଗଲେ ବିଶ୍ୱାମିତ୍ରଙ୍କୁ ପ୍ରଣମି ବେନିଭାଇ । ୧୭୧୧ ।
ତା ଆଦେଶେ ଅତିବ ସାୟଂ ସନ୍ଧ୍ୟାବନ୍ଦନ ।
ଅର୍ଦ୍ଧରାତ୍ରୀ ଯାଏ କରି ପୁରାଣ ଶ୍ରବଣ । ୧୭୧୨ ।

ମୂର୍ଦ୍ଧ୍ନି ଧରନ୍ତି ଯାର ଚରଣ ସମ୍ଭାଜନ ।
ଭବ ତା ଅନୁଗ୍ରହରେ ହୃଷ୍ଟ ଭକ୍ତ ଶତ୍ରୁଘ୍ନ । ୧୭୧୩ ।
ଯାଙ୍କ ପଦାରବିନ୍ଦ ପାଇଁ ବିରାଗୀ ଜନେ ।
ଯୋଗାଦି ବହୁ ସାଧନ କରନ୍ତି ଯତନେ । ୧୭୧୪ ।

ସେ ବେଳ ଭଲ ଗୁରୁଶ୍ରବେ ଏକ ନବର ।
ପାଦ ମଞ୍ଜନ୍ତି ହୋଇ ଅତ୍ୟନ୍ତ ତତ୍ପର । ୧୭୧୫ ।
ପରେ ଲକ୍ଷ୍ମଣ ମଞ୍ଜିଲେ ଶ୍ରୀରାମ ଚରଣ ।
ତା ଅନୁମତରେ ସେ ଯାଇ ଭକ୍ତ ଶତ୍ରୁଘ୍ନ । ୧୭୧୬ ।
ପ୍ରଥମେ ସୌମିତ୍ରୀ ପରେ ଶ୍ରୀରାମ ତା ପରେ ।
ମୁନୀଶ ଉଠି ପ୍ରାତଃକୃତ୍ୟ କଲେ ସତ୍ୱରେ । ୧୭୧୭ ।

ବେଳାନ୍ତର ଗୁରୁଙ୍କୁ ପ୍ରଣମି ତା ଆଦେଶ ।
ପାଇ ବାହାର କୁସୁମ ଆଣିବା ଆଶାଏ । ୧୭୧୮ ।
ଯାଇ ଦେଖିଲେ ନରପତି ସୁନ୍ଦରୋଦ୍ୟାନ ।
ଯହିଁ ସ୍ୱେଚ୍ଛାରୂପ ଋତୁରାଜର ଅବସ୍ଥାନ । ୧୭୧୯ ।
ସୁମ-ଫଳ-ପୂର୍ଣ୍ଣ ନାନା ତରୁ-ଲତା-ଯୁତ ।
ଦେଖି ସେ ଅରାମଦ୍ୱାରା ନନ୍ଦନ ହସିତ । ୧୭୨୦ ।
ଯହିଁ ଶୁକ ପିକ ଭୃଙ୍ଗ ଶିଖୀ ଚକୋର ।
ପ୍ରସ୍ତୁତ ଗୀତ ମନୋହର ସ୍ତୁତି ପ୍ରଚୁର । ୧୭୨୧ ।

ତା ମଧ୍ୟସ୍ଥ ସରବର-ସୋପାନ-ବାନ୍ଧିତ ।
ନିର୍ମଳ ଜଳ ବିକଚ ଜଳଜ ଶୋଭିତ । ୧୭୨୨ ।
ଏମନ୍ତ ଉପବନେ ପ୍ରବେଶି ବେଳାନ୍ତର ।
ମୋଦକୁ ଲଭିଲେ ତା ଶୋଭାରେ ବଶ ହୋଇ । ୧୭୨୩ ।
ପରେ ସେ ଦୁହେଁ କଲେ କୁସୁମ ଚୟନକୁ ।
ସୀତା ଯହିଁ ମିଳଇ ଗିରିଜା-ପୂଜନକୁ । ୧୭୨୪ ।

ସେ ଜବିଷୀ-ଚନ୍ଦ୍ରିତ ଗିରିଜାଳୟକୁ ।
ଜନନୀଦେଶେ ସଙ୍ଗେ ଘେନି ସଖୀଗଣଙ୍କୁ । ୧୭୨୫ ।
ଚନ୍ଦ୍ରବଦନା ସୀତା ଯାଇ ପୂଜନ ।
କଲେ ଅପୂର୍ବ ପ୍ରକାରେ ପ୍ରସନ୍ନ । ୧୭୨୬ ।

ପ୍ରଚଳିତ ସ୍ଥଳରେ ଯେ ଉମାଙ୍କୁ ପୂଜନ ।
ବର ମାଗିଲ ନିଜ ସମ ରମ୍ୟ ରମଣ । ୧୭୨୭ ।
ଏଥୋଲେ ଏକ ସଖୀ ଉଦ୍ୟାନ ବିଲୋକନ ।
କରୁ କୁଞ୍ଜ ଦେଖି ବେନି ଯୁବକ ଶୋଭନ । ୧୭୨୮ ।
ଲଭି ଅଶ୍ରୁ ପୁଲକାଦି ଭାବଦଶାଗଣ ।
ଫେରି ଆସନ୍ତେ ସଖୀଏ ପୁଚ୍ଛିଲେ କାରଣ । ୧୭୨୯ ।
ସେ ମୁଗ୍ଧା ବୋଇଲା, ଏ ବନେ ବେନି ଯୁବକ ।
ଶ୍ୟାମ ଗୌରାକାରେ ହୋଇ ନୟନରଞ୍ଜକ । ୧୭୩୦ ।
ଫୁଲ ତୋଳୁଛନ୍ତି ମୁହିଁ ତାଙ୍କ ଅକୃତକ ।
ରୂପ ଦେଖିବା ମାତେ ପାଇଲି ଏ ଗତିକ । ୧୭୩୧ ।
ତାହା ଶୁଣି ସୀତାସହ ସକଳେ ବିସ୍ମିତା ।
ପରେ ଭଣିଲା ଏହିପରି ଏକ ବନିତା । ୧୭୩୨ ।
କାଲି ବିଶ୍ୱାମିତ୍ର ସଙ୍ଗେ ନୃପସୁତଦ୍ୱୟ ।
ଆସିଛନ୍ତି ତାଙ୍କୁ ଦେଖି ନାରୀନରଚୟ । ୧୭୩୩ ।
ମୋହ ପାଇ ତାହାଙ୍କ ଅଲୌକିକ ଶୋଭନ ।
କରଇ ଅନବରତ ବିବିଧ ବର୍ଣ୍ଣନ । ୧୭୩୪ ।
ବୋଧହୁଏ ସେହୁ ବେନି ହୋଇଥିବେ ଏହୁ ।
ତାରେ ବିଲୋକିବା ଯୋଗ୍ୟ ଲୋଚନ ପୂରାଇ । ୧୭୩୫ ।
ଏ ବଚନ ଜାନକୀର ମନକୁ ପାଇଲା ।
ଲୋକନେ ଲୋଚନଯୁଗ ଲୁବଧ ହୋଇଲା । ୧୭୩୬ ।
ନାରଦମୁନି ବଚନ ମନରେ ପଡ଼ିଲା ।
ହୃଦୟାଲବାଲେ ଶୁଦ୍ଧ ପ୍ରୀତି ଅଙ୍କୁରିଲା । ୧୭୩୭ ।
ପୂର୍ବ ପ୍ରୀତି ଭାଳିବାକୁ ସଖୀଙ୍କ ଆଗରେ ।
ଚଳାଇ ସ୍ୱତ ହରିଣୀ ଶାବକବିଧରେ । ୧୭୩୮ ।
ଏଣେ ତେଣେ ଦେଖି ଦେଖି ମନ୍ଦ ଗମନରେ ।
ସୀତା ଗଲେ ଲତାଦ୍ରୁମୋଦ୍ୟାନ ମନରେ । ୧୭୩୯ ।
ତା କଙ୍କଣ କିଙ୍କିଣୀ ନୂପୁରଧ୍ୱନି ଶୁଣି ।
ଲକ୍ଷ୍ମଣ କହନ୍ତି ରାମ ମନେ ଗୁଣି ଗୁଣି । ୧୭୪୦ ।

ଦେବୀ ବସୁ ବଢ଼ପ୍ରବାଷ୍ଠିରେ ମାର ଜ୍ୱର ।
ରଣଦେଶ୍ରୀ ବଢାଏ ଏବେ ହୋଇ ଅଧୀର । ୧୨୪୧ ।
ଏତେ ବୋଲି ଅରେ ସୀତା ମୁଖସୁଧାକର ।
ଦର୍ଶନେ ତା ନୟନ-ଚକୋର ହେଲା ସ୍ଥିର । ୧୨୪୨ ।
ରାମ ନେତ୍ର ଦ୍ୱୟ କଲ ନିମିଷ ବର୍ଜ୍ଜନ ।
ନିଜର ଅନିମିଷତ୍ୱ କଲ ପ୍ରକଟନ । ୧୨୪୩ ।
ସୀତାସୌନ୍ଦର୍ଯ୍ୟରେ ରାମ ବାହ୍ୟଜ୍ଞାନ ହୋଇଲେ ।
ନିଜ ଚିତ୍ତେ ଏତେକ ମାତ୍ର ବର୍ଣ୍ଣିପାରିଲେ । ୧୨୪୪ ।
ବିଶ୍ୱବିଧାତା ଏହାକୁ ରଚିତ ତାହାର ।
ସମସ୍ତ ନୈପୁଣ୍ୟ ଏଥି ପାଇଲା ପ୍ରଚାର । ୧୨୪୫ ।
ଏ ବାଳା-ମୁଖଚନ୍ଦ୍ରସୌନ୍ଦର୍ଯ୍ୟ ସୁନ୍ଦର—
ମଦନର ଉନ୍ମାଦିକା ଅଟଇ ନିକର । ୧୨୪୬ ।
ରୂପମାନ ସକଳ ତ ପବିତ୍ର ଏହାରେ ।
ଏ ରାମା-ରମଣୀତାକୁ ମୁଁ କିଏ ବର୍ଣ୍ଣିପାରେ । ୧୨୪୭ ।
ଏତେ ଭାବି ସ୍ମରଦଶାକୁ ଚିନ୍ତି ରଘୁବୀର ।
ସୁଖଚିତ୍ତେ ଲକ୍ଷ୍ମଣଙ୍କୁ କହିଲେ ଏ ଗିର । ୧୨୪୮ ।
ଭାଇ ! ଏ ଜନକରାଜ-କୁମାରୀ, ଏହାର—
ନିମନ୍ତେ ସକଳତ ଧନୁର୍ଯ୍ଜ୍ଞ ସମ୍ଭାର । ୧୨୪୯ ।
ସର୍ଗିଙ୍କି ଯେନ ଏ ଅତି ଗୌରବପୂର୍ଣ୍ଣ କର ।
ଉଦ୍ୟାନ-ଶୋଭା ବଢ଼ାଏ ଏଠାରେ ବିହର । ୧୨୫୦ ।
ଦେଖି ଏହା ଅଲୌକିକ ଲାବଣ୍ୟମୂର୍ତ୍ତିକୁ ।
ସହଜ ପବିତ୍ର ମୋ ମନ ଲଭେ କ୍ଷୋଭକୁ । ୧୨୫୧ ।
ଏବେ ସ୍ଫୁରୁଅଛି ତ ଦକ୍ଷିଣ ଭୁଜ ମୋର ।
ତାର କାରଣ ଜଣା ନୋହିଲୁ ଏଥାକାର । ୧୨୫୨ ।
ରଘୁବଂଶଜ ଧୀର ଚିତ୍ତ କେବେ କେବେ ।
ଅପଥରେ ଅଥବା କୁପଥରେ ନ ଗୃହେ । ୧୨୫୩ ।
ମୋ ମନଠାରେ ଦୃଢ଼ ପ୍ରତ୍ୟୟ କରେ ମୁହିଁ ।
ସେ ତ ସ୍ୱପ୍ନେ ମଧ୍ୟେ ପରସ୍ତ୍ରୀକି ନ ହେରଇ । ୧୨୫୪ ।

ଯେ ନିଜ ପୃଷ୍ଠ ଦେଖାନ୍ତି ନାହିଁ ସ୍ୱବୈରୀଙ୍କି ।
ଯେ କଦାପି ବାଞ୍ଛନ୍ତି ନାହିଁ ପରନାରୀଙ୍କି । ୧୭୫୫ ।
ଯେ ସମ୍ପ୍ରାର୍ଥିତ ପଦାର୍ଥ ନାହିଁ, ନ ବୋଲନ୍ତି ।
ସେ ଏ ଜଗତେ ଅତ୍ୟନ୍ତ ଦୁର୍ଲଭ ଅଟନ୍ତି । ୧୭୫୬ ।
ରାମର ଗୁଣ ସ୍ୱଭାବ କହଇ ଏମନ୍ତ ।
ମାତ୍ର ମାନସ ଲୋଲୁପ ଦେଖି ସୀତାକୃତ । ୧୭୫୭ ।

ସେ ତ ମଧୁପ ପରି ଜାନକୀର ଲୋଚନ ।
ସାରସ ଲାବଣ୍ୟରସ କରଇ ସେବନ । ୧୭୫୮ ।
ରଘୁବରରୂପକୁ ସୀତା ଦେଖିବା ପାଇଁ ।
ଏ ଦଗେ ସେ ଦଗେ ଗୃହେଁ ସ୍ୱନେହ ବୁଲଇ । ୧୭୫୯ ।
ଯେଉଁ ଦଗକୁ ମୃଗାକ୍ଷୀ ଦର୍ଶନ କରଇ ।
ସେ ଦଗେ ପୁଣ୍ଡ୍ରସ୍ୱକରଣ ବୃଷ୍ଟି କରଇ । ୧୭୬୦ ।
ତେବେ ଲଳିତା ଅଦ୍ୱାଡ଼ରୁ ସଖୀ ମନୋହର ।
ଶ୍ୟାମ ଗୌରମୂର୍ତ୍ତି ଯୁଗ ଦେଖାନ୍ତେ ସତ୍ୱର । ୧୭୬୧ ।

ରାମରୂପେ ସୀତାର ଅଖି ଲଖି ରହିଲା ।
ସ୍ତନାଧି ପୁଣି ପାଇ ମନ ତୁଷ୍ଟ ହୋଇଲା । ୧୭୬୨ ।
ରାମଙ୍କୁ ଦେଖି ଚନ୍ଦ୍ର ଶାରଦ ପୂର୍ଣ୍ଣେନ୍ଦୁଙ୍କୁ ।
ଦେଖିଲେ ଚକୋରୀ ପରି ଲଲନା ଲୋଭକୁ । ୧୭୬୩ ।
ରଘୁକୁଳୋତ୍ତଂସର ସୁନ୍ଦର ଅଙ୍ଗ ବାଟେ ।
ଟାଣି ଆଣି ହୃଦୟ-ଗୃହେ ଭରି ନାସ୍ତଟେ । ୧୭୬୪ ।
ତାହା ପୁଣ ବହିର୍ଗତ ହେବା ଶଙ୍କା ଭବ ।
ନେତ୍ରଦ୍ୱାର-କବାଟ ବୁଜିଲେ ସେ ଚତୁରୀ । ୧୭୬୫ ।
ତେବେ ଲତାନ୍ତରୁଁ ବେନି ସ୍ୱତ ବାହାରିଲେ ।
ଘଣ୍ଡାଢ ନିର୍ଗତ ଚନ୍ଦ୍ର ପରି ଦିଶିଲେ । ୧୭୬୬ ।
ନୀଳ-ପୀତ-କମଳ ମନୋହର ଶରୀର ।
କର ଧୃତ ସକଳ ରମଣୀପ୍ରତାଧାର । ୧୭୬୭ ।
ଶିଖଣ୍ଡାନ୍ତ ମଲ୍ଲକୁସୁମ-ଗୋଲକ-ଶୋଭିତ ।
ବିଶାଳ ବକ୍ଷ-ତଳକ ସର୍ବଜନସ୍ତୁତ । ୧୭୬୮ ।

ରାମ ମୂର୍ତ୍ତିକି ଗଢ଼ି ଧର ହୃଦଗଗନୀ ।
ଛଳରେ ଭୁଲି ଭୁଲି ରାମଙ୍କୁ ଦେଖି ଦେଖି ।୧୬୮୩।
ସଖୀଙ୍କ ମେଳେ ଚଳି ପୁଣି ଉମାଳୟରେ ।
ପ୍ରବେଶି ଧୀରେ ସ୍ତୁତି କଲା ଏ ରୀତରେ ।୧୬୮୪।
ଜୟ ଜୟ ଧରଣୀଧର ରାଜକୁମାରୀ ।
ଜୟ ଶଙ୍କର ଲପନ ଶଶାଙ୍କ ଚକୋରୀ ।୧୬୮୫।
ଜୟ ଗଜବଦନ ଷଡ଼ାନନ ଜନନୀ !
ଜଗଜ୍ଜନପୂଜି ! କାନ୍ତି ଜିତ-ସୌଦାମିନୀ ।୧୬୮୬।
ତୁହି ତ ଆଦିମଧ୍ୟାନ୍ତରହିତା, ତୋହର—
ମହାମହିମା ଅଟେ ବେଦଙ୍କ ଅଗୋଚର ।୧୬୮୭।
ତୁହି ନିର୍ମାଣ-ପାଳନ-ନାଶନ କାରିଣୀ ।
ତୁହି ଜଗନ୍ମୋହିନୀ ନିଜେଚ୍ଛାବିହାରିଣୀ ।୧୬୮୮।
ତୁହି ମହାପତିବ୍ରତା ପବିତ୍ର ଚରିତା ।
ତୋହର ସୁଗୁଣାବଳୀ ନୁହଇ ବର୍ଣ୍ଣିତା ।୧୬୮୯।
ତୋତେ ମାତ ସେବା କରି ସୁର ମୁନି ନରେ ।
ବର୍ଗଚତୁଷ୍ଟୟ ଫଳ ଲଭନ୍ତି ସୁଖରେ ।୧୬୯୦।
ସର୍ବପ୍ରାଣୀହୃଦୟବାସିନୀ ଅଟୁ ତୁହି ।
ଏଣୁ ମୋ ବାଞ୍ଛାକୁ ଜଣା କରୁ ନାହିଁ ମୁହିଁ ।୧୬୯୧।
ମୋ ମନୋରଥ ପୂରଣ ମୋତେ କର ଦୟା ।
ଏତେ ବୋଲି ଦେବୀଙ୍କ ନମିଲା ଭୂ-ତନୟା ।୧୬୯୨।
ଗୌରୀ ସୀତା-ବିନତି-ପ୍ରୀତିବଶ୍ୟା ହୋଇଲେ ।
ମୂର୍ତ୍ତି ମସ୍ତକ ପୁଷ୍ପମାଲ୍ୟ ଖସି ପଡ଼ିଲା ।୧୬୯୩।
ତାକୁ ଭକ୍ତିରେ ସୀତା ହୃଦୟରେ ଧରିଲେ ।
ଶିବା ପ୍ରସନ୍ନା ଭବାନୀ ଏଭଳି ଭଣିଲେ ।୧୬୯୪।
ସୀତା ! ତୋ ମନୋରଥ ରୂପଫଳକୁ ପାଇ ।
ମୋର ଏ ଆଶୀର୍ବାଦ ଅବଶ୍ୟ ସତ୍ୟ ହେଉ ।୧୬୯୫।
ଏଥି ପୁଣି ସତ୍ୟ ନାରଦର ଗୀର ।
ପାଇବୁ ତୋ ମନ ରଚିଛି ଯେ ତୋହର ବର ।୧୬୯୬।

ସଖୀ ସୁତା-ସୀତା ଏ ବାଣୀ ଶୁଣି ମୋଦରେ ।
ଦେବଙ୍କ ପୁଣି ପ୍ରଣମି ପ୍ରବେଶିଲେ ପୁରେ । ୧୭୯୭ ।
ରାମ ନିଜ ହୃଦୟେ ନିବେଶି ସୀତାରୂପ ।
ଗଲେ ଲକ୍ଷ୍ମଣଙ୍କ ସେନ ବିଶ୍ୱାମିତ୍ର ସମୀପ । ୧୭୯୮ ।
ଯାଇ ସକଳ ସ୍ୱୟମ୍ବର ପ୍ରସଙ୍ଗ ସମସ୍ତ ।
ବୃତ୍ତାନ୍ତ କହନ୍ତେ ଶୁଣି ସେ ମୁନି ପ୍ରଶସ୍ତ । ୧୭୯୯ ।
ଆନନ୍ଦେ ଦୁଇ ଭାଇଙ୍କି ଆଶୀର୍ବାଦ କଲେ ।
ଫୁଲ ପାଇ ପୂଜନାଦି କ୍ରିୟା ଆଚରିଲେ । ୧୮୦୦ ।
ଭୋଜନ ପରେ ବେନି ଭାଇ ପୂର୍ବ ଚରିତ ।
ଗୁରୁ ମୁଖୁଁ ଶୁଣି ହୋଇ ଆନନ୍ଦ ଭରିତ । ୧୮୦୧ ।
ସାୟଂ ସମୟରେ କଲେ ସନ୍ଧ୍ୟା ବନ୍ଦନକୁ ।
କ୍ରମରେ ଆଚ୍ଛାଦଇ ତିମିର ଜଗତକୁ । ୧୮୦୨ ।
ଧନୁ ଟାଳି ନ ପାରିବା ନୃପଗଣ ଭଳି ।
ଦୁଷ୍କରମ ଟାଳି ନ ପାରିବା ରକ୍ଷାବଳୀ । ୧୮୦୩ ।
ତେବେ ଚନ୍ଦ୍ର ସ୍ୱକରେ ମଣ୍ଡିଲେ ଗଗନକୁ ।
ତାଙ୍କୁ ଦେଖି ରାମ ସ୍ମରି ସୀତା ବଦନକୁ । ୧୮୦୪ ।
ଭାବିଲେ ଏ ବାପୁଡ଼ା ତ ସାଗର ନନ୍ଦନ ।
ବିଷ ସହିତ କଳଙ୍କୀ ଦାରିଦ୍ର ମଳିନ । ୧୮୦୫ ।
ସୋଦରା ଗୃହ ଧ୍ୱଂସନ ଚୋର ଶୋକ କର ।
ବୃଦ୍ଧି-କ୍ଷୀଣ-ଯୁକ୍ତ ରାହୁ-ଗ୍ରସ୍ତ ନିଶାଚର । ୧୮୦୬ ।
ଦୋଷାକର ବିରହି ଦ୍ୱିଜେଶ ଏ ବଡ଼ର ।
ହେବ ସୀତାର ଅତୁଳ ରମ୍ୟ ମୁଖ ସର ? । ୧୮୦୭ ।
ଯେବେ ତେତେ ଭାଳି ସୀତା ଶୋକକୁ ଧାଇ ।
ମୁନି ହସ୍ତକୁ ପାଇ ତାରେ ଅଦୃଶ୍ୟ ହୋଇ । ୧୮୦୮ ।
ଭାଇ ସଙ୍ଗେ ପ୍ରଣାମ ବିଶ୍ରାମ ମନ କଲେ ।
ସୀତା ଭାବନାରୁ ତାଙ୍କୁ ନିଦ୍ରା ନ ଛୁଇଁଲା । ୧୮୦୯ ।
କ୍ରମେ ନିଶାନ୍ତ ହେଲା ଶୀତ ଅନିଳ ବହିଲା ।
କୁମୁଦର ମୁଦ କଲା ଅରୁଣ ଉଇଁଲା । ୧୮୧୦ ।

ଦିନ ଅସ୍ତେ ରାଜାଙ୍କ ମୁଖ ତେଜ ଘନ ।
ମଳିନତାକୁ ବହିଲେ ଗୃହତୋଷ ତମ । ୧୮୧୧ ।
ଭୃଙ୍ଗ ଶୁକ ପିକ ଆଦି କଳକଳ ରଚିଲ ।
ଚନ୍ଦ୍ର ଚୋର ରୌଦ୍ର ମୁଖ ଭରେ ନ ଶୋଭିଲ । ୧୮୧୨ ।
ବେଳାଗମ ଉଠି ପ୍ରାତଃକୃତ୍ୟ ପୂର୍ଣ୍ଣ କଲେ ।
ଯାଇ ଗୁରୁ ଚରଣେ ଭକ୍ତିରେ ପ୍ରଣମିଲେ । ୧୮୧୩ ।
ତେବେ ଜନକ ପ୍ରେରିତ ଶତାନନ୍ଦ ଆସି ।
ଆମନ୍ତ୍ରଣ କଲେ ତାଙ୍କ ବିନୟ ପ୍ରକାଶି । ୧୮୧୪ ।
ମୁନି ବେନି ଭାଇଙ୍କି ବୋଇଲା ଗୁରୁ ଯିବା ।
ସୀତା ସ୍ୱୟମ୍ବରେ କେ ଜୟୀ ହେବ ଦେଖିବା । ୧୮୧୫ ।
ତାହା ଶୁଣି ଲକ୍ଷ୍ମଣ ବୋଇଲା ଯା ଉପରେ ।
ରାମ ନୃପ ହେବ ସେ କୃତୀ ଏ ସ୍ୱୟମ୍ବରେ । ୧୮୧୬ ।
ତା ଶୁଣି ମୁନି ସନ୍ତୁଷ୍ଟ ହୋଇ ଶୁଦ୍ଧମନେ ।
ବେନି ଭାଇଙ୍କି ଭଦ୍ର ଆଶୀର୍ବାଦ ବଚନେ । ୧୮୧୭ ।
ତାଙ୍କୁ ବେନି ଶତାନନ୍ଦ ନିର୍ଦ୍ଦିଷ୍ଟ ମାର୍ଗରେ ।
ଯାଇ ପ୍ରବେଶିଲେ ସ୍ୱୟମ୍ବର ପ୍ରଦେଶରେ । ୧୮୧୮ ।
ପୁରର ସକଳ ଜନ ସ୍ଥାନରେ କ୍ଷତ୍ରିୟଲେ ।
ନିଜ ଭାଗ୍ୟ ଭରି ତାଙ୍କ ପଛେ ଗୋଡ଼ାଇଲେ । ୧୮୧୯ ।

## ଧନୁର୍ଯଜ୍ଞ

ଜନକ ନୃପତିର ଆଦେଶରେ ସୁଖରେ ।
ଯଥାସ୍ଥ ବସିଲେ ଯୋଗ୍ୟ ପୀଠମାନଙ୍କରେ । ୧୮୨୦ ।
ବେନି ଭାଇ ଭୂଷଣ ନ ଜନସମାଜରେ ।
ଯେହେ ପୂର୍ଣ୍ଣେନ୍ଦୁ ଉଜ୍ଜ୍ୱଳ ନକ୍ଷତ୍ରଗଣରେ । ୧୮୨୧ ।
ଯେମନ୍ତ ଭାବରେ ଯେ ପ୍ରାଣୀ ଭାବନା କଲା ।
ତେମନ୍ତ ଭାବରେ ତାକୁ ଶ୍ରୀରାମ ଦିଶିଲା । ୧୮୨୨ ।
ରଣ ଧୀର ନୃପଙ୍କ ମହାବୀର ପ୍ରକାରେ ।
ସ୍ତ୍ରୀଙ୍କୁ ଧରଣୀଶ୍ୱରଙ୍କୁ ଧ୍ୟାନଗୋଚରେ । ୧୮୨୩ ।

ତାଙ୍କ ସବୁ କୃପାକଟାକ୍ଷର ଗଳିତକ୍ ।
ମନେ ହେଲା ସ୍ୱର୍ଗର ପଦ୍ମ ପୁରଜନଙ୍କୁ । ୧୮୨୪ ।
ସୁଁଠେଲି ମାର ଲୁବ୍ଧା ଝଲକି ଅନେକ ।
ତିରୋହିତ-ପଦସ୍ପୃତ ଭରିଷ୍ଠ ପ୍ରାପ୍ତେ । ୧୮୨୫ ।
ଜନକଙ୍କୁ ଚେତୁଥିଲି ନନ୍ଦନ ପରସ୍ପେ ।
ତାଙ୍କ ବାନ୍ଧବମାନଙ୍କୁ ପ୍ରିୟବନ୍ଧୁ ପ୍ରାପ୍ତେ । ୧୮୨୬ ।
ଯୋଗିଲି ନିର୍ମଳଙ୍କ ପରଂତ୍ରସ୍ତ ବଧରେ ।
ବର୍ତ୍ତ ସମୂହଙ୍କୁ ସର୍ବ ଦେବତାକୃତରେ । ୧୮୨୭ ।
ଜାନକୀ ନୟନକୁ ଯେ ଦଶିଲ ଯେମନ୍ତ ।
ତାହା ତ ଅକଥା କବ ବର୍ଣ୍ଣିବ କେମନ୍ତ ? ୧୮୨୮ ।
ଲକ୍ଷ୍ମଣ ମଧ୍ୟ ଜନକ ସ୍ୱବନାନ୍ତ ରୂପେ ।
ପୁତ୍ରପ୍ରମାଣ ହୋଇଲେ ବନ୍ଧୁବଧରୂପେ । ୧୮୨୯ ।
ଏମନ୍ତେ ଦେନ ଭ୍ରମ ଶ୍ୟାମଳ ଗୌରାଙ୍ଗରେ ।
ସବୁଙ୍କ ଦୃଷ୍ଟିହର ଶୋଭିଲେ ସେ ସ୍ଥାନରେ । ୧୮୩୦ ।
ତେବେ ବଶିଷ୍ଠାମିତ୍ରଙ୍କୁ ଜନକ ନମି ରଙ୍ଗେ ।
ତାଙ୍କୁ ତୋଷଲ ନୃପମୁତଙ୍କୁ ଘେନି ସଙ୍ଗେ । ୧୮୩୧ ।
ବୁଲି ସମସ୍ତ ସ୍ଥାନ ଦେଖାନ୍ତେ ଜନଚୟ ।
ଦେନି ଭ୍ରମକି ନିରେଖି ପାଇଲେ ବିସ୍ମୟ । ୧୮୩୨ ।
ସେ ଭବନେ ରଚନା ସବୁ ଦେଖି ମୋଦରେ ।
ଯାଇ ବସିଲେ ଏକ ମନୋହର ମଞ୍ଚରେ । ୧୮୩୩ ।
ବିଶ୍ୱାସ ଜନ୍ମିଲା ସବୁଙ୍କ ମନରେ ।
ଧନୁ ଭଗ୍ନ ନତ ହେବ ଯିବାପ କରେ । ୧୮୩୪ ।
ଏ ନୃପ ବୋଇଲେ ଭଲଙ୍କୁ ହକାର ।
ଧନୁ ନ ଦୂଷି ଭାଙ୍ଗି ମଧ୍ୟ ରାଜକୁମାର । ୧୮୩୫ ।
ହସ୍ତଙ୍କୁ ନଷ୍ଟେ ବବର, ଏଣୁ କଠ ଦିବା ।
ବଳ ଶୌର୍ଯ୍ୟ ସର୍ବ ତବ ଦେଖା ଦେଉ ଥିବା ? ୧୮୩୬ ।
ତା ଶୁଣି ହସି ସେ ମୁଖଂ ରବିକୁଳପତି ।
ବୃଦ୍ଧିସ ଜେଷ୍ଠେ ନବୋତ୍ତ ଶୁଣିଲେ ମୋ ସ୍ତୁତି । ୧୮୩୭ ।

ଧନୁ ନୁଆଁଇଲେ ମଧ୍ୟ କେମାନ୍ତୁ କେ ଟେକ ।
ପାରିବ ନାହିଁ କେମନ୍ତ ନେବ କ ନୁଆଁଇ । ୧୮୩୮ ।
ସେହୁଭାଲ ହେଲେ ମଧ୍ୟ ତା ଭାଲ ହୋଇବ ।
କଣରେ କନ୍ୟାମଣିଙ୍କି ଗ୍ରହଣ କରିବ । ୧୮୩୯ ।
ତା ଶୁଣି ଏକ ବସ୍ତ୍ର ଚକ୍ର ନୃପ ମନରେ ।
ହସି କହିଲ ସୀତା ନୀତା ହେବ ରାମରେ । ୧୮୪୦ ।
ଦାଶରଥିଙ୍କ ପୁତ୍ର ଶେ ସମସ୍ତଙ୍କଣରେ ।
ଜୟ ହେବା ଲୋକ ନାହିଁ ଖୋଜିଲେ ଲୋକରେ । ୧୮୪୧ ।
ବାର୍ଏବେ ତୁମ୍ଭେ ମତ ନାହିଁ ଲକ୍ଷ୍ୟ ହୋଇ ।
ଲଢ଼ୁ ବୋଲିବା ମାତ୍ରକ ଲୋକ ଯାଏ ନାହିଁ । ୧୮୪୨ ।
ମୋହର କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ କର ।
ସୀତାଦେବୀ ଅଟନ୍ତି ମାତା ଜଗତର । ୧୮୪୩ ।
ରାମ ଅଟେ ଜଗତ୍ପିତା ସୌନ୍ଦର୍ଯ୍ୟର ସ୍ଥାନ ।
ସୁଖଦାତା ସକଳ ସୁଗୁଣ ନିଧାନ । ୧୮୪୪ ।
ଏ ବେନି ଯୁଗ ସଦା ହଂସପ୍ରାୟ ହୃଦରେ ।
ନୀତିଜ୍ଞ ସଦାଶିବ-ମାନସ ମାନସରେ । ୧୮୪୫ ।
ନିଭଃସ୍ମିତ ସୁଧା-ସିନ୍ଧୁ ପରିହରି ।
କିଏ ଧାଇଁବ ମୃଗତୃଷ୍ଣାକୁ ଅନୁସରି ? ୧୮୪୬ ।
ଯେମନ୍ତ ତୁମ୍ଭ ମନୋବାଞ୍ଛା ତେମନ୍ତ କର ।
ଧନୀ ହୋଇଲି ଅକ ପାର ପର ଜନ୍ମର । ୧୯୪୭ ।
ସେ ଏବେ ବୋଲି ଦେନ ସ୍ୱରକି ଗୃହ୍ଣଁଥିଲ ।
ତୁନ୍ଦ୍ରକୁ ସୁର-ବନ୍ଦ ପୁଷ୍ପ-ବୃଷ୍ଟି ହୋଇଲ । ୧୮୪୮ ।
ଜନକ ସୁଅବସ୍ଥ ଜାଣି ଅକ୍ଷ ସନ୍ଧିଲ ।
ସଖୀ-ବେଷ୍ଟିତା ସୀତା ସଭାରେ ପ୍ରବେଶିଲ । ୧୮୪୯ ।
ସୀତା ଜଗଜ୍ଜନନୀ ସେ ସୁମୁଗ୍ଧଣୀଙ୍କ ।
ତା ରୂପ ବର୍ଣ୍ଣନା ହୋଇ ପାରିବ କପର ? ୧୮୫୦ ।
ତାକୁ ପ୍ରକୃତ ସ୍ତୁତି କପାଳାଳ ଦେବ ।
ଲକ୍ଷ୍ମୀ ବୃକର୍ଷକଙ୍କ ଗାତ ବଳବ ଭେଦ । ୧୮୫୧ ।

କହୁବା ବୋଲବେ ମଧ୍ୟ ତାଙ୍କ ଉପମାନେ ।
ଏବେ କେଉଁ ସୁନ୍ଦରୀ ତାହାଙ୍କ ତ ତା ସମାନେ ।୧୮୫୨।
ବାଣୀ ବାଗ୍ମିକା ରମା ହାଲା ହର-ଘରଣୀ ।
ଗିରିଜାତା ଅର୍ଦ୍ଧାଙ୍ଗୀ ରତିପତି ଦୂଷିଣୀ ।୧୮୫୩।
ଯେମାନେ କହନ୍ତି ତ ତାନଙ୍କର ତୁଳନା ।
ତାହାଙ୍କ ଅଙ୍ଗ ତବେ ଅଜାଙ୍କ ଗଣନା ? ୧୮୫୪।
ଶୋଭା-ସୁଧା-ସିନ୍ଧୁରେ ରମାଙ୍କ ଜନ୍ମପରେ ।
ଭୂଷା ଦେବ ବର୍ଣ୍ଣି ଦୀପ୍ତି ସର୍ପ କଣ୍ଠରେ ।୧୮୫୫।
ସୁର ସୁନ୍ଦର-ଜଣ୍ଡେ ମନ୍ଥନ କଲେ ତାଙ୍କେ ।
ଜନ୍ମିବା ପୁଣ ସୌନ୍ଦର୍ଯ୍ୟ ଲକ୍ଷ୍ମୀ ଭଲେ ହେବେ ।୧୮୫୬।
ଜନକ-ନନ୍ଦନୀ-ଶୋଭା ସମାନା କହିବ ।
ସେତୁ କେବଳ ତାହାର ତୁଳନା ଅଟଇ ।୧୮୫୭।
ସର୍ବାଭରଣ-ଭୂଷିତା ଦିବ୍ୟ ରେଖାବୃତା ।
ହୋଇ ପହୁଞ୍ଚନ୍ତେ ସଭାସ୍ଥଳେ ଭୂମିସୁତା ।୧୮୫୮।
ତାଙ୍କୁ ଦେଖି ନାଗନରେ ମୋହିତ ହୋଇଲେ ।
ଦେବେ ପୁଷ୍ପବୃଷ୍ଟି କରି ମଙ୍ଗଳେ ଗାଇଲେ ।୧୮୫୯।
ସୀତା ଧରି କର-କଞ୍ଜେ ବରଣମାଳାକୁ ।
ପାଇ ପାଇ ଗୃହଁ ଗୃହଁ ନୃପତି ସମସ୍ତଙ୍କୁ ।୧୮୬୦।
ମୁନି-ପାର୍ଶ୍ୱ ସ୍ଥିତ ଭ୍ରାତୃବୃନ୍ଦରେ ରାମଙ୍କୁ ।
ଦେଖି ସ୍ମରିତା ହେଲେ ନିଅରି ମସ୍ତକୁ ।୧୮୬୧।
ପରେ ଲଭେ ଗୁରୁଜନଙ୍କ ପ୍ରେମ ସେ ନନ୍ଦିନୀ ।
ନିଜ ସଖୀଙ୍କ ମୁଖ ଦେଖି ଲଜ୍ଜାସ୍ୱମାନା ।୧୮୬୨।
ସଙ୍ଗେ ଭୁଲି ସୀତା ରୂପ ଭୂପେଶଙ୍କୁ ।
ଏମନ୍ତ ଭାବରେ ଜାଣି ଅନାସକ୍ତଙ୍କୁ ।୧୮୬୩।
ନବ ଦୁଷ୍ମନ୍ତ ତବେ ଏ ଦୁହିଙ୍କ ରାଜାଙ୍କୁ ।
ଜନକ ସୁଖ ନିଜ ଜୋର ପ୍ରଭୁଙ୍କୁ ।୧୮୬୪।
ସେ ତଲେ ଜନକ ଦେଶ ଘର ବଦଳନ ।
ସଭାସଦଙ୍କୁ ପୂଜିଲ ହୋଇଲ ଏମନ ।୧୮୬୫।

ହେ ସଜ୍ଜନବର୍ଗ ! ଦେଖ ଏ ଶିବଧନୁକୁ ।
ପରେ ଶୁଣ ମିଥିଳେଶ-ପ୍ରତିଜ୍ଞା-ବାକ୍ୟକୁ ।୧୮୬୬।
ଏ ଧନୁକୁ ନ ଟେକି ରାବଣ ବାଣାସୁରେ ।
ଲଜ୍ଜିତ ହୋଇ ଚଳିଲେ ନତ ବଦନରେ ।୧୮୬୭।
ତୁମ୍ଭ ବାହୁବଳ ହେଲେ ପୂର୍ଣ୍ଣଚନ୍ଦ୍ର ସମ ।
ଏ କଠୋର ଧନୁ ନିଶ୍ଚେ ଅଟେ ରାହୁପମ ।୧୮୬୮।
ଏବେ ଏହାକୁ ଯେତୁ ନତ କରି ପାରିବ ।
ଗଳାରେ ମାଳା ଦେଇ ତାକୁ ହେମା ବରିବ ।୧୮୬୯।
ଏହା ମୋର ସତ୍ୟ ସତୀ ପୁଣି ସତୀ ବୋଲି ।
ମହାରାଜ ବାକ୍ୟ ଅମ୍ଭେ କହୁଁ ବାହୁ ତୋଳି ।୧୮୭୦।
ଏ ବଚନ ଶ୍ରବଣେ ବଳାଭିମାନୀ ନୃପେ ।
ଉଠି ବକ୍ଷପଞ୍ଜର ହୋଇ ମହାଟୋପେ ।୧୮୭୧।
ଇଷ୍ଟ ଦେବତାଙ୍କୁ ସ୍ମରି ଜଣେ ଜଣେ ଯାଇ ।
ସେ ମହା ଶରାସନକୁ ଝୁଲାଇ ଝୁଲାଇ ।୧୮୭୨।
ଅତି ଶ୍ରାନ୍ତ ପାଇ ଚେଷ୍ଟା ହୋଇ ବାହୁଡ଼ିଲେ ।
କେହୁ ହେଲେ ଧନୁକୁ ହଲାଇ ନ ପାରିଲେ ।୧୮୭୩।
ଯଦ୍ୟପି ଭଲେ ଅନେକ ନୃପେ ଏ ହୋଇ ।
ସତୀ ମତ ପରି ଧନୁ ଦୋହଲିଲା ନାହିଁ ।୧୮୭୪।
ଯେମାନେ ବୈଷ୍ଣବାଗ୍ରଜ ସନ୍ୟାସି ବପରେ ।
ଉପହସିତ ହୋଇ ବସିଲେ ସ୍ୱସ୍ଥାନରେ ।୧୮୭୫।
ତଥିଙ୍କ ନୃପେ ନ ଯାଇ ଧନୁର ପାଖକୁ ।
ବସି ଅନାଉଁଥିଲେ ଗର୍ବି-ପରିବକୁ ।୧୮୭୬।
ନୃପତଙ୍କର ଏମନ୍ତ ଗତିକି ଅନାଇଁ ।
କନକ ବୋଇଲ ଚିନ୍ତା ଚୋପନ୍ନ ହୋଇ ।୧୮୭୭।
ମନ ତେଣାଧୀଶେ ପୁଣି ଭୂପ ରୂପ ଧରି ।
ପ୍ରଭୁ ସୂଦ୍ଧସ୍ୱରେ ଶୁଣି ସେ ପ୍ରତଙ୍କ ଗରି ।୧୮୭୮।
ଏଠାକୁ ଆସିବେ ମୋର କନ୍ୟାକୁ ଯଉକୁ ।
ଲଜ୍ଜା କଲ ଏଣିକି ନାହିଁ ମୋ କେଣକୁ ।୧୮୭୯।

ଧନୁରୁ ନୁଆଁଇବା ବପୁ ଥାଉ ଦୂରେ ।
ତାକୁ ଘୁଞ୍ଚାଇବା ବାର୍ତ୍ତା ନାହିଁ ତ ଏଠାରେ ।୧୮୮୦।
ଏବେ ଜାଣିଲି ଧନୁ ବଳସ୍ଥଳା ହୋଇଲା ।
କନ୍ୟାରୂପେ ଭର୍ତ୍ତବାରୁ ମୋ ସୁତା ଜନ୍ମିଲା ।୧୮୮୧।
ପ୍ରତିଜ୍ଞା ଭଙ୍ଗ ହେବ ନାହିଁ ଧର୍ମବନ୍ଧୁଜ ।
ଏଣୁ ଏବେ ସ୍ୱ ସ୍ୱ ପୁରେ ଚଳିବା ଉଚିତ ।୧୮୮୨।
ଏମନ୍ତ ନୃପତି ବାଣୀ ଶୁଣି ସେ ସ୍ଥାନର ।
ନାଗରଜନ ସୀତା-ଦଶା ଚିନ୍ତି ଚିନ୍ତାତୁର ।୧୮୮୩।
ଜନକର ବାଣୀ-ବାଣତାଡ଼ିତ ଲକ୍ଷ୍ମଣ ।
କୋପବଶରେ ଉଠନ୍ତେ ତା ନୟନ ଅରୁଣ ।୧୮୮୪।
ଭ୍ରୂ ଭ୍ରୁକୁଟିଳ ହେଲା ଅଧର କମ୍ପିଲା ।
ରାମକୁ ନମି ସେ କଥେ ଏମନ୍ତ ବୋଇଲା ।୧୮୮୫।
ଯେଉଁ ସମାଜରେ ରଘୁବଂଶଜାତ ଥାଏ ।
ସେ ସମାଜେ ଅଯୋଗ୍ୟ ବାଣୀ କୁହା ନ ଯାଏ ।୧୮୮୬।
ଏଠାରେ ରଘୁର ବଳ ଥିବା ଜାଣି ଜାଣି ।
ଜନକ ମୁଖୁଁ ନିର୍ଗତ ଅନୁଚିତ ବାଣୀ ।୧୮୮୭।
ହେ ! ରାମ ଦିନେଶ-ବଂଶ-ସାରସ ଦିନେଶ ।
ସତ୍ୟ ମୁଁ କହିବି ଏଥେ ନାହିଁ ଗର୍ବ ଲେଶ ।୧୮୮୮।
ତୁମ୍ଭ ଆଦେଶ ହେଲେ ମୁହିଁ ଏ ଭୂଗୋଳକୁ ।
କନ୍ଦୁକ ପରି ହେଲେ ଟେକିବି ଉପରକୁ ।୧୮୮୯।
ପୂର୍ଣ୍ଣ ଭଗ୍ନ ହାଣ୍ଡି ପରି ତାହାକୁ ଫୋଡ଼ିବି ।
ମୂଳକ ପ୍ରାପ୍ତେ ମେରୁଗିରିକି ଉପାଡ଼ିବି ।୧୮୯୦।
ତୁମ୍ଭ ମହାପ୍ରତାପ ବଳରେ ପିନାକର ।
ଏ ବୃଦ୍ଧିଣୀ ଭୋପୁଣି ନୁହଇ କି ଛାର ? ୧୮୯୧।
ହେ ରଘୁକୁଳବର ! ତୁମ୍ଭ ଆଜ୍ଞା ହେଲେ ।
ଏ ଧନୁ ଦେଖୁଁ ମୁଁ ଜୀବାପରି ହୋଇ ହେଲେ ।୧୮୯୨।
ମୃଣାଳ ସମ ହେବା ଏ ରୂପେ ଭଣି ଦେବ ।
ଏହାକୁ ଧରି ଦିବ ଶଏ ଯୋଜନ ଧାଇଁ ।୧୮୯୩।

ତୁମ୍ଭ ପ୍ରତାପ ବଳେ ଏହାକୁ ଛବଦଣ୍ଡ ।
ପଞ୍ଚବ୍ରେ ଅନାୟାସେ କରିବ ବେନି ଖଣ୍ଡ । ୧୮୯୪ ।

ସେପରି ନ କଲେ ତୁମ୍ଭ ଶ୍ରୀଚରଣ ଋଣ ।
କେବେ ଅଙ୍କେ ଧରିବ ନାହିଁ କାର୍ମୁକ ବାଣ । ୧୮୯୫ ।

ଏମନ୍ତ ଅତ୍ୟନ୍ତ କ୍ରୋଧେ ଭାଷନ୍ତେ ଲକ୍ଷ୍ମଣ ।
ଧରା ଥରିଲା କମ୍ପିଲା ଦିଗ୍‌ବାରଣଗଣ । ୧୮୯୬ ।

ଚମତ୍କୃତ ନୃପେ ପୁଣି ସବୁ ନାରୀ ନରେ ।
ପ୍ରକମ୍ପଯୁକ୍ତ ହୋଇଲେ ଅଧିକ ଭୟରେ । ୧୮୯୭ ।

ସୀତା ମୂର୍ଚ୍ଛିତା ହେଲା, ଜନକ ସଙ୍କୁଚିତ ।
ବିଶ୍ୱାମିତ୍ର ରାମ ମୁନିଗଣ ଆନନ୍ଦିତ । ୧୮୯୮ ।

ତେବେ ରାମ ଅନୁଜଙ୍କୁ ନିବାରି ଠାରରେ ।
ପ୍ରେମଭରେ ବସାଇଲେ ନିଜ ନିକଟରେ । ୧୮୯୯ ।

ପରେ ବିଶ୍ୱାମିତ୍ର ମୌନ ସୂତ୍ରକାଳ ଜାଣି ।
ରାମଙ୍କୁ କହିଲେ ଏହେ ପ୍ରେମଯୁତ ବାଣୀ । ୧୯୦୦ ।

ବାପୁ ! ନ କର ମନ ଉଠ ଭାଙ୍ଗ ଚାପକୁ ।
ଖଣ୍ଡ ଜନକ ନୃପତି ମନ ସନ୍ତାପକୁ । ୧୯୦୧ ।

ତା ଶୁଣି ତାଙ୍କୁ ରାମ ନମି ସମ ଚିତ୍ତରେ ।
ଉଭା ହୁଅନ୍ତେ ସୁଧା-ସିଂହାସନ ଠାଣିରେ । ୧୯୦୨ ।

ମହୋଦୟାଦ୍ରି ରାମ ବାଳାର୍କରେ ଶୋଭିଲା ।
ସୁଜନଙ୍କ ମାନସ-ସାରସ ବିକଶିଲା । ୧୯୦୩ ।

ପୁଣି ତାଙ୍କ ନେତ୍ରାଲୋକ ତୁଷ୍ଟ ହୋଇଲା ।
ଦୁର୍ଜନଙ୍କର ଚିତ୍ତ-କୁମୁଦ ମଉଳିଲା । ୧୯୦୪ ।

ନୃପଙ୍କ ଆଶା-ନିଶା ନାଶକୁ ପାଇଲା ।
ଜନ ବଦନ କୁଷ୍ଟପନ୍ତ୍ର ମ୍ଳାନ ହୋଇଲା । ୧୯୦୫ ।

ଅଭିମାନୀ ନୃପଙ୍କ ପ୍ରକର ସଙ୍କୁଚିଲେ ।
ମୂଢମନ ତନୁ ତନୁ ଅନଳ ଜଳିଲା । ୧୯୦୬ ।

ପ୍ରଭୁ ନାରାୟଣେ ଏକ ମନରେ ଭାବନ୍ତେ ।
ରାମ ଧନୁକୁ ନୁଆଁଇ ଗୁଣ ପୁଣାଇଲେ । ୧୯୦୭ ।

ସୀତା ମାତା ସ୍ୱୀୟ ଚିତ୍ତେ ସନ୍ଦେହକୁ ପାଇ ।
ଏମନ୍ତ ପଗ୍ଭରିଲେ ସଜନୀଙ୍କ ଅନାଇଁ । ୧୯୦୮ ।
ଏ ସୁବଳ ହଂସପୋତ ଶୃପ ମନ୍ଦରକୁ ।
ଟେକିବା ପାଇଁ କିମ୍ପା କରୁଛନ୍ତି ସାହାସକୁ ? । ୧୯୦୯ ।
ତାଙ୍କୁ ସଖୀ ବିନୟେ ଏପରି କଲେ ଜଣା ।
ଦେବି ! ତେଜସ୍ୱୀଠାରେ ଲଘବ ନହେ ଗଣା । ୧୯୧୦ ।
କୁମ୍ଭ-ସମ୍ଭବ କେଡ଼େ, ସେହୁ ଏକା ଚଳୁରେ ।
ପାନ କଲେ ତ ମହାସମୁଦ୍ରକୁ ମୁଖରେ । ୧୯୧୧ ।
ଦେଖିବାକୁ ତପନମଣ୍ଡଳ ଅଟେ ସାନ ।
ସେ ଘୋର ତମକୁ ନାଶ କରେ ବିଶ୍ୱଜନ । ୧୯୧୨ ।
ଇନ୍ଦୁମନ୍ଦବର୍ଣୀ ବଧୂ ହରହର ମୁରେ ।
ମଦମତ୍ତ ମାତଙ୍ଗ ଅଙ୍କୁଶ ଦେଖି ଡରେ । ୧୯୧୩ ।
ଅନଙ୍ଗ ସୁମଶରକ୍ଷେପବଳେ ସକଳ—
ଭୁବନ ନିବାସୀଙ୍କି କରଇ ଅତ୍ୟାକୁଳ । ୧୯୧୪ ।
ଏଣୁ ଦେବି ! ସଂଶୟକୁ ମନୁ ଦୂର କର ।
ଧନୁକୁ ନୁଆଁଇବ ନିଶ୍ଚେ ଏ ନବବର । ୧୯୧୫ ।
ଜନକ-ନନ୍ଦିନୀ ସଖୀ ବାଣୀ ଶ୍ରବଣରେ ।
ଶ୍ରୀରାମଙ୍କୁ ନିରେଖିଥିଲେ କୁତୂହଳରେ । ୧୯୧୬ ।
ତେବେ ସୀତା ପ୍ରୀତିଃରେ ବିଲୋକି ରାମଙ୍କୁ ।
ଏମନ୍ତ ସ୍ତବଇ ମନେ ଲଭି ସନ୍ତାପକୁ । ୧୯୧୭ ।
କୋମଳ ତନୁ ଏହୁ କଠୋର ଧନୁ ସେହୁ ।
କିସ୍ପେ ମୁହେ ପ୍ରାରବ ବନ୍ଧ ହେବ କେହୁ ? । ୧୯୧୮ ।
କରନ୍ତୁ କୃପା ଶିବାଶିବଗଣନାୟକ ।
ସାନକବର୍ଣ୍ଣୀ ହେଉ ସେ ମହାକାର୍ମୁକ । ୧୯୧୯ ।
ସେ ମନସ୍ୱିନୀ ଏମନ୍ତ ଅନେକ ବିଧରେ ।
ପ୍ରେମରୁ ସ୍ତବନେ କଲେ ଚିନ୍ତାକୁଳ ଚିତ୍ତରେ । ୧୯୨୦ ।
ସୀତା ସମଙ୍କୁ ଧନୁକୁ ଧରିବୁ ସମଙ୍କୁ ।
ଚାରନ୍ତି ବ ଗୁର୍ବେ ଲଭି ପ୍ରେମକୁ ଅଙ୍କୁ । ୧୯୨୧ ।

ତା ଚଞ୍ଚଳାକ୍ଷିଯୁଗ ମାର ମୀନ ଯୁଗଳ ।
ଚନ୍ଦ୍ରମଣ୍ଡଳେ ଖେଳିବା ପରାଏ ମଞ୍ଜୁଳ ।୧୯୨୨।
ତା ଲଜ୍ଜା ନଶାବର୍ଣ୍ଣ ତୁଣ୍ଡଜଳଜାତରେ ।
ବଚନ-ମଧୁପଚୟ ବନ୍ଦୀ ହେଲା ଭରେ ।୧୯୨୩।
ମହାଲେଖ୍ୟ ଲବ୍ଧାଶ୍ରିତ କାଞ୍ଚନ ପ୍ରାପୃତ ।
ତା ନେତ୍ରର ଏକ କୋଣେ ରହିଲା ଲୋଭକ ।୧୯୨୪।
ମନେ ଯେ ସ୍ଥିର କଲା ସର୍ବାନ୍ତର୍ଯ୍ୟାମୀ ହର ।
ସକଳଜନ ହୃଦୟେ ବହୁଛି ତ ପୂର ।୧୯୨୫।
ଯେ ପ୍ରଶ୍ନ ମୋ ନିକରଣ ଶୁଣି କି ଜାଣିବ ।
ସେତେ ଶ୍ରୀରାମ-ପାଦ ଦାସୀ ନିଶ୍ଚେ କରିବ ।୧୯୨୬।
ଯେ ଯାହାରେ ଅକୃତ୍ରିମ ପ୍ରୀତିକି କରଇ ।
ସେ ତାହାକୁ କାଳକ୍ରମେ ଅବଶ୍ୟ ଲଭଇ ।୧୯୨୭।
ଏମନ୍ତ ସୀତାଭାବକୁ ଜାଣି ପ୍ରୀତଭରେ ।
ରାମ ତାର ସୁନ୍ଦର ମୁଖକୁ ଚାହିଁ ପରେ ।୧୯୨୮।
ଗରୁଡ଼ ଶେଷ ସର୍ପକୁ ଦେଖିବା ରୀତିରେ ।
ଧନୁକୁ ଦେଖି ଗମିଲା ମତ୍ତେଭ ଗତିରେ ।୧୯୨୯।
ରାମ ପଛେ ଲକ୍ଷ୍ମଣ ଯାଇ ଧନୁକୁ ଚାହିଁ ।
ଭାବିଲା ଏହାକୁ ନିତ କରନ୍ତେ ମୋ ଭାଇ ।୧୯୪୦।
ଚରଣଭାର ନ ସହୁ ଭୂମି କମ୍ପିଥିବ ।
ତାହାହେଲେ ଜଗତର ଅନିଷ୍ଟ ଘଟିବ ।୧୯୩୦।
ଏତେ ପାଇଁ ସେ ବର ପୁଲକିତ ଗାତ୍ରରେ ।
ଏହି ପ୍ରକାରେ କହିଲା ଅଭ୍ୟନ୍ତରରେ ।୧୯୩୧।
ହେ କଚ୍ଛପ ! ହେ ବରାହ ! ହେ ଦିଗ୍‌ଗଜକୁଳ !
ହେ ଶେଷ ! ତୁମ୍ଭେମାନେ ମୋ ଆଦେଶକୁ ପାଳ ।୧୯୩୩।
ରଘୁକୁଳାବ୍ଧି ଚନ୍ଦ୍ର—ରାମଚନ୍ଦ୍ର ଏବେ—
ରୂପ ନତ କରିବାକୁ ହେଲେଣି ତତ୍ପର ।୧୯୩୪।
ଏଣୁ ତୁମ୍ଭେମାନେ ମେଳ ହୋଇ ଧୀରହୁବେ ।
ଧରଣୀକି ଧରିଥିବ ଅତ୍ୟନ୍ତ ଦୃଢ଼ରେ ।୧୯୩୫।

ମୋହବଶେ ଶିବ-ଗୃହ-ନାବେ ଚଢିଥିଲା ।
ସମାଜ ରାମବାହୁବଳାବ୍ଧିରେ ବୁଡ଼ିଲା । ୧୯୫୦ ।
ଧମ ପକାନ୍ତେ ଭୂରେ ଗୃପଖଣ୍ଡ ଦ୍ୱୟଙ୍କୁ ।
ଦେଖି ସକଳ ଜନେ ଲଭିଲେ ଆନନ୍ଦକୁ । ୧୯୫୧ ।
ରାମଚନ୍ଦ୍ର-ଚନ୍ଦ୍ରମାକୁ ବିଲୋକି କୌଶିକ ।
ପୟୋବ୍ଧିରେ ଉଚ୍ଛୁଳିଲା ପୂତ ପ୍ରେମୋଦକ । ୧୯୫୨ ।
ନାନାବିଧେ ଗଗନରେ ବାଜଣା ବାଜିଲା ।
ଅପ୍ସରୋଗଣ-ଗାନନର୍ତ୍ତନ ପ୍ରସରିଲା । ୧୯୫୩ ।
ବ୍ରହ୍ମାଦି ଦେବେ ସିଦ୍ଧେ ମୁନିଏ ଶ୍ରୀରାମଙ୍କୁ ।
ସ୍ତୁତି କରି କଲେ ଦିବ୍ୟ ପୁଷ୍ପ ବର୍ଷଣକୁ । ୧୯୫୪ ।
ଜୟ ଜୟ ନିନାଦରେ ଜଗତ ପୂରିଲା ।
ବନ୍ଦୀମାଗଧସୂତଙ୍କ ସ୍ତୁତି ପ୍ରକଟିଲା । ୧୯୫୫ ।
ଶ୍ରୀରାମଙ୍କୁ ଭକ୍ତିରେ ଜନେ ମଣି କାଞ୍ଚନ ।
ଦେଲେ ଘୋଟକ ମାତଙ୍ଗ କଲେ ନିର୍ମଞ୍ଛନ । ୧୯୫୬ ।
ବାଜିଲା ଢଙ୍କଘୋଡ ମୃଦଙ୍ଗ ଭେରୀ ଢୋଲ ।
ଦୁନ୍ଦୁଭି କାହାଳି ଶଙ୍ଖ ବେଣୁ କରତାଳ । ୧୯୫୭ ।
ପ୍ରମୋଦଭରେ ହୋଇ କୁଳପ୍ରମଦାମାନେ ।
ସୁସ୍ୱରେ ମଙ୍ଗଳ ଗାନ କଲେ ନାନା ସ୍ଥାନେ । ୧୯୫୮ ।
ସୁଷ୍ଟ ଚେଟର ଶଙ୍କା ବୃଷ୍ଟି କରିବା ପରି ।
ଦିଶିଲୀ ସଖୀଙ୍କ ଯହୁଁତେ ହେଲା ସୁଖକରି । ୧୯୫୯ ।
ଜନକ ହୃଷ୍ଟ ହେଲେ ଚିନ୍ତାକୁ ଦୂର କରି ।
ପ୍ରବସ୍ତାନ୍ତ ମାନବ ଅଳ ପାଇବା ପରି । ୧୯୬୦ ।
ନୃପବୃନ୍ଦ ଦେଖି ସକଳ ମନ୍ଦଫଳେ ।
ଦିବସର ଦୀପ ପରି ଦୀପ୍ତିହୀନ ହେଲେ । ୧୯୬୧ ।
ଯେସନ ସ୍ଥଳ-ଜଳ-ପ୍ରସୂ ବୃତେଜେ ।
ତେସନ ଅବ୍ଧିପୂରା ଚ  ଯନ୍ଦନପ୍ରେ । ୧୯୬୨ ।
ସଖୀକି ଚକୋର ଶିଶୁ ଦେଖିବା ସ୍ଥଳରେ ।
ହୃଦପଦ୍ମକୁ ବନ୍ଧୁ ଶ୍ରୀ ବୁଝିଲା ସାଦରେ । ୧୯୬୩ ।

ଶତାନନ୍ଦର ବୋଲକୁ ଯାଇ ମହାସୁତା ।
ରାମ ନିକଟେ ଗଲେ ହୋଇ ସଖୀବେଷ୍ଟିତା । ୧୯୬୪ ।
ରମା ପ୍ରତିମାଙ୍କ ମଧ୍ୟେ ସୁରମା ପ୍ରତିମା ।
ପ୍ରାଏ ସଖୀଙ୍କ ମଧ୍ୟେ ସୀତା ଲଭ ସୁଷମା । ୧୯୬୫ ।
ଗତରେ ନାନାରତ୍ନ ଶିଞ୍ଜନଶୀଳଜାଲ ।
କଙ୍କଣପ୍ରୁ ପ୍ରଭୃତି ଭଲ ଦରଶମାଳ । ୧୯୬୬ ।
ତନୁ ଏବୋଟଲ ମାତ ମନ ଉଚ୍ଛ୍ୱାସିତ ।
ଅନ୍ତରଙ୍ଗ ପ୍ରୀତି ଅନୁମାନ ଦା ବଢ଼ିତ । ୧୯୬୭ ।
ଏମନ୍ତେ ଯେ ଶ୍ରୀରାମ ଭଙ୍ଗ ଗତ ଭଲ ।
ତତ୍କାଳ ନବେଷ୍ଟି କଳ ଦେଲ ଛବି ପର ୧୯୬୮ ।
ପରେ ଚତୁର ସଖୀ ଅଗ୍ରତା ହୋଇ ବାଳା ।
ବରବାକୁ ଦେବାଲ ଚନ୍ଦ୍ରଗଲ ମାଳା । ୧୯୬୯ ।
ମାତ୍ର ପ୍ରେମବବଶା ହୋଇ ସେହୁ ଏକୁର ।
ରାମକଣ୍ଠେ ପିନ୍ଧାଇ ପାରିଲ ନାହିଁ ସର । ୧୯୭୦ ।
ସୀତା ଲୁଚ କରତଳ ଏନାଇ ଭମଳ ।
ମୁରଲବୈର ବପ୍ରେ ହୋଇ ଅତ୍ୟାନ୍ତାକୁଳ । ୧୯୭୧ ।
ଜୟମାଲା ବଦନ-ଚନ୍ଦ୍ରମାକୁ ପ୍ରଦାନ—
କରୁଛି ପଦ୍ମ ବୋଲି ଦେଲ ପ୍ରତୀୟମାନ । ୧୯୭୨ ।
ତେବେ ସଖୀଙ୍କ ମୁଖୁଁ ଶୁଣି ଗାନ ଶୁଭଲ ।
ସୀତା-ଦଣ୍ଡି ହାର ରାମ ହୃଦୟେ ଶୋଭିଲା । ୧୯୭୩ ।
ନଭୁଁ ପୁଷ୍ପବୃଷ୍ଟି ଦେଲ ଲଭ ଉଚ୍ଛ୍ୱଳିତ ।
କୁମୁଦ ପର ନୃପସମୂହ ସଙ୍କୁଚିତ । ୧୯୭୪ ।
ଗଗନରେ ନଗରରେ ବାଜିଲ ବାଜଣା ।
ଦୁନ୍ଦୁଭି ଶଙ୍ଖୁରେ ସିନ୍ଧେ ହୋଇବେ ପ୍ରସୁଣୀ । ୧୯୭୫ ।
ବୃନ୍ଦାବଳ ଜଳର ନବ ପଲବ ମୁକ୍ତ ।
ମୁଖୁ ବନ୍ଧୁଗଳି ଦେଲ ଜୟ ଜୟ ଧ୍ୱନି । ୧୯୭୬ ।
ଅପ୍ସରମାନେ ନାଚିଲେ, ଗନ୍ଧର୍ବେ ଗାଇଲେ ।
ମୁଣି ବାରମ୍ବାର ପାବକାଙ୍କ ଦୃଷ୍ଟି ଭଲେ । ୧୯୭୭ ।

ବଂଶାବଳୀଙ୍କ ବନ୍ଦୀମାଗଧେ ଉଚ୍ଚାରିଲେ ।
ବିପ୍ର ବେଦ ପଢିଲେ ନାରୀଏ ବନ୍ଦାଇଲେ । ୧୯୭୮ ।
ଶିବଧନୁକୁ ଭାଙ୍ଗି ସୀତା ଗ୍ରହଣ କଲା ।
ଶ୍ରୀରାମ-ଶୌର୍ଯ୍ୟ ତ ଭୁବନବିତତେ ପୂରିଲା । ୧୯୭୯ ।
ସୀତା ରାମ ଏକତ୍ର ରତ୍ନ ଶୋଭା ଶୃଙ୍ଗାର ।
ମେଳନ ପରି କଲେ ଜନକ ରାଜଦ୍ୱାର । ୧୯୮୦ ।
ସଖୀମାନେ ରାମପାଦ ସ୍ପର୍ଶ କରିବାକୁ ।
କହିଲେହେଁ ସୀତା ସ୍ମରି ଅହଲ୍ୟା ଦଶାକୁ । ୧୯୮୧ ।
ନ ଛୁଇଁବା ଜାଣି ତା ଅସାଧାରଣ ପ୍ରୀତି ।
ଚିତ୍ତେ ହସିଲେ ମନେ ମନେ କୌଶଲ୍ୟା ସୁତ । ୧୯୮୨ ।
ସୀତାକୁ ଦେଖି ତେବେ ପାତକ ମୂଢ଼ ଶୂର ।
ନୃପତିମାନେ ଏକ ହୋଇ କରି ବାଗୁର । ୧୯୮୩ ।
ଉଠି ସଜ ହୋଇ କଟେ ଭାଷିଲେ ଏମନ୍ତେ ।
ଦେଖୁଛ କିସ ଏଥି ଅହେ ଅବନୀକାନ୍ତେ ? ୧୯୮୪ ।
କନ୍ୟାକୁ ଧରି ଦୂରକରିବି ବାଳ ତୂର୍ଣ୍ଣ ।
ନୃପ ବଂଶରେ ତ କାର୍ଯ୍ୟ ହୋଇ ନାହିଁ ପୂର୍ଣ୍ଣ । ୧୯୮୫ ।
ଥିଲେ ଅସ୍ତ୍ର ଅପବନମ ନକେ ଜୀବନ ।
କେ କରିପାରିବ ଏ କନ୍ୟା-ପାଣି-ପୀଡ଼ନ । ୧୯୮୬ ।
ଭଦେବ-ନନ୍ଦଧର କଲେ ତାଙ୍କ ସାହାକୁ ।
ମାରିବା ନିଶ୍ଚେ ଦୂର ସ୍ୱରଙ୍କ ସଙ୍ଗେ ତାଙ୍କୁ । ୧୯୮୭ ।
ଏତେ ଶୁଣି ସାଧୁ ନୃପେ କହିଲେ ଏମନ୍ତ ।
ଏ ରାଜ ସମାଜ କର ଲଜ୍ଜାକୁ ଲଙ୍ଘିତ । ୧୯୮୮ ।
ତୁମ୍ଭ ପ୍ରଭୁତ୍ୱ ଧୈର୍ଯ୍ୟ ଶୌର୍ଯ୍ୟ ବଳ ପ୍ରତାପ ।
ସବୁ ତ ସମ୍ୟକ ସହ ପାଇଲା ଲୋପ । ୧୯୮୯ ।
ସେ ସବୁ ପୁଣି ତୁମ୍ଭେ କେଉଁଠାରୁ ଲଭିବ ?
ଏବେ ତୁଚ୍ଛରେ ମୃତ୍ୟୁ ଲଭିବ କହୁଛ । ୧୯୯୦ ।
ଏଣ୍ଡୀ ଦେହ ମତ ଠେଲ ରାମକୁ ଅନାଇ ।
ଲକ୍ଷ୍ମଣ କୋପାନଳେ ଜଳିଲା ଦ୍ରୁତ କାହିଁ । ୧୯୯୧ ।

ତାତ ସନ୍ଧ୍ୟାଂଶକୁ ଏସ ସିଂହ ଲଗ୍ନକୁ ।
ଅକାରଣ କୋପଶୀଳ ନିଜ ମଙ୍ଗଳକୁ । ୧୯୯୨ ।
ଶଙ୍କରଦ୍ରୋହୀ ସୁଖକୁ ପୁଣି ଈର୍ଷ୍ୟାକୁ ।
ଲେଖପ ପଣକୁ ଭାମୀ ନାଂଲଙ୍କହୃକୁ । ୧୯୯୩ ।
ଯାଦବଚନ୍ଦ୍ରଗ୍ମାନ ଜନ ମୂଢ଼ଦଶାକୁ ।
ବାଣ୍ଡିବା ପର ରୂପ୍ୟେ ବାଣ୍ଡି ଅଛ ସୀତାକୁ । ୧୯୯୪ ।
ଏମନ୍ତ କୋଳାହଳ ଶୁଣି ସୀତା ବପୁରେ ।
ଯାତା ଜଡ଼ଲ ଗଲ ପଶୀଳ ସହିତରେ । ୧୯୯୫ ।
ଚକ୍ଷୀ ପ୍ରକୃତ ଏବଂ ଶ୍ରୀକାନ୍ତ ନାଗ ଜନେ ।
ଏଠାଟାକୁ ଧ୍ୟାନ କଲେ ଅତ୍ୟାକୁଳମନେ । ୧୯୯୬ ।
ସାଧୁଦୁନ୍ଦୁଭ ରମ ଜାନଙ୍କର ପ୍ରେମକୁ ।
ଲଗେ ଧର ଗଲ ନିଜ ଗୃହକୁ ସମୀପକୁ । ୧୧୯୭ ।
ଲକ୍ଷ୍ମଣ ନୃପ ଦୁଅନ୍ତେ ତା ମୁଖ ଅରୁଣ ।
ନେତେ ଲୁଟିଲେ ଭୃକୁଟେ ଦଣ୍ଡିସ ସ୍ଫୁରଣ । ୧୯୯୮ ।
ଯେ କରନିହ ମୌନ ହୋଇ ରମ ବପୁରେ ।
ନୃପମାତଙ୍କପୁଅନ୍ତ ଗୃହେଁକ ବନରେ । ୧୯୯୯ ।
ନଗରର ନାରୀ ନରେ ପାଇ ବୈମୁଖକୁ ।
ନାନା ଭଙ୍ଗିରେ ଗାଳି ଦେଲେ ଭୂପସବକୁ । ୨୦୦୦ ।

## ପରଶୁରାମାଗମନ

ସେଠାରୁ ବଡ଼ନୃପଙ୍କ ଧାର୍ତ୍ତାରୁ ଶୁଣି ।
ତେବେ ପଡ଼ିସ ଭୃଗୁକୁଳାତ୍ମଜ-ତରଣୀ । ୨୦୦୧ ।
କୁଞ୍ଚକୁଞ୍ଚିତ ଗୌରକାନ୍ତି ଜଟାଳର ।
ଚନ୍ଦ୍ର ସମ ମୁଖ କୋପେ ହୋଇଅଛି ଲାଲ । ୨୦୦୨ ।
କୁଟିଳ ଭ୍ରୂକୁଟିକୃତ ରକ୍ତାମ୍ବକାନ୍ତ ।
ଜଟାଜୁଟ ବନ୍ଧନର ବସୁଲ ମସ୍ତକ । ୨୦୦୩ ।
ବିସ୍ତୀର୍ଣ୍ଣ ହୃଦୟ, ବାହୁ କରି-କର-ବର ।
କଲ୍ପିତ ବସନ ଦୃଢ଼ଯଜ୍ଞୋପବୀତଧର । ୨୦୦୪ ।

ତ୍ରିପୁଣ୍ଡ୍ର ରୁଦ୍ରାକ୍ଷମାଳା ଯଜ୍ଞସୂତ୍ରଯୁତ ।
ତୂଣବାଣ ବାଣାସନ କୁଠାର ଶୋଭିତ । ୨୦୦୫ ।
ସାଧରୂପେ ଘୋର କର୍ମେ ଯେ ମହାନୁଭାବ ।
ବର୍ଣ୍ଣନାତୀତ ଅଟଇ ତାହାର ପ୍ରଭାବ । ୨୦୦୬ ।
ଏମନ୍ତ ଭଙ୍ଗୀରେ ତବେ ସେ ହେଲା ପ୍ରବେଶ ।
ଧରଅଛି ଜଟା ଗାରବସ ମୁନିବେଶ । ୨୦୦୭ ।
ସଞ୍ଚାଣକୁ ଦେଖିବା କପୋତ ପକ୍ଷୀରୂପେ ।
ପରଶୁରାମଙ୍କୁ ଦେଖି ସାଙ୍କୁଡ଼ିଲେ ଭୂପେ ।୨୦୦୮ ।
ପୁଣି ବିନୟଭାବେ ନିଜାସନ ତେଜିଲେ ।
ପିତୃନାମ ସ୍ୱନାମ କହି ତାଙ୍କୁ ବନ୍ଦିଲେ । ୨୦୦୯ ।
ଯେ ଯାହାର ବଦନକୁ ଅଳପେ ଗୃହିଁଲ ।
ସେ ବ୍ୟକ୍ତି ନିଷ୍ଟୟେ ମଲି ବୋଲି ଭାବିଲା । ୨୦୧୦ ।
ଜନକ ଭୂନାୟକ ତନ୍ତ୍ରରେ ପ୍ରଣମିଲା ।
ସ୍ୱକୀୟ ନନ୍ଦନୀରେ ତାଙ୍କୁ ପ୍ରଣମାଇଲା । ୨୦୧୧ ।
ଜାନକୀ ଲଭି ଭାର୍ଗବ ଶୁଭଶୀର୍ବାଦକୁ ।
ସଖୀମେଳେ ଫେରଇଲ ମାତାର ସମ୍ମୁଖୁ । ୨୦୧୨ ।
ବିଶ୍ୱାମିତ୍ର ମୁନି ହାବ ତାହାକୁ ଦେଖିଲ ।
ରାମଲକ୍ଷ୍ମଣଙ୍କରେ ପ୍ରଣାମ କରାଇଲା । ୨୦୧୩ ।
ବିଶ୍ୱାମିତ୍ର କହନ୍ତେ ଦୁଇ ସ୍ୱଭାବିଁ ଜାଣି ।
ବର୍ଦ୍ଧିତ ଆଶୀର୍ବାଦ କଲ ପରଶୁପାଣି । ୨୦୧୪ ।
କହି ତାଳ ନାମ ଛବ ଗୃହିଁ ଜନକଙ୍କୁ ।
ପଚ୍ଚାରିଲ ଜନେ ପୂଜା ହେଲ କାରଣକୁ । ୨୦୧୫ ।
ଜନକ ମୁଖରୁ ଶୁଣି ଧନୁ ସମ୍ବାଦକୁ ।
ଦେଖି ଭୂମିପତିତ ଧନୁଖଣ୍ଡଯୁଗକୁ । ୨୦୧୬ ।
ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଏପରି ବୋଇଲା ।
ରେ ରେ ଜନକ ! କେହୁ ଏ ଧନୁକୁ ଭାଙ୍ଗିଲା । ୨୦୧୭ ।
ତାକୁ ଆଣି ଏବେ ମୋତେ କରାଅ ଦର୍ଶନ ।
ନୋହିଲେ ତୋ ସବଂଶେ କରିବ ଧ୍ୱଂସନ । ୨୦୧୮ ।

ତା ଶୁଣି ଲକ୍ଷ୍ମଣ ହସି ବୋଲନ୍ତି ହେ ଦେବ ।
 ସବୁ ଧନୁ ସମାନ ବୋଲି ମୋ ମନୋଭାବ । ୧୦୩୩ ।
ଏ ଜୀର୍ଣ୍ଣ କାର୍ମୁକ ଭଗ୍ନ ହୁଅନ୍ତେ କାହାର ।
 ଏତ ଲେଶମାତ୍ର ହେଲେ ନାହିଁ ତ ବିଚାର । ୧୦୩୪ ।
ଏହାକୁ ନୂତନ ଭାବି ରାମ ଆକର୍ଷଣ ।
 କରନ୍ତେ ବେନି ଖଣ୍ଡ ହେଲା ଏ କମାସୃଣ । ୧ ୩୫ ।
ଏଥିରେ ଶ୍ରୀରାମ-ଦୋଷ ତିଳେ ହେଲେ ନାହିଁ ।
 ଅକାରଣରେ ତୁମ୍ଭେ କୋପକର କିମ୍ପାଇଁ ? ୧୦୩୬ ।
ତେବେ ଦରସ୍ଥଂମ ଦେଖି ପରଶୁଧାର ।
 ବୋଲନ୍ତି ଶୁଣି ନାହୁଁ କରେ ପ୍ରଭାବ ମୋର ? ୧୦୩୭ ।
ଅରେ ଶଠ ! ତୁ ବାଳକ, ତେଣୁ ତୋର ପ୍ରାଣ—
 ଘେନିବାକୁ ମୋର ମନ ବଳୁ ନାହିଁ ଜାଣ । ୧୦୩୮ ।
ଜଡ଼ମୁନି ବୋଲି ମୋତେ ଭାବଅଛୁ ତୁହି ।
 ମାତ୍ର ଶୁଣ ବ୍ରହ୍ମଚାରୀ ଅତିକ୍ରୋଧୀ ମୁହିଁ । ୧୦୩୯ ।
ପୃଥ୍ୱୀ କ୍ଷତ୍ରିୟ କଣ୍ଟକ-ମର୍ଦ୍ଦକ ବୋଲି ।
 ସୁକୀର୍ତ୍ତି ପ୍ରଭାବରେ ଜଗତେ ବିଖ୍ୟାତ ହେଲି । ୧୦୪୦ ।
ବାହୁବଳେ ବହୁବାର ଭୂପଶୂନ୍ୟା କରି ।
 ମେଦିନୀକି ଦାନ କଲି ବିପ୍ରଙ୍କୁ ଆଦରି । ୧୦୪୧ ।
ଅରେ ନୃପସୁତ ! ଭଲେ ଦେଖ ଏ କୁଠାର ।
 ଛେଦିଅଛି ସହସ୍ରବାହୁ-ବାହୁ-କାନ୍ତାର । ୧୦୪୨ ।
ଜନନୀ ଜନକଙ୍କୁ ଦୁଃଖୀ ତୁହି ନ କର ।
 ଏ କଠୋର କୁଠାର ଗର୍ଭସ୍ଥ ଶିଶୁହର । ୧୦୪୩ ।
ତା ଶୁଣି ହସି ଲକ୍ଷ୍ମଣ କହନ୍ତି ମୃଦୁରେ ।
 ଆପେ ମହାବୀର ବୋଲି ଭାବଇ ମନରେ । ୧୦୪୪ ।
ବାରମ୍ବାର ମୋତେ ତୁମ୍ଭେ ପରଶୁ ଦେଖାଅ ।
 ପର୍ବତ କି ଫୁଙ୍କ ଦେଇ ଉଡ଼ାଇବା ପାଇଁ ? ୧୦୪୫ ।
ଅଙ୍ଗୁଠି ଦେଖିବା ମାତ୍ରେ ଝଡ଼ି ପଡ଼ିବାକୁ ।
 କଖାରୁ ଫୁଲ ଜାତ ତେ ଏଥି ନାହିଁ ଏଠାକୁ । ୧୦୪୬ ।

ତୁମ୍ଭ ପରଶୁ ଚାପ ଏବେ ଯବେ ଦେଖି ।
କହୁଥିଲି ତ ମୂର୍ଖ ଅପରୋକ୍ଷ ଅପେକ୍ଷି । ୧୦୪୭ ।
ଏବେ ତୁମ୍ଭ ଶୁଦ୍ଧ ଶଙ୍ଖ-ଚକ୍ରକୁ ଦେଖିଲି ।
ତୁମ୍ଭେ ଭଗବାନରେ ଜନ୍ମଥିବା ଜାଣିଲି । ୧୦୪୮ ।
ଏଣୁ ତୁମ୍ଭେ ଯାହା ଯାହା କହୁଥିଲେ ।
ସବୁ ଶୁଣିଲି ତ ମୂର୍ଖ ବୋଧୀ ନୋହୁ ତଳେ । ୧୦୪୯ ।
ସୂର୍ଯ୍ୟକୁ ଶୂଦ୍ରବର ଚନ୍ଦ୍ରଯୋଗଣାରେ ।
ନମସ୍କାରକୁ ବହନ୍ତି ଅମ୍ଭ ବଣଜ ଘରେ । ୧୦୫୦ ।
ସେମାନଙ୍କ ମାନରେ ତ ପ୍ରାପ୍ତ ହୁଏ ପାପ ।
ଦାବରେ ହୁଅନ୍ତି ନାଶ ସନ୍ତୋଷ-ଧନ୍ଦୋପ । ୧୦୫୧ ।
ଏଣୁ ତୁମ୍ଭେ ଜବରେ ଦେଲେ ମୋତେ ତାଡ଼ନ ।
ସମୁଚିତ ଅଟେ ତୁମ୍ଭ ପାଦେ ମୋ ପତନ । ୧୦୫୨ ।
ତୋହ ତୁଳସୀ ସମାନ ଅଟେ ତୁମ୍ଭ ଶାପ ।
ବର୍ଷରେ ଧରଅଛ ପରଶୁ ଶର ରୂପ । ୧୦୫୩ ।
ହେ ମୁନି ! ମୁହିଁ ଦେଖି ତୁମ୍ଭ ବାହୁବଳକୁ ।
ଅଦୋ ଲୁଚିଲି ଦେଖେ ଅଦ୍ଭୁତ ବଚନକୁ । ୧୦୫୪ ।
ସେଥି ପାଇଁ ତୁମ୍ଭଙ୍କୁ ମୁଁ କ୍ଷମା କଲା କରେ ।
ଏବେ ଶୁଣି ଭାର୍ଗବ ବେଦ ବାକ୍ୟ କୋପଶରେ । ୧୦୫୫ ।
ହେ କୌଶିକ ! ତୁମ୍ଭେ ଶୁଣ ଏ ମନ ବାକ୍ୟ ।
ଭୂମିଳ ନରବର ରାଜକୁଳପାତକ । ୧୦୫୬ ।
କ୍ଷତ୍ରିୟ ସାବଦମ୍ଭ-ଚନ୍ଦ୍ରକଳଙ୍କ ।
ମୂର୍ଖ ହତଣୀ ନରଶରଧର ନାଶକ । ୧୦୫୭ ।
ତୁମ୍ଭେ ମୁଁ କହଇ ଏହି ସେତେଣେ ତାଙ୍କର ।
ଧନେ ପଡ଼ିବ ଏତେ ଦୋଷ ବାନ୍ଧୁଁ ମୋହର । ୧୦୫୮ ।
ଏହାକୁ ବଞ୍ଚାଇବାକୁ ତୁମ୍ଭେ ବାଞ୍ଛା କଲେ ।
ମୋ ଗୋତ ଦୃଷ୍ଟାନ୍ତ ଏହା ତୁମ୍ଭ ଦ୍ଵିଜ କଲେ । ୧୦୫୯ ।
ତାହା ଶୁଣି କହନ୍ତି କୌଶିକ ମୁନିବର ।
ତୁମ୍ଭେ ଥିଲେ ଦେ କଣ୍ଟପାରେ ସେ ତୁମ୍ଭର । ୧୦୬୦ ।

ସ୍ତବାପାଳଙ୍କ ବନ୍ଧୁବାର ନିଜ ମୁଖରେ ।
ବଖାଣ ଅଛ ତ ତୁମ୍ଭେ ଅନେକ ବିଧରେ । ୨୦୬୧ ।
ତହିଁରେ ତୁଷ୍ଟ ନ ହେଲେ ଅଉ କିଛି କହ ।
ଯେଷକୁ ଯେଥି ଦୁଃସହ ଦୁଃଖକୁ ନ ସହ । ୨୦୬୨ ।
ତୁମ୍ଭ କରିତୃତ୍ୱ ତ ଧୀର କ୍ଲେଶ ବହୁତା ।
ଗାଳି ଦେବାରେ ଯେହ୍ନ ହେବ ନାହିଁ ଶୋଭିତା । ୨୦୬୩ ।
ବୀରମାନେ ଦେଖାନ୍ତି ଶୂରତାକୁ ସମରେ ।
ସ୍ୱକର୍ମଙ୍କ ବର୍ଣ୍ଣନ୍ତି ନାହିଁ ନିଜାନନରେ । ୨୦୬୪ ।
ସୁଭେ ଶତ୍ରୁ ସମ୍ମୁଖୀନ ହେଲେ ଭୀରୁ ଜନେ !
କାଳ ଯେପରି କରନ୍ତି ପ୍ରଳାପ-ବଚନେ । ୨୦୬୫ ।
ଅହୋ ! ମୁନୀଶ ! ତୁମ୍ଭେ ମୋ ନିମିତ୍ତ କାଳକୁ ।
ଡାକ ଡାକ ପାଇଲ ବ୍ରହ୍ମ ପରିଶ୍ରମକୁ । ୨୦୬୬ ।
ଶୁଣି ଏମନ୍ତ ଲକ୍ଷ୍ମଣ କଟୁ ବଚନକୁ ।
ବୋଇଲେ ସେ କୋପେ ଧରି ଘୋର ପରଶୁକୁ । ୨୦୬୭ ।
ଅହେ ଜନେ ! ନାହିଁ କିଛି ଦୋଷ ମୋହର ।
ଏ ବାଚାଳ ବାଳକ ଯୋଗ୍ୟ ଅଟେ ବଧର । ୨୦୬୮ ।
ଏ ହମ୍ଭ ବୋଲି ଶଙ୍କି ସମ୍ଭାଳିଲି କ୍ରୋଧକୁ ।
ମାତ୍ର ଏବେ ନିଶ୍ଚେ ନେବି ଏହାର ଜୀବକୁ । ୨୦୬୯ ।
ତେବେ କୌଶିକ କହନ୍ତି ସ୍ୱାନ୍ତ କ୍ଷମା କର ।
ସାଧୁଜନେ ଧରନ୍ତି ନାହିଁ ଦୋଷ ଡ଼ମ୍ଭର । ୨୦୭୦ ।
ତା ଶୁଣି ସେ ବୋଇଲେ ମୁହିଁ ଅକାରଣରେ ।
କୁପିତ ହେବା ବନ୍ଧତ ସବଳ ଲୋକରେ । ୨୦୭୧ ।
ଅପରାଧୀ ଗୁରୁଦ୍ରୋହୀ ବଳେ ଅଗେ ମୋର ।
ହେ କୌଶିକ ! ଦେଖିବ ତ କଠୋର କୁଠାର । ୨୦୭୨ ।
ମୋ ଗୁରୁଋଣ ମୁକ୍ତିଅନ୍ତି ମାରି ଏହାକୁ ।
ମାତ ମୁଁ ନିବର୍ତ୍ତିବି ମାନି ତୁମ୍ଭ କଥାକୁ । ୨୦୭୩ ।
ତା ଶୁଣି ବିଶ୍ୱାମିତ୍ର ମନେ ହସି କହଲେ ।
ଅହୋ ! ମୁନିଙ୍କ ହବ ପର ପର ଦଶିଲେ । ୨୦୭୪ ।

ଅସ୍ତ୍ରଶସ୍ତ୍ରୀ ଦେହ ଶିବ କାର୍ମୁକ ଖଣ୍ଡିତ ।
ହୋଇଥିଲେ ହେଲେ ଏ ଜାଣିପାରୁ ନାହିଁତ । ୧୦୭୫ ।
ତେବେ ଲକ୍ଷ୍ମଣ ବୋଲନ୍ତି ଅହେ ମୁନିବର !
ଜଗତେ ବଖାଣ ତୁମ୍ଭ ସଦ୍‌ଗୁଣନିକର । ୧୦୭୬ ।
ଜନନୀ-ଜନକ-ଋଣ ମୁକ୍ତିଛ ତ ହେଲେ ?
ଗୁରୁଦକ୍ଷିଣା ପାଇଁ ମାତ୍ର ତୁମ୍ଭ ଚିନ୍ତା ବଳେ । ୧୦୭୭ ।
ତାହା ମୁହିଁ ତୁଟାନ୍ତା ଶେଷରେ ମୋର ଏଥ ।
ମାତ୍ର ଧନ ବଳ ବଢ଼ିଅଛି କଳେବର । ୧୦୭୮ ।
ମୁଣ୍ଡାଣ୍ଡ ଗଣଙ୍କୁ ଅଣିଲେ ତୁମ୍ଭେ ଖୋଜ ।
ମୁଣ୍ଡାଙ୍କୁ ପଠାଇ ତେବେ ଦେବ ଦେଖା ହେଜ । ୧୦୭୯ ।
ଲକ୍ଷ୍ମଣ ମୁଖୁଁ ଏମନ୍ତ କଟାକଥା ଶୁଣି ।
କୁଠାରକୁ ନୋଥବରେ ଧରାନ୍ତେ ସେ ମୁନି । ୧୦୮୦ ।
ସଭାଜ ନାଶନରେ ଜବନେ ହାହାକାର ।
ଏମନ୍ତ ବୋଲନ୍ତି ମୁଣି ସେ ଛତ୍ରିପୁବର । ୧୦୮୧ ।
ମୋ ଉପରେ ବଢ଼ୁଥାଇ ପରଶୁ ଉଠାଇଲ ।
ହେ ଭାର୍ଗବ ! ତୁମ୍ଭେ ବପୁ ହେବାକୁ ବସିଲ । ୧୦୮୨ ।
ଅରେ ନୃପଦ୍ରୋହୀ ! ଅଜ୍ୟାଏ ତୁମ୍ଭ ଜେଟେ ।
ଦେଖି ନାହିଁ ଭୀମ କରବୁ ପ୍ରଭବେଟେ । ୧୦୮୩ ।
ବ୍ରାହ୍ମଣ ଦେବତା ବରେ ମାତ୍ର ବଡ଼ ହୁଏ ।
ଏତେମ ସମସ୍ତଙ୍କରେ ସେ ବନ୍ଦନୀୟ ନହେଁ । ୧୦୮୪ ।
ଏତେ ଶୁଣି ସମସ୍ତେ ବୋଲନ୍ତି ଏକ ନାଦେ ।
ହେ ଦେବ ! ବଟୁ ଲକ୍ଷ୍ମଣ ଅଯୁକ୍ତ ସମ୍ବାଦେ । ୧୦୮୫ ।
ତେବେ ରାମ ଠାବରେ କହନ୍ତେ ନିବାରଣ ।
ମୌନକୁ ବଜ ଉଭୟ ସୁମିତ୍ରାନନ୍ଦନ । ୧୦୮୬ ।
ଲକ୍ଷ୍ମଣ-ବିଭ୍ରଣ୍ଡି-ଘଟ୍ଟ ଭେଟ ଭାର୍ଗବ ।
କୋପ-ପାବକ-ଶାନ୍ତିକ ମନାଡି ରାଘବ । ୧୦୮୭ ।
ସ୍ତୁତିପୂ ମୃଦୁବଚନ-ଶୀତଳ ସଲିଳ ।
ସେଚନ କଲେ ଏହୁଅର ହୋଇ ଶାନ୍ତିଳ । ୧୦୮୮ ।

ହେ ଦେବ ! ଏହାରେ ଏବେ ତୁମ୍ଭ କୃପା ରଖ ।
ଏ ଡିମ୍ଭକ ଅଟଇ କେବଳ କ୍ଷୀରମୁଖ । ୨୦୮୯ ।
ତୁମ୍ଭ ମହାପ୍ରଭାବକୁ ଏହୁ ଜାଣିନଲେ ।
ମୁଖାମୁଖିରେ ଭାଷନ୍ତା ନାହିଁ ତୁମ୍ଭ ତୁଲେ । ୨୦୯୦ ।
ମାତୃ ପିତୃ ଗୁରୁ ଏ ଡିମ୍ଭର ଅନୁଚିତ—
କୃତ୍ୟକୁ ମନେ ଭରନ୍ତି ହୋଇ ଅନାଦୃତ । ୨୦୯୧ ।
ତୁମ୍ଭ ସମ ଶୀଳଶାଳୀ ମୁନି ଜ୍ଞାନୀ ଧୀରେ ।
ଶିଶୁ ସେବକ ଦୋଷ ଧରନ୍ତି ନାହିଁ ଧୀରେ । ୨୦୯୨ ।
ଏମନ୍ତ ରାମଚନ୍ଦ୍ର ବାଣୀ ଶ୍ରବଣ କରି ।
ଅଲ୍ପଶାନ୍ତ୍ରିକ ଦ୍ୱିଜ ବୋଇଲେ ସେ ଏପରି । ୨୦୯୩ ।
ହେ ରାମ ! ମହାପାତକୀ ଅଟେ ଭ୍ରାତ ତୋର ।
ତା ଦେହ ରୋଗ୍ର ହେଲେହେଁ ମନ ଭଲା ତାର । ୨୦୯୪ ।
ସେ ପଦ୍ମୋମୁଖ ନୁହେ ମାତ୍ର ରୂପ-ବଦନ ।
ସେ ତୋ ଅନୁଜ ନୁହେଁ, ତା ସ୍ୱଭାବ କଠିନ । ୨୦୯୫ ।
ଜନେ ମରଣକୁ ଦେଖୁ କରିବା ସ୍ୱତରେ ।
ସେ ନୀଚ ବାଳକ ସେତେ ଅତି ତୁଚ୍ଛ କରେ । ୨୦୯୬ ।
ତା ଶୁଣି ସୁମିତ୍ରାସୁତ ବେଭଳ ହେ ଧୀର ।
କ୍ରୋଧ ଉଠଇ କଣ୍ଠପ୍ରେ ପାତକର ତେର । ୨୦୯୭ ।
ତାହା ବକ୍ଷର ବାତ୍ର ଅପୂର୍ବ କାର୍ଯ୍ୟ କରେ ।
ପୁଣି ଜଗତର ପ୍ରତିକୂଳରେ ସଞ୍ଚରେ । ୨୦୯୮ ।
ଏଣୁ ତୁମ୍ଭେ କୋପ ତେଜ, ମୋରେ କୃପା କର ।
ଯତେ ମୁନି ! ମୁଁ ଅଟଇ ତ ତୁମ୍ଭ ଅନୁଚର । ୨୦୯୯ ।
ହସ୍ତ ହୋଇଥିବାରୁ ତୁମ୍ଭ ବେନି ଚରଣ—
ବସ୍ତ୍ର ବାନ୍ଧ, ତେଣୁ କର ପୀଠ ଛଦନ । ୨୧୦୦ ।
କରୁ ନୃପଙ୍କ ସୁତ କ୍ରୋଧରେ ସମ୍ଭୃତ—
ହେବ ନାହିଁ କହୁଁରେ ତୁମ୍ଭେ ହେବେ ଯଥୃ । ୨୧୦୧ ।
କଳି ଭାବରକୁ ଅଣଇ ବର୍ଣ୍ଣ କର ।
ସପୋଜନ ଶମିତ୍ରି ଜଡିତ ଯନ୍ତ୍ର କର । ୨୧୦୨ ।

ଯେଉଁ ପରଶୁର ଘୋର କର୍ମ ଶ୍ରୁତ ହେଲେ ।
ରାଜବନିତାଙ୍କ ଗର୍ଭପାତ ହୁଏ ହେଲେ । ୨୧୧୭ ।
ସେ ପରଶୁକୁ ଧରି ଏବେ ସମ୍ମୁଖେ ମୁହିଁ ।
ନୃପ-ବାଳକ ଶବ୍ଦକୁ ଜୀବନ୍ତ ଦେଖଇଁ । ୨୧୧୮ ।
କେ ସେ ହ୍ରଦ ଜଳେ ମାତ୍ର ସ୍ନାନ କର ମୋର ।
କୁଣ୍ଠିତ ହେଲା ଯହିଁ ନୃପାନ୍ତକ କୁଠାର । ୨୧୧୯ ।
କିବା ଦୈବ ଦୁର୍ବିପାକୁ ମୁହିଁ ବଦଳିଲି ।
ଦୁଃସହ ଦୁଃଖ ସହୁ କୃପାଶ୍ରିତ ହୋଇଲି । ୨୧୨୦ ।
ଏତେ ଶୁଣି ଉଚ୍ଚେ ହସେ ସୁମିତ୍ରାନନ୍ଦନ ।
ହେ ଭଲ ଅଟେ ଭୃଗୁମୁନିକୁଳପାବନ ! ୨୧୨୧ ।
ତୁମ୍ଭ ହୃଦ୍‌ଗହ୍ୱରଗତ ଅତି କାରୁଣ୍ୟ-ବାତ ।
ସାନ୍ଦ୍ର ଦେଉଅଛି ତ ବଚନସୁମବ୍ରାତ । ୨୧୨୨ ।
ଯେଉଁ ବାତ୍ୟାର ଗାଢ କରୁଣାରେ ତଳଇ ।
କ୍ରୋଧେ ଜଳିବା ବେଳେ ତାକୁ ବାନ୍ଧି ରଖାଇ । ୨୧୨୩ ।
ତାହା ଶୁଣି ଭାର୍ଗବ ବୋଇଲେ ହେ ଜନକ !
ଦେଖ ମୋ ତୁଲେ ଝଗଡ଼ା କରେ ଏ ବାଳକ । ୨୧୨୪ ।
ଏ ପଟୁଆ ଯମପୁରେ ବାସ କରିବାକୁ ।
ତରେ ମୋ ନେତ୍ରପଥୁଁ ଦୂର କର ଏହାକୁ । ୨୧୨୫ ।
ତା ଶୁଣି ଲକ୍ଷ୍ମଣ ହସି ବୋଇଲେ ତୁମ୍ଭର ।
ନେତ୍ର ଥିଲି ବୁଜ ଦୃଷ୍ଟି ନୋହିବ ଗୋଚର । ୨୧୨୬ ।
ଆଉ ନୃପେ ନ କହ ଲକ୍ଷ୍ମଣ ବଚନକୁ ।
ଭାର୍ଗବ ବେଗଇଲ କ୍ରୋଧେ ଚଳେଇ ଶସ୍ତ୍ରକୁ । ୨୧୨୭ ।
ଯରେ ଶଠ ! ତୁ ସ୍ୱାମୀ ଶଙ୍କ-ଶୂନ୍ୟମନ ;
କହୁଅଛୁ ସଧୀରେ ତୋହରେ ପାପ-ବଚନ । ୨୧୨୮ ।
ତୋ ସମ୍ମୁଖରେ ହର କରି କରୁଅଛି ଜେର ।
ତୁଚ୍ଛ କରଃ ବନସ୍ପ କାନ୍ତୁ ଯୋଡ଼ କର । ୨୧୨୯ ।
ସେବେ ତୁ ତୋଷ ଏବେ ମୋ ତୁଳେ ସୁଜନ ।
ଚୌଦ୍ଦଭୁବନେ ତୋହ କୃପାଳୁ ପଦହବ । ୨୧୩୦ ।

ଅରେ ଶିବଦ୍ରୋହୀ ! ଛଳ ଛନ୍ଦ ସ୍ୱଭାବ ।
ନୋହିଲେ ଛେଦିବ ତୁମ୍ଭ ବେଣ୍ଟରୁ ଶିର । ୨୧୩୧ ।
ଏତେ କହି କୋପେ ସେ ପରଶୁ ଉଠାଇଲା ।
ମନେ ଡରି ମଣ୍ଡା ପୋତ ଗ୍ରହବ ବୋଇଲା । ୨୧୩୨ ।
ଲକ୍ଷ୍ମଣ କସ ଦୋଷେଁ ତୁମ୍ଭେ କୁପିତ ମୋରେ ।
ସରଳତାରେ ଦୋଷ ଘଟେ କୌଣସିଠାରେ । ୨୧୩୩ ।
ଭୃତ୍ୟ ବାଂଛାଠାରେ ହୁଏ ସବୁଦ ଏକା ।
ଗୁରୁ ସ୍ୱଭାବେ ନାହିଁ ତତ୍ତ୍ୱ ହୋଇଥିଲେ ବଙ୍କା । ୨୧୩୪ ।
କୋପ ତେଜ, ତୁମ୍ଭ ହସ୍ତେ ଅଛି ତ କୁଠାର ।
ତୁମ୍ଭ ସମ୍ମୁଖରେ ହେଉ ଉତ୍ତମାଙ୍ଗ ମୋର । ୨୧୩୫ ।
ଏଣୁ ତୁମ୍ଭ ଅଭିଳାଷ ପୂରଣାରେ କର ।
ହେ ମୁନୀଶ ! ମୁହିଁ ଅଟେ ତୁମ୍ଭର କିଙ୍କର । ୨୧୩୬ ।
ପକ୍ଷୀ-ସେବକଙ୍କର ସମର ଅନୁଚିତ ।
ତୁମ୍ଭ ବାଳବେଶ ଦେଖି ମୋ ଭୁଜ କମ୍ପିତ । ୨୧୩୭ ।
ଦେଖି ତୁମ୍ଭଠାରେ ବାଣ ପରଶୁ କାର୍ମୁକ ।
କହିଲି ବଢ଼ାଇଚି ବଚନ ସେ ବାଳକ । ୨୧୩୮ ।
ତୁମ୍ଭ ଏବେ ନାମରୁ ଶୁଣିଛି ମାତ୍ର ସେହୁ ।
ହେ ବ୍ରାହ୍ମଣପ୍ରବର ! ତୁମ୍ଭଙ୍କୁ ତର୍କି ନାହିଁ । ୨୧୩୯ ।
ସେ ଦେଖିଥିଲେ ତୁମ୍ଭଙ୍କୁ ତପସ୍ୱୀ ବେଶରେ ।
ତୁମ୍ଭ ପଦଧୂଳି ବୋଳିଆନ୍ତା ଶାନ୍ତ ଶିରେ । ୨୧୪୦ ।
ଏଣୁ ମୋ ଅଜ୍ଞାନକୃତ ଦୋଷ କ୍ଷମା କର ।
ବ୍ରାହ୍ମଣ ହୃଦୟ ତ କୃପାରେ ଭରପୂର । ୨୧୪୧ ।
ତୁମ୍ଭ ସଙ୍ଗେ ମୁହିଁ ସମ ହୋଇବି କେମନ ।
ମସ୍ତକ ତୁଳେ ସମାନ ହୁଏ କି ଚରଣ ? ୨୧୪୨ ।
ରାମ ବୋଲି ଅଳ୍ପ କ୍ଷୁଦ୍ର ନାମ ମୋହର ।
ପରଶୁ ମିଶି ବଡ଼ ନାମ ଅଟଇ ତୁମ୍ଭର । ୨୧୪୩ ।
ମୁହିଁ ତ ଏକଗୁଣ-ଧନୁଷ-ସମ୍ପନ୍ନ ।
ତୁମ୍ଭେ ନବଗୁଣ-ଯଜ୍ଞସୂତ୍ରେ ସଂଯୁକ୍ତ । ୨୧୪୪ ।

ତୁମ୍ଭଠାରୁ ମୁହିଁ ନ୍ୟୂନ ସବୁ ପରକାରେ ।
ହେ ବିପ୍ର ! ମୋ ଦୋଷକୁ କ୍ଷମା କର କୃପାରେ । ୨୧୪୫ ।
ବାରମ୍ବାର ମୁନି ବିପ୍ର ବୋଲି ସମ୍ବୋଧନ ।
ଭୃଗୁ ମୁଖ୍ୟ ଶୁଣି ସେ ହୋଇ ଅତି କୋପନ । ୨୧୪୬ ।
ବୋଇଲା ତୁ ମଧ୍ୟ ଦୁଷ୍ଟ ଚୋର ଖଳ ପର ।
ତୁମ୍ଭେ ମଣୁଛ ମୋତେ ସାମାନ୍ୟ ବିପ୍ର କର । ୨୧୪୭ ।
ମୁଁ ବିପ୍ର ଅଟେ ସତେ ମାତ୍ର ମୋ ତତ୍ତ୍ୱ ଶୁଣ ।
ସ୍ରୁକ ମୋର କମାସୃଣ, ସ୍ରୁବ ମୋ ମାର୍ଗଣ । ୨୧୪୮ ।
ଅଗ୍ନି ମୋ କ୍ରୋଧ-ସମିଧ ଚତୁରଙ୍ଗ ବଳ ।
ପଶୁଗଣ ଅଟଇ ଧନ୍ୱିରମଣ କୁଳ । ୨୧୪୯ ।
ଯଜ୍ଞ ବେଦି ରଣାଙ୍ଗନ, ଏ ପରଶୁବର ।
ନୃପ ପଶୁ-ପ୍ରାଣ-ଚାପୁ-କାଳ-କାକୋଦର । ୨୧୫୦ ।
ଜଗତେ ଏମନ୍ତ ହୋଇ ଯଜ୍ଞଯାଜୀ ମୁହିଁ ।
ବେଦଜଡ଼ ବୋଲି ମୋତେ ତୁଚ୍ଛ କରୁ ତୁହି । ୨୧୫୧ ।
କାର୍ତ୍ତ୍ୟ କଳ୍ପ ହଣି ତୁହି ଦୂରନ୍ତମାନରେ ।
ବିଶ୍ୱଜୟୀ କଲି ହାସ୍ୟେ ଭାବୁଛୁ ମନରେ । ୨୧୫୨ ।
ତେବେ ରାମ ବୋଇଲେ ତୁମ୍ଭେ ବଚନ ଶେଷ ।
ଗୁରୁତର ତୁମ୍ଭ କୋପ ଅଳପ ମୋ ଦୋଷ । ୨୧୫୩ ।
ଟାଣିଲେ ଘନେ ଜଟିଳ ପ୍ରତ୍ୟଞ୍ଚା କାର୍ମୁକ ।
ଯେଥିକି ଗର୍ବୀ ହେବ କିପାଁ ମୁନିନାୟକ । ୨୧୫୪ ।
ତୁମ୍ଭଙ୍କୁ ବିପ୍ର ଜାଣି କାଷ୍ଠପଟ ବସ୍ତ୍ରରେ ।
ପ୍ରଣାମ କରଇ ମୁହିଁ ତୁମ୍ଭ ଚରଣରେ । ୨୧୫୫ ।
ମୁହିଁ ବିପ୍ରେ ନତ କରିବା କିଳ ସର ।
ଜଗତେ କେହୁ ନାହିଁ ସତ୍ୟ ଏ ବାକ୍ୟ ମୋର । ୨୧୫୬ ।
ମୋ ସମବଳ କିବା ଅଧିକ ବଳାସ୍ତ୍ରିଳ ।
ଦେବ ଦାନବ କୁଧର ଶୂର କିବା କାଳ । ୨୧୫୭ ।
ଯେ ବାଞ୍ଛିବ ମୋ ସଙ୍ଗେ କରିବାକୁ ସମର ।
ତାହା ସଙ୍ଗେ ସୁଖେ ଯୁଦ୍ଧ କରିବି ସତ୍ୱର । ୨୧୫୮ ।

ଏଣୁ ମୋ କୃତ ସମସ୍ତ ଦୋଷ କ୍ଷମା କର ।
ସର୍ବଦା ମୋରଠାରେ ସମ୍ପୂର୍ଣ୍ଣ କୃପା ଭର । ୨୧୭୩ ।

ଭାର୍ଗବ କହି ଏମନ୍ତ ନମ୍ର ବଚନକୁ ।
ତପ ନିମନ୍ତେ ଗଲେ ନିର୍ଜନ କାନନକୁ । ୨୧୭୪ ।

ଦୁଷ୍ଟ ନୃପଗଣ ଜେ ଭୟରେ ଏକୋଇଲେ ।
ସ୍ୱ ୨ ଭୂପତ୍ୱ ଏଣେ ତେଣେ ପଳାଇଲେ । ୨୧୭୫ ।

ଦେବେ ଦୁନ୍ଦୁଭି ବଜାଇ ପୁଷ୍ପ ବୃଷ୍ଟି କଲେ ।
ପୁର-ନାରୀଜନରେ ଅତି ମୋଦକୁ ଲଭିଲେ । ୨୧୭୬ ।

ଚଉଠେ ମଙ୍ଗଳ ବାଦ୍ୟ ମଞ୍ଜୁଳେ ବାଜିଲା ।
ସୁନ୍ଦରୀ କଳକଣ୍ଠୀଙ୍କ ଗାନ ପ୍ରସରିଲା । ୨୧୭୭ ।

କହୁ ନୁହେ ଜନକ ସନ୍ତୋଷ ପରିମାଣ ।
ଜନନ ଦରିଦ୍ର କିବା ଲଭିଲା ନିଧାନ । ୨୧୭୮ ।

ଭୟ ତେଜି ଜାନକୀ ଶଶାଙ୍କୋଦୟ ବେଳା ।
ଚକୋରୀ ପରି ଅତି ମୋଦବତୀ ହେଲା । ୨୧୭୯ ।

ତେବେ ଜନକ ନମି କୌଶିକଙ୍କୁ କହିଲା ।
ତୁମ୍ଭ ପ୍ରସାଦୁଁ ରାମ ଧନୁକୁ ବୋଇଲା । ୨୧୮୦ ।

ମୁହିଁ କୃତକୃତ୍ୟ ହେଲି ଏ କାର୍ଯ୍ୟ ସୁଗଲେ ।
ଅଦ୍ୟ କରଣୀୟ କାର୍ଯ୍ୟ ଆଜ୍ଞା ଦିଅ ଭଲେ । ୨୧୮୧ ।

ତା ଶୁଣି ମୁନି ବୋଇଲେ ହେ ନରେଶ ! ଜାଣ ।
କନ୍ୟାପରିଣୟ ହୋଇଅଛି ପଣାଧୀନ । ୨୧୮୨

ନୃପଙ୍କୁ ତୁଅନ୍ତେ ପରିଣୟ ବରିସ ।
ତାହା ତ ପୁର ସମ୍ଭବୁ ଉଚିତ ହୋଇଲା । ୨୧୮୩

ତଥାପି ସ୍ୱକୀୟ କୁଳ ଧର୍ମକୁ ରକ୍ଷିବ ।
ବେଦୋକ୍ତ ସ୍ୱଭାବେ କର କୁଳକୁ ପଚ୍ଛିବ । ୨୧୮୪

ଉପଯୁକ୍ତ ବାର୍ତ୍ତାବହ ପଠାଅ ଅଯୋଧ୍ୟାକୁ ।
ତୁମ୍ଭର ସମ୍ବାଦ ଜଣାଇବାକୁ ଏଠାରୁ । ୨୧୮୫ ।

## ବିବାହ

ତା ଶୁଣି ନୃପ ତୋଷେ ତତ୍‌କ୍ଷଣେ ସାକେତକୁ ।
ପେଷି ଦୂତଙ୍କୁ ଦେଇ ନିମନ୍ତ୍ରଣ ପତ୍ରକୁ । ୨୧୮୬ ।
ସେବକଙ୍କ୍ ଆଜ୍ଞା ଦେଲେ ମନ୍ତ୍ରୀଙ୍କ ପ୍ରବର୍‌ ।
ନିର୍ମିବା ନିମନ୍ତେ ବିବାହ ମଣ୍ଡପକୁ । ୨୧୮୭ ।
ଧନ୍ୱବସୁଦେଶରେ ବ'.ମ ଶିଳ୍ପିଗଣ ।
ଅତି କୌଶଳରେ କଲେ ମଣ୍ଡପ ରଚନ । ୨୧୮୮ ।
ତା ସ୍ତମ୍ଭମାନ ହେମ-ରମ୍ଭାତରୁ ନିର୍ମିତ ।
ଯା କୁସୁମ ପତ୍ରବ୍ରଜ, ପତ୍ର ମରକତ । ୨୧୮୯ ।
ସୁବର୍ଣ୍ଣୀ ବାର୍ଣ୍ଣମାନ ସ୍ଫଟିକେ ସବଳେ ।
ମରକତ-ରଚିତ ତଦାକାରେ ମଞ୍ଜୁଳେ । ୨୧୯୦ ।
ସ୍ଫଟିକ ସ୍ତରର ନାଗବଲ୍ଲୀଦଳପ୍ରେ ।
ଯୌବର୍ଣ୍ଣ ହୋଇ ଦରବ ଦୃଷ୍ଟିର ଅଥପ୍ର । ୨୧୯୧ ।
ମୁକ୍ତା-ଦାମ-ବନ୍ଧ ବଜ୍ର-ଫଣିବ ତୋରଣ ।
ତହିଁ ହୀରା-ମାଣିକ୍ୟ-ନୀଳାମ୍ବୁଜ ଯୋଜନ । ୨୧୯୨ ।
ପୁଣି ତହିଁ ନିର୍ମିତ ରଚିଥ ଶରଭ୍ରମେ ।
ବାନ୍ଧୁ ଚଳନ୍ତେ ପକ୍ଷ ଗୃହ ବହନ୍ତି ବନେ । ୨୧୯୩ ।
ସ୍ତମ୍ଭମାନେ ହେମ ଦେବତା ପ୍ରତିମାଳ ।
କର ଦ୍ୱିବିତ ନାନା ମଙ୍ଗଳ ଦ୍ରବ୍ୟ ପାଳ । ୨୧୯୪ ।
କୁଙ୍କୁମ ଅମ୍ବା ରଜଣୌଦ୍ରଜ ଘଟେ ।
ହେମ କରେ ଦର୍ପଣ-ନେଇଛନ୍ତି ଅନନ୍ତ । ୨୧୯୫ ।
ମରକତ ପତ୍ର ଫଳ ହେମସୂତ୍ରଯୁତ ।
ରସାଳ ମୁକ୍ତାଗୁଚ୍ଛ ପଞ୍ଚସୂତ୍ର ଲମ୍ବିତ । ୨୧୯୬ ।
ଦ୍ୱାରପ୍ରଲମ୍ବିତ ବଜ୍ର-ପଟପୁଷ୍ପମାଳ ।
ଦର୍ପଣ-ଛତ୍ର-ଚାମର ମାନଙ୍କେ ଶୋଭାଳ । ୨୧୯୭
ଚଉଦ ବିତାନ ମୁକ୍ତ ଝାଲର ଗୁମର ।
ଧ୍ୱଜତେଜ ମଣି ଦୀପଗଣ ମନୋହର । ୨୧୯୮ ।

ଯେଉଁ ମଣ୍ଡପେ ବୈଦେହୀ-ବିବାହ ହୋଇବ ।
ତାହାର ବୈଭବ କେଉଁ ବଖାଣି ପାରିବ ? ୧୧୯୯ ।
ବରଯାତଙ୍କ ନିମନ୍ତେ କଳ୍ପ ବାସାଘର ।
ଅତି ବିଚିତ୍ର ଲୋକନୟନ ଅଗୋଚର । ୧୨୦୦ ।
ଅନନ୍ତର ନୃପତି ପ୍ରାସାଦ-ମଣ୍ଡନଙ୍କୁ ।
ପୁରବାସୀଏ ମଣ୍ଡିଲେ ସ୍ୱ ସ୍ୱ ଭବନକୁ । ୧୨୦୧ ।
ସେ କାଳେ ଜନକପୁର-ଦର୍ଶକର ମନ ।
ଅସାର ବୋଲି ଭାବିଲା ଚଉଦ ଭୁବନ । ୧୨୦୨ ।
ସୁଦ୍ର ସ୍ୱର୍ଗ-ବିଭବ ଜନଚିତ୍ତମୋହନ ।
ବଡ଼ ଘର କଥା ଆଉ କହିବ କଅଣ । ୧୨୦୩ ।
ଯେ ପୁରେ ଲକ୍ଷ୍ମୀ ସ୍ଥିତା ବନିତାସ୍ୱରୂପରେ ।
ତାହା ବର୍ଣ୍ଣିତ ନୋହିବ ବାଣୀରେ ଶେଷରେ । ୧୨୦୪ ।
ତେଣେ ଜନକ-ଦୂତେ ପ୍ରବେଶି ସାକେତରେ ।
ଭୂମିନାଥଙ୍କୁ ଭେଟି ପ୍ରଣମି ତନ୍ତ୍ରରେ । ୧୨୦୫ ।
ପତ୍ର ଦିଅନ୍ତେ ତାଙ୍କୁ ପଢ଼ୁ ପଢ଼ୁ ନୃପର ।
ନେତ୍ର ଆର୍ଦ୍ର ହୋଇଲା ଗାତ୍ର ପୁଲକିତର । ୧୨୦୬ ।
ରାମ ଲକ୍ଷ୍ମଣଙ୍କୁ ହୃଦେ ଚିନ୍ତାଇଲୁ କରେ ।
ଧରି ନୃପତି ବହୁସ୍ୱସନ୍ତୋଷବଶରେ । ୧୨୦୭ ।
କେତେକ କ୍ଷଣ ସ୍ତମ୍ଭୀଭୂତ ହୋଇ ରହିଲ ।
କେଉଁଣସି ବଚନକୁ କହି ନ ପାରିଲ । ୧୨୦୮ ।
ପରେ ଧୈର୍ଯ୍ୟ ଧରି ପତ୍ର ସ୍ପଷ୍ଟରେ ପଢ଼ିଲ ।
ତା ଶୁଣି ସଭ୍ୟଗଣ ଆନନ୍ଦିତ ହୋଇଲ । ୧୨୦୯ ।
ସେ ହର୍ଷ କୋଳାହଳ ଶୁଣି ଚେଷ୍ଟ ଖେଳକୁ ।
ଭରତ ଶତ୍ରୁଘ୍ନ ଦୁହେଁ ଆସି ଆସ୍ଥାନକୁ । ୧୨୧୦ ।
ପିତାଙ୍କୁ ପୁଚ୍ଛିଲେ ଅମ୍ଭ ପ୍ରିୟ ଭ୍ରାତାଙ୍କର ।
କ୍ଷେମ ସମାଚାର ଏବେ କେଉଁ କି ଘୋଟିବ ? ୧୨୧୧ ।
ସେ ବେନି ଅବସ୍ଥାନ କରନ୍ତି କୋ ସ୍ଥାନରେ ।
ଏଠାରେ ପ୍ରବେଶିବେ ଆଉ କେତେ ଦିନରେ ? ୧୨୧୨ ।

ଏମନ୍ତ ତାଙ୍କ ବାଣୀ ସାକେତ-ପତି ଶୁଣି ।
ଲକ୍ଷ୍ମଣପଶଙ୍କୁ ପଚିସ ସୁଗ୍ରୀବ ପୁଣି । ୨୨୧୩ ।
ତା ଶୁଣନ୍ତେ ତାଙ୍କ ହର୍ଷ ନ ଲଭି ହୃଦରେ ।
ବାହାରକୁ ଝକୁଳସ ରୋମାଞ୍ଚ ରୂପରେ । ୨୨୧୪ ।
ତାଙ୍କ ଭ୍ରାତୃସୌହାର୍ଦ୍ଦକୁ ଜାଣି ସସ୍ୱରେ ।
ବିରତ ଶତ୍ରୁଘ୍ନଙ୍କୁ ପ୍ରଶଂସା କଲେ ମୋଦେ । ୨୨୧୫ ।
ତେବେ ଦୂତଙ୍କୁ ନୃପତି ବଧାଇ ସପ୍ରେମେ ।
ପୃଛିଲ ମୋ ବେନି ସୁତେ ଅଛନ୍ତି କି ଯେମେ ? ୨୨୧୬ ।
ତାଙ୍କୁ କଲେ ଜାଣ କି ? ଶୁଣ ତାଙ୍କ ଦେହେସ୍ତ—
ଜ୍ୟେଷ୍ଠ ଶ୍ୟାମଳକାନ୍ତି, କନିଷ୍ଠ-ଦେହ ଗୋରୁ । ୨୨୧୭ ।
ସେ ଦୁହେଁ କିଶୋର ଶର-ଶରାସନଧର ।
ଅଛନ୍ତି ବଶୀମିଷ ମୁନିଙ୍କ ସହିତର । ୨୨୧୮ ।
ବଦେହେ ସେମାନେ ଜାତ ହୋଇଲେ କେମନ୍ତ ?
ତା ଶୁଣି ମୁଖୀ ଦୂତ ଜଣାଇଲ ଏମନ୍ତ । ୨୨୧୯ ।
ହେ ନୃପତି ଚୂଡ଼ାମଣି ! ତୁମ୍ଭେ ଅତି ଧନ୍ୟ !
ଯେ ହେତୁ ଅଛ ଏମ ଜ୍ୟେଷ୍ଠଙ୍କ ଜନ୍ୟ । ୨୨୨୦ ।
ସେ ଦୁହେଁ ବନ୍ଧୁମଣି ବଳଧୈର୍ଯ୍ୟାକର ।
ପୁରୁଷ ପଞ୍ଚାନନ ତିପୁର ମନୋହର । ୨୨୨୧ ।
ତାଙ୍କ ସଙ୍ଗେ ପ୍ରତାପ ସମ୍ମୁଖେ ନଗାକର ।
ମଳିନ ଅଟେ, ଦିବାକର ହୁଏ କାତର । ୨୨୨୨ ।
ପଠନ ଲୋଚନ ତାଙ୍କୁ ଚାହିଁବାକୁ ।
ପାପ ଲେଡ଼ା ହୁଏ କି ରବିଙ୍କ ଦେଖିବାକୁ ? ୨୨୨୩ ।
ଅନ୍ୟ ରାଜକୁମର-ଷ୍ଟୟମ୍ବର-ସନ୍ଦେଶ ।
ତୁମ୍ଭେ ଅବଗତ ହୋଇଥିବ ତ ନୃପେଶ । ୨୨୨୪ ।
ଚହୁଁ ପାଇଁ ଶିବ-ଧନୁ ଝାଣିବା ଆଶାରେ ।
ବହୁ ନୃପ ଦୂଳ ହେଲେ ଆମ୍ଭ ନଗରରେ । ୨୨୨୫ ।
ଝାଙ୍କିବା ତେଣେ ଥାଉ ତହିଁ କୋଦଣ୍ଡକୁ ।
ଟୋଳିସ ବଳୀ ଜଣେ ନ ପାରିଲ ନେଇକୁ । ୨୨୨୬ ।

ଲୋକତ୍ରୟ-ବୀରଙ୍କ ବଳ ଧୈର୍ଯ୍ୟ ସାହସ ।
ଶଙ୍କର-ଚାପ ସମ୍ମୁଖେ ହୋଇଲା ପାଉଁଶ । ୧୧୨୭ ।
ମନ୍ଦରଧରଙ୍କୁ ଟେକିଥିଲା ସୁରାସୁରେ ।
ହାରିଲେ ମହାଧନୁ ଟେକି ନ ପାରି କରେ । ୧୧୨୮ ।
ଯେ କୌତୁକେ କୈଳାସ ନଗକୁ ଟେକିଥିଲା ।
ସେହୁ ମଧ୍ୟ ପରାଭୂତ ହୋଇ ପଳାଇଲା । ୧୧୨୯ ।

ଯେବେ ମୃଣାଳକୁ ଗଜ ଭାଙ୍ଗିବା ସ୍ୱତରେ ।
ସେ ଧନୁକୁ ଭାଙ୍ଗିଲେ ରାମ ଅନାୟାସରେ । ୧୧୩୦ ।
ପରଶୁରାମ ଶୁଣି ଧନୁର୍ଭଙ୍ଗ-ନାଦକୁ ।
ଅସି ପରୀକ୍ଷା କରି ରାମ ପରାକ୍ରମକୁ । ୧୧୩୧ ।
ନିଜ ଧନୁ ରାମଙ୍କୁ ଦେଇ ଗୃହୁଁ ଗିରକୁ ।
କରୁ ତପସ୍ୟା ଆନନ୍ଦେ ଗଲେ କାନ୍ତାରକୁ । ୧୧୩୨ ।
ବଳ-ପାରାବାର ଧୀର ଶ୍ରୀରାମ ଯେମନ୍ତ ।
ପ୍ରତାପାକୂପାର ଶୂର ଲକ୍ଷ୍ମଣ ତେମନ୍ତ । ୧୧୩୩ ।
ସୁରସିଂହଙ୍କୁ ଦେଖିବା ଗଜଯୂଥ ପରି ।
ତାଙ୍କୁ ଦେଖି ରାଜବୃନ୍ଦ ସଙ୍କୁଚିତ ତରି । ୧୧୩୪ ।
ତୁମ୍ଭ ତନୟଦ୍ୱୟଙ୍କୁ ଦେଖିବା ମାନବ ।
ଅନ୍ୟ ଦର୍ଶନେ ମନ ଆଉ ନ ବଳାଇବ । ୧୧୩୫ ।
ଏମନ୍ତ ବରବସ୍ତୁତ ପ୍ରିୟ ବଚନ ।
ଦୂତ ମୁଖେଁ ଶୁଣି ତୁଷ୍ଟ ନୃପ ସଭ୍ୟଜନ । ୧୧୩୬ ।

ପୁରଦ୍ୱାର ଦାଣ୍ଡେ-ନୃପ ହୁଅନ୍ତେ ଉଦ୍ୟୁକ୍ତ ।
ଦୂତେ କର୍ଣ୍ଣେ କର କରି ବୋଇଲେ ଅଯୁକ୍ତ । ୧୧୩୭ ।
ତାହାଙ୍କ ଧର୍ମବୃଦ୍ଧି ବାକ୍ୟ ବୁଝି ସକଳେ ।
ଦୂତମାନଙ୍କୁ ବହୁବିଧରେ ପ୍ରଶଂସିଲେ । ୧୧୩୮ ।
ତେବେ ନୃପତି ଉଠି ଗୁରୁ କଟକ ଯାଇ ।
ପତ୍ର ଦେଖାଇଲା ତାଙ୍କୁ ବିଷୟ ବୁଝାଇ । ୧୧୩୯ ।
ବୋଇଲେ ବଶିଷ୍ଠ ମୁନି ହୋଇ ଆନନ୍ଦିତ ।
ପୂର୍ଣ୍ଣୋତ୍ସାହକୁ କରନ୍ତୁ ହୁଅ ସୁସଜ୍ଜିତ । ୧୧୪୦ ।

ସୀତା-ରାମ-ବିବାହ-ସମ୍ବାଦ ନଗରରେ ।
ପ୍ରକଟିତ ହୁଅନ୍ତେ ସମସ୍ତ ନାରୀନରେ । ୧୧୫୫ ।
ମହାନନ୍ଦ ପାରାବାରେ ଭାସି-ଲହରିରେ ।
ନିଜ ନିଜ ମନ୍ଦିରକୁ ମଣ୍ଡିଲେ ସତ୍ୱରେ । ୧୧୫୬ ।
ସବୁ ଘର ସାହି ଗଳି ବସନେ ମଣ୍ଡିତ ।
ଯେତେକ ରାସ୍ତାମାନ ହୋଇ ଲୋକାଭିଭୂତ । ୧୧୫୭ ।
ପତାକା ଗୃହଦ୍ୱାରେ ପଣ୍ୟ ସୁଶୋଭିତ ।
ସକଳ ପଥ ସୁବାସ-ସଲିଲ-ସେଚିତ । ୧୧୫୮ ।
ହେମକୁମ୍ଭତୋରଣ ହରିଦ୍ରାଦୂର୍ବାକ୍ଷତ ।
ଦଧିମାଲ୍ୟାଦି ମଙ୍ଗଳ ଦ୍ରବ୍ୟ ବିରାଜିତ । ୧୧୫୯ ।
ଶୋଭାଙ୍କଧାରକ ନାରୀତତି ସ୍ଥାନେ ସ୍ଥାନେ ।
କର୍ଣ୍ଣପେୟ କଣ୍ଠ ପିକସ୍ୱରେ ସ୍ତବଗାନେ । ୧୧୬୦ ।
ସେ ନଗରବର ଅଟେ ସର୍ବଦା ସୁନ୍ଦର ।
ରାମର ବିଭାବେଳେ ହେଲା ସୁନ୍ଦରତର । ୧୧୬୧ ।
ତ୍ରିଭୁବନମଣ୍ଡନ ଅଟେ ଅଦ୍ଭୁତ ।
ଯେ ତ ସମସ୍ତ ମଙ୍ଗଳ ଦ୍ରବ୍ୟ ସମ୍ଭୃତ । ୧୧୬୨ ।
ରତ୍ନଖଚିତ ବିତାନ ବିବିଧ ତୋରଣ ।
ପଞ୍ଚକେତନ ବୃନ୍ଦମାନଙ୍କେ ଶୋଭନ । ୧୧୬୩ ।
ବେଦଧ୍ୱନି ମାଗଧ ସୂତ ମଙ୍ଗଳଗାନ ।
ବହୁବିଧ ବାଦ୍ୟନାଦ ତହିଁ ବାଦ୍ୟମାନ । ୧୧୬୪ ।
ଅନ୍ତଃପୁରନିବାସୀଙ୍କ ଉତ୍ସାହ ବହୁତ ।
ପ୍ରାସାଦର ସାଜଣ ଅଟେ ପରମିତ । ୧୧୬୫ ।
ତେଣୁ ତାହା ତହିଁ କହୁ ନ ପାରୁ ବର୍ଣ୍ଣିବୁ ।
ବହୁଳ ପ୍ରସଙ୍ଗ ପଥ ଗ୍ରନ୍ଥ ଅଟକୁ । ୧୧୬୬ ।
ସେ ନୃପ-ନିକେତନ ଅଟେ ବର୍ଣ୍ଣନାତୀତ ।
ଯହିଁ ନୃପାଳକ-ନୃପ-ବନ୍ଦ୍ୟ ରାମ ତାତ । ୧୧୬୭ ।
ତେବେ ଅଯୋଧ୍ୟାପତି କୋଶଳ ନୃପଙ୍କୁ ।
ଚତୁରଙ୍ଗ ବଳ ସାଜି ବିଦା ଦେବାକୁ । ୧୧୬୮ ।

ତାହା ଶୁଣି ବୀର ସବୁ ହେଲେ ଆନନ୍ଦିତ ।
ବିବିଧ ଦେଶରେ ସୈନ୍ୟ ହେଲେ ସୁସଜ୍ଜିତ । ୨୨୬୯ ।
ବିବିଧବର୍ଣ୍ଣ ଘୋଟକେ ଶୃଙ୍ଗାରୋତ୍ସବରେ ।
ଧରିଛନ୍ତି ଅଳଙ୍କାର ଭୂଷିଥିଲେ ସ୍ୱର୍ଣ୍ଣ-ସୂତ୍ରେ । ୨୨୭୦ ।
ସେମାନେ ଚନ୍ଦ୍ର ସ୍ୱେଦପଙ୍କରେ ଗନ୍ଧ ବନ୍ଧ—
ପବନ ଦର୍ପକର ବଶ୍ୟ ହେଉଥିଲେ । ୨୨୭୧ ।
ଧାବନ ସମୟେ ସେ ତୁରଙ୍ଗମ ପ୍ରକର ।
ପ୍ରଚ୍ଛନ୍ନ କେଶଗୁଚ୍ଛ କରେ ନାହିଁ ଗାତ୍ର । ୨୨୭୨ ।
ଅଶ୍ୱାରୋହ-ରାଜପୁତେ ଯୌବନମଣ୍ଡିତ ।
ରତ୍ନାଳଙ୍କାର-ତୂଣୀ ବାଣ-କାର୍ମୁକ-ଯୁକ୍ତ । ୨୨୭୩ ।
ପ୍ରତ୍ୟେକ କେଶରୀ ସଦୃଶେ ଅଧିକଳା ।
ପୂର୍ଣ୍ଣ ପଦ ତେଜୁର ଗମନ କଲେ । ୨୨୭୪ ।
ଶାମକର୍ଣ୍ଣ-ତୁରଙ୍ଗ-ଯୋଜିତ ରଥଗଣ ।
ଧୃତ କଙ୍କିଣୀ ଗ୍ରୀବର ଧ୍ୱଜାଦି ଭୂଷଣ । ୨୨୭୫ ।
ସଜ୍ଜି ରଥ ସାରଥି ହୋଇ ବହର—
ରଥଚକ୍ର ନାଦ-ମୋହିଲା ମନ ମୁଗ୍ଧକର । ୨୨୭୬ ।
ପୁଣି ଭୂଷଣ ବିବିଧ ସ୍ୱର୍ଣ୍ଣ ସୂତ୍ରବନ୍ଧ ।
ହୋଇ ହେଲ ସ୍ତମ୍ଭନକ-ମାନସ ଶୋଭିତ । ୨୨୭୭ ।
ସେ ସ୍ୟନ୍ଦନସମୂହ ଗଲେ ଯଥା ଚଳେ ।
ଛାଡ଼ିଲେ ଦେ ଭାବ ଶ୍ରୁତି ନ ଭୂତଳ କଲେ । ୨୨୭୮ ।
ପ୍ରତ୍ୟେକ ମାତଙ୍ଗ ହୋଇ ବିବିଧେ ଭୂଷିତ ।
ସୁନା ଅଙ୍ଗରେ ବସ୍ତ୍ରମାଳରେ ସଜିତ । ୨୨୭୯ ।
ସୌଦାମିନୀ-ପ୍ରକାଶ-ଯୁକ୍ତ ନୀଳ ଜଳଦ ।
ପଦ୍ମେ ଯଥା ହୋଇଲେ ନୟନସୁଖଦ । ୨୨୮୦ ।
ପିଷ୍ଟକା ପ୍ରଭୃତି ନାନାବିଧ ଯାନରଣେ ।
ପ୍ରସ୍ଥାନ କଲେ ଚଉଦ୍ଦି ପୂର୍ବେ ଭ୍ରାତୃଗଣେ । ୨୨୮୧ ।
ଭଦ୍ରଦୋଷଣ ବେଦଜ୍ଞ ନର ଜନେକର—
ଧର୍ମଙ୍କ ପରିବାରେ ସେମାନେ ସୁଭୂଷ । ୨୨୮୨ ।

ଗାନକାରୀ ବନ୍ଦୀଜନ ମାଗଧ ପ୍ରଭୃତି ।
　　ଜନେ ଉପଯୁକ୍ତ ଯାନ ଚଢି ଚଳେ ଗତ । ୧୧୮୩ ।
ଭୂଷିତ ପଦାତିକ ହୋଇ ଗଣନାତୀତ ।
　　ଯୋଦ୍ଧାହରେ ଗମିଲେ ଧରି ଆୟୁଧବ୍ରାତ । ୧୧୮୪ ।
ପଲ୍ ପଲ୍ ହୋଇ ଉଠେ ବଳଦେ ଖଟ୍ରେ ।
　　ଧଡ଼ ପଡ଼ ଗୃଲ୍ଲେ ବୋଝ ବନ୍ଧି ପିଠିରେ । ୧୧୮୫ ।
ଭେରୀ ଢକ୍କା ଘଣ୍ଟାନାଦ ନାନା ବାଦ୍ୟଘୋଷ ।
　　ପୂରିତ ହେଲା ଧ୍ୱନି ଗଗନ-ମଧ୍ୟଦେଶ । ୧୧୮୬ ।
ସେ ଘୋଷେ ରଥଘୋଷ ହସ୍ତୀ-ହ୍ରେଷା ସିନ୍ଧୁର ।
　　ବୃଂହିତ ମିଶି କଲା ମାନବଙ୍କୁ ବଧିର । ୧୧୮୭ ।
ପଦରଜ ମେଘାଡ଼ମ୍ବରେ ପ୍ରବଳ ଉର୍ଦ୍ଧ୍ୱରେ ।
　　ଚଣ୍ଡାଂଶୁମଣ୍ଡଳକୁ ଘୋଡ଼ାଇଲା ସାନ୍ଦ୍ରରେ । ୧୧୮୮ ।
ଅଟ୍ଟାଳିକାମାନରେ ପୁରସ୍ତ୍ରୀଏ ଉଠିଲେ ।
　　ଅର୍ଘ୍ୟଥାଳିମାନ ଧରି ଉଭା ହୋଇଥିଲେ । ୧୧୮୯ ।
ତେବେ ନୃପତି ବେଦବିଦ୍ଙ୍କ ଅନୁସର ।
　　କୁଳାଚାର ମତେ ଯାତ୍ରା କାଳ କର୍ମ କରି । ୧୧୯୦ ।
ସୁମନ୍ତ୍ରାନୀତ ରଥଶ୍ରେଷ୍ଠକୁ ବଶିଷ୍ଠଙ୍କୁ ।
　　ଗୋଟିଏ ଦେଇ ହୃଦେ ଚିନ୍ତି ଶମ୍ଭୁରୂପଙ୍କୁ । ୧୧୯୧ ।
ଗୌରୀ-ଗିରିଶ-ଗଣେଶ ଗୁରୁଙ୍କୁ ସ୍ମରିଲା ।
　　ଆପେ ଦ୍ୱିତୀୟ ସ୍ୟନ୍ଦନବରରେ ବସିଲା । ୧୧୯୨ ।
ବଶିଷ୍ଠ ଆଜ୍ଞାରୁ ଦଶରଥ ନୃବର ।
　　ଜୟ ପ୍ରତିଷ୍ଠିତ ଶଙ୍ଖ ପଢ଼ି ସୁସ୍ୱର । ୧୧୯୩ ।
ଗଗନେ ଅପ୍ସରୀବର, ପୁରେ ନାରୀବର ।
　　ମଙ୍ଗଳଗାନ ଶ୍ରୁତିରୁ ହୋଇ ମନୋହର । ୧୧୯୪ ।
ଆକାଶରୁ ଦେବେ ପୁଷ୍ପବର୍ଷଣ କଲେ ।
　　ଅନେକ ପ୍ରକାରେ ଶୁଭ-ଶକୁନ ଦିଶିଲା । ୧୧୯୫ ।
ଦିଶିଲା ନୀଳକଣ୍ଠ ଚାଷ ଥିବ ବାମରେ ।
　　ବାମରେ ପୂର୍ଣ୍ଣ କଳସ ବ୍ରାହ୍ମଣେ ଦକ୍ଷରେ । ୧୧୯୬ ।

ମନ୍ଦ ସୁଗନ୍ଧ ଶୀତଳ ପବନ ବହିଲ ।
ଜଳ-ଘଟ ଧରି ସଧବା ସ୍ତ୍ରୀ ଦିଶିଲ । ୧୨୯୭ ।
ଏକ ଶୃଗାଳ ପୁଣି ପୁଣି ନେତେ ପଡ଼ିଲ ।
ଗାଈ ନିଜ ବତ୍ସାକୁ ଦୁଧ ପିଆଉଥିଲ । ୧୨୯୮ ।
ହରିଣଗଣ ଦକ୍ଷିଣ ଭାଗକୁ ଆସିଲ ।
ଏଥକେ ଉର୍ଦ୍ଧ୍ୱ ଦେଶେ ଉଡ଼ୁ ରୁଚ କଲ । ୧୨୯୯ ।
ବାମଦ୍ୱାରେ ବୃକ୍ଷେ ଶ୍ୟାମା ପକ୍ଷୀ ବସିଥିଲ ।
ଦଧି ମାଛ ପସରା ସମ୍ମୁଖକୁ ଆସିଲ । ୧୩୦୦ ।
ପୁସ୍ତକ ହସ୍ତରେ ଦୁଇ ବ୍ରାହ୍ମଣ ଯୁଗଳ ।
ବୃତ୍ତାନ୍ତ ପଢ଼ି ପରି ଶୁଭଣନ୍ତି ଠୁଳ । ୧୩୦୧ ।
ଯାହା ନନ୍ଦନ ସଗୁଣ ବ୍ରହ୍ମ ହୋଇ ବର ।
ଉଦୀତ ହୃଦଣେ ଯଦୁଯନ୍ତ୍ର-ସୀତାବର । ୧୩୦୨ ।
ତା ଯାତ୍ରା କାଳେ ଶୁଭ ଶକୁନମାନ ଏତେ ।
ସଂଖ୍ୟା ନୁହେ ବେଦମାତ ହେଲେ ବଦନ୍ତେ । ୧୩୦୩ ।
ପରେ ସେମାନେ ଅତି ସନ୍ତୁଷ୍ଟ-ମାନସରେ ।
ପ୍ରସ୍ଥାନ କଲେ ତହୁଁ ବିଦେହାଭିମୁଖରେ । ୧୩୦୪ ।
ସେ ଅଟେ ବାଦ୍ୟମାନ ମୃଦଙ୍ଗ ନାଦଗାନ ।
ବାଜିଲ ପଟହାଦି ଡଗଡ଼ମାଳମାନ । ୧୩୦୫ ।
ହୃଦପୁଟେ ମୃଦଙ୍ଗ ଲଗୁକୁ ଅନୁସର ।
ଭୂଧରଙ୍କୁ ନମ୍ରନ୍ତି ନଈଙ୍କୁ ବାବା ଭେ । ୧୩୦୬ ।
ଏପରି ସମସ୍ତେହେ ଆନନ୍ଦ ଭୋଳାହେଲେ ।
ପଥଶ୍ରମ ନ ଜାଣି ସମସ୍ତେ ଯାଉଥିଲେ । ୧୩୦୭ ।
ତେଣେ ଜନକ ବରଯାତ୍ରଙ୍କ ଆଗମନ ।
ଜାଣି ଭବନ ନଦୀତଟେ ଯେଉଁ ବନେ । ୧୩୦୮ ।
ବାଟ ସତ୍କାର ସ୍ୱଚ୍ଛ ସ୍ଥାନମାନଙ୍କରେ ।
କଳି ବସାଘରମାନ ବନ୍ଧାଇ ଆଦରେ । ୧୩୦୯ ।
ଯୋଗାଇ ଅଶନ ପୁଣି ବସନ ଶୟନ ।
ମୋଦାବ୍ରିରେ ବସାଇଲ ସମସ୍ତ ଜନ । ୧୩୧୦ ।

ମିଥିଳାର ନିକଟକୁ ଅଯତ୍ନେ ସେ ଦଳ ।
ତାଙ୍କୁ ପାଛୋଟିବା ପାଇଁ ଚତୁରଙ୍ଗ ବଳ । ୨୩୧୧ ।
ପୁଣି ଦିବ୍ୟଚେଲ ମଣିଭୂଷା ମୁକ୍ତାହାର ।
ହେମଭାଜନ ଭରିତ ଚତୁର୍ବିଧାହାର । ୨୩୧୨ ।
ରୁଚ୍ୟ ଫଳ ସୁବାସ ଦ୍ରବ୍ୟ ବିବିଧ ଖଗ ।
ନାନା ମଙ୍ଗଳ ପଦାର୍ଥ ବହୁବିଧ ମୃଗ । ୨୩୧୩ ।
ଉପହାର ସ୍ୱରୂପରେ ବିଦେହମହୀଶ ।
ବହନ ପ୍ରେଷଣ କଲ୍ଲେ ଲଭି ଅତି ତୋଷ । ୨୩୧୪ ।
ପରସ୍ପର ବେନି ଦଳେ ମିଶି ଅନନ୍ଦରେ ।
ଏକ ହୋଇ ଅଗମନ କଲେ ଅଡ଼ମ୍ବରେ । ୨୩୧୫ ।
ପ୍ରତେ ହେଲା କି ଉଛୁଳି ଆନନ୍ଦାବ୍ଧି ଦୁଇ ।
ମିଶ୍ରିତ ହୋଇ ଅବେଦେ ଅସୁଅଛି ବହି । ୨୩୧୬ ।
ଏସନେ ବରଜାତ ସଗୌରବେ ଅନୀତ ।
ରମ୍ୟଗୃହ ପ୍ରତିଷ୍ଠ ହୋଇ ଅତ୍ୟନ୍ତ ପ୍ରୀତ । ୨୩୧୭ ।
ସେ ସଦନନିକର ସକଳ ସୁଖାକର ।
ନଗରଜନମନନୟନବଶୀକର । ୨୩୧୮ ।
ଚକ୍ଷୁଁ ପତିତ ହେଲା ଯାହାଙ୍କୁ ଧନଦ ।
ଦେଖିଲେ ନିଶ୍ଚେ ତେଜନ୍ତା ନିଜ ଧନମଦ । ୨୩୧୯ ।
ବରଜାତ ନଗରେ ପ୍ରବେଶିଲେ କାଳରେ ।
ସୀତା ନିଜ ମନ୍ଦିରାକୁ ବସ୍ତ୍ରାବ ସ୍ୱଳ୍ପରେ । ୨୩୨୦ ।
ସୁର ସମ୍ମୁଖକୁ ଅଷ୍ଟ ସିଦ୍ଧିଙ୍କି ଅଣିଲ୍ଲ ।
କୋଶଳ-ବାସୀଙ୍କି କଲ୍ଲେ ଚକିତ ବୋଲଲ୍ଲ । ୨୩୨୧ ।
ସିଦ୍ଧି ଏ ନିଜ ଶିରେ ନିବେଶି ସେ ଆଦେଶ ।
ସ୍ୱର୍ଗୀୟ ସବୈଧନ ସୁଖ ଭୋଗ ବିଳାସ । ୨୩୨୨ ।
ସଙ୍ଗେ ଘେନି ଯାଇ ବସାଘରମାନଙ୍କରେ ।
ପ୍ରବେଶି ଚବଟବେ ଅଦୃଶ୍ୟ ସ୍ୱରୂପରେ । ୨୩୨୩ ।
ସମସ୍ତେ ଐଶ୍ୱେରଙ୍କୁ ଅନ୍ୱିର କଲେ ।
ତତ୍ତ୍ୱ ନ ଜାଣି ସୀତା-ତାତଙ୍କୁ ପ୍ରଶଂସିଲେ । ୨୩୨୪ ।

ରାମ ମାତ ସୀତାର ମହିମାକୁ ଜାଣିଲା ।
ନିଜ ମନସରେ ଅତି ହର୍ଷକୁ ପାଇଲା । ୨୩୨୫ ।
ତାଙ୍କର ଆଗତ ବାର୍ତ୍ତା ଶୁଣି ବେଳାକର ।
ତାହା ଦର୍ଶନ ନିମିତ୍ତ ଅତି ବାଂଛା ହୋଇ । ୨୩୨୬ ।
ଚଳିଲେ ନିଜ ବାଟି ଗୁରୁଙ୍କୁ ଭେଟିବାକୁ ।
ମାତ ବଶିମିନ ଜାଣି ତାହାଙ୍କ ପୂଜିବାକୁ । ୨୩୨୭ ।
ତାଙ୍କୁ ଅବଗନ ପ୍ରେମରେ କର ପରେ ।
ସାଙ୍ଗେ ପୁତ୍ରଧୀଶ ବଶ୍ୟାଙ୍କୁ ନେଇ ଚଲେ । ୨୩୨୮ ।
ତୃଷିତ ବାନ୍ଧ୍ର ସରସ୍ତ୍ରୀବକୁ ପିବା ପ୍ରାପ୍ୟେ ।
ଯେମାନେ ସେଠାକୁ ଗଲେ ପୁଲକିତ କାୟେ । ୨୩୨୯ ।
ରାମ ଲକ୍ଷ୍ମଣ ସହିତ ମୁନୀଶକୁ ଗୃହି ।
ଦଶରଥି ଆନନ୍ଦସାଗରେ ମଗ୍ନ ହୋଇ । ୨୩୩୦ ।
ମନେ ପାଦ୍ମେତ ପାଦ ମୁନିଙ୍କ ପ୍ରଣମିଲା ।
ତାଙ୍କୁ ତପସ୍ୱୀ ପୋଷାଇ ଆଶୀର୍ବାଦ କଲା । ୨୩୩୧ ।
ବେଳାସୂତେ ପ୍ରଣମନ୍ତେ ତାଙ୍କୁ କର ଯୋଡ଼ି ।
ପୂର୍ବ ଦୁଃଖର ଦୁଃଖକୁ ପାଶୋର କୃପାଳ । ୨୩୩୨ ।
ପରମାନନ୍ଦବନ୍ତ ମାନସ ହୋଇଲା ।
ମୃତ ଶରୀରରେ ଯଥା ପ୍ରାଣ ସଞ୍ଚରିଲା । ୨୩୩୩ ।
ବେଳାକର ବଶିଷ୍ଠଙ୍କୁ ଅପର ସତିଙ୍କୁ ।
ନମି ଘେନଲେ ତାଙ୍କ ଆଶୀର୍ବାଦମାନଙ୍କୁ । ୨୩୩୪ ।
ଭରତ ଶତ୍ରୁଘ୍ନ ଯେବେ କରନ୍ତେ ପ୍ରମାଣ ।
ତାଙ୍କୁ ପରିରମ୍ଭଣ କଲେ ପ୍ରେମରେ ରାମ । ୨୩୩୫ ।
ଲକ୍ଷ୍ମଣଙ୍କୁ ଭରତ ଶତ୍ରୁଘ୍ନ ବେଳାକର ।
ଆଲିଙ୍ଗନ କଲେ ଅତ୍ୟନ୍ତ ପ୍ରୀତ ହୋଇ । ୨୩୩୬ ।
ପ୍ରଜାପୁରବାସିମାନେ ବନ୍ଧୁମିତ୍ରବର ।
ଜ୍ୟେଷ୍ଠ ପଞ୍ଚାନନେ କଲେ ରାମ ନୃପବର । ୨୩୩୭ ।
ଯେବେ ରୂପ ପୂରେ ବସି ପିତର ଭୋଜରେ ।
ଏକତ୍ର ହୋଇଲେ ଚତୁର୍ବର୍ଗରଥରେ । ୨୩୩୮ ।

ମୈଥିଳମାନେ ସଗୁଣ-ବ୍ରହ୍ମ ଶ୍ରୀରାମଙ୍କୁ ।
ବରଜାତକି ଦେଖି ପାଇ ଅତି ତୋଷଙ୍କୁ । ୨୩୩୯ ।
ଜନକ ଦେବସ ବୃଦ୍ଧିକରଣ ନମିତ୍ତ ।
ଚନ୍ଦ୍ରାଙ୍କୁ ବନ୍ଦିଲେ ହୋଇ ଚନ୍ଦ୍ର ସୁକ୍ତ ଚିତ୍ତ । ୨୩୪୦ ।
ତାଙ୍କ ପ୍ରତେ କନ୍ୟା ବରେ ଗୁଣରୂପ ତୁଲ୍ୟ ।
ସମ୍ଭବ ଭୂପେନ୍ଦ୍ରସ୍ୟ ସୁକୃତ ସାଫଲ୍ୟ । ୨୩୪୧ ।
ସୀତା ଜନକ ପୂର୍ବ ସୁକୃତର ଫଳ ।
ଶ୍ରୀରାମ ଦଶରଥ ପୂର୍ବ ପୁଣ୍ୟର ଫଳ । ୨୩୪୨ ।
ତେଣୁ ଯେ ନୃପଦ୍ୱୟ ସମେ ଶିବପୂଜକ ।
କରିଥିଲେ ପୁଣ୍ୟବାହୁଲ୍ୟ ନାହିଁ କେହିଁ ଜନ । ୨୩୪୩ ।
ଦେଖିବୁ ସୀତାରାମ-ଙ୍କ ଅଙ୍ଗ ପୂର୍ବର ।
ତେଣୁ ଅମ୍ଭ ସମ ଧନ୍ୟ ମଧ୍ୟ କେହୁ ନାହିଁ । ୨୩୪୪ ।
ପୁଣି ସେମାନେ ଚରିତ ଶତ୍ରୁଘ୍ନଙ୍କୁ ଗୁହିଁ ।
ଭାବନା କଲେ ଅସ୍ପର୍ଶ ସିନ୍ଧୁ ମଗ୍ନ ହୋଇ । ୨୩୪୫ ।
ଅଦ୍ଭୁତରେ ମୁଣ୍ଡମାନେ ଏହୁ ଦୁଇସ୍ୱର ।
ରାମ ଲକ୍ଷ୍ମଣ ସମ ଭେଦ କହି ହୁଁ ନାହିଁ । ୨୩୪୬ ।
ଏ ପ୍ରକାର ସ୍ୱରୂପମାନେ ଅନ୍ୟେ ପରସ୍ପର ।
ଉପମାନୋପମେୟ ଅନ୍ୟ ନାହିଁ ଇତର । ୨୩୪୭ ।
ପରେ ଭୂପେନ୍ଦ୍ରଦ୍ୱୟରେ କଣ୍ଠଗଲ ସ୍ଥିର ।
ମଙ୍ଗଳ ପରଶସ୍ୟ ଶୁଭଲଗ୍ନମାନଙ୍କର । ୨୩୪୮ ।
ଧାତା ପଠାନ୍ତେ ନାରଦ ହୋଇ ମୋହେ ମଗ୍ନ ।
ବିବାହ-ଦିନ୍ଧ ଲଗ୍ନ ଶୋଧିଲେ ହେଲା ଲଗ୍ନ । ୨୩୪୯ ।
ଏଥି କହନ୍ତେ ଶୁଣି ସର୍ବେ ହୃଷ୍ଟ ହୋଇଲେ ।
ଜ୍ୟୋତିଷିକେ ସେ ଲଗ୍ନକୁ ବେଶୀ ପ୍ରଶଂସିଲେ । ୨୩୫୦ ।
ମିଥିଳାଧିପତି ନୃପେ ପାଇ ଜନକାଦେଶ ।
ରାମ ଦେଶ ବର୍ଣ୍ଣ ବର୍ଣ୍ଣ ରଚେ ପ୍ରତ୍ୟ ପ୍ରତ୍ୟ ଦେଶ । ୨୩୫୧ ।
ବିବାହ ଦିନେ ଜନକ ନୃପତି ନଗର ।
ମନ ମୋହିଲ ହୋଇ ଅଳଙ୍କାରର । ୨୩୫୨ ।

ଏପରି ଶିବବୋଧିତ ହୋଇ ଦେବବ୍ରାତ ।
ନିଜ ମନୋଗ୍ଲାନି ଛାଡ଼ି ହୋଇଲେ ସମ୍ପ୍ରୀତ । ୨୩୬୭ ।
ଏଣେ ଦଶରଥ ସାଧୁ ବିପ୍ରାବୃତ ହୋଇ ।
ଚଳେ ଦେବାବୃତ-ଶକ୍ର ପରି ଶୋଭା ପାଇ । ୨୩୬୮ ।
ବନିତା ତା ସଙ୍ଗତେ ଥିଲେ ଚାରି କୁମାରେ ।
ଚତୁର୍ଦ୍ଧାପବର୍ଗ ଚତୁଷ୍ଟୟପ୍ରକାରେ । ୨୩୬୯ ।
ଭ୍ରାତୃଦ୍ୱୟ ଦୂର୍ବାଦଳ ଶ୍ୟାମ ନୀଳଧାମ ।
ଯୋଡ଼ିଏ ସ୍ୱର୍ଣ୍ଣ କାନ୍ତି କନକ ଶୁଭ୍ର ହେମ । ୨୩୭୦ ।
ତାଙ୍କୁ ଦେଖି ଦେବତାଏ ହେଲେ ଚମତ୍କୃତ ।
ବିଶେଷେ ରାମଙ୍କୁ ଦେଖି ହୋଇଲେ ମୋହିତ । ୨୩୭୧ ।
ନର୍ତ୍ତି ଶିଖୀପାଏ ଘନରୂପ ଦେଖି ନେତ୍ରେ ।
ଉମା ହର ହେଲେ ସୁଖୀ ପୁଲକିତ ଗାତ୍ରେ । ୨୩୭୨ ।
ଜିତ-କେକିକଣ୍ଠ ନୀଳସୁନ୍ଦରଘନ ।
ଚିରସ୍ଥିତ ଚପଳା ତୁଲ୍ୟ ପୀତବସନ । ୨୩୭୩ ।
ମଙ୍ଗଳକର ସୁନ୍ଦର ଅନେକ ପ୍ରକାର ।
ବିବାହଭୂଷଣରେ ଭୂଷିତ ଶରୀର । ୨୩୭୪ ।
ଶାରଦ-ପୂର୍ଣ୍ଣିମାଚନ୍ଦ୍ର ଦର୍ପହ ବଦନ ।
ନବ କଞ୍ଜଜାତ ପର ନୟନ ଶୋଭନ । ୨୩୭୫ ।
ସେ ଅଲୌକିକ ଶୋଭା ମନ ମାତ୍ର ଜାଣଇ ।
ବଚନେ ବର୍ଣ୍ଣିବା ସାମର୍ଥ୍ୟ ନାହିଁ ଅଛଇ । ୨୩୭୬ ।
ବନିତାରେ ଲୁବ୍ଧମନାନଙ୍କୁ ଅପେକ୍ଷି ।
ନସ୍କୁଭ ନଗ୍ନ ପାଇଥିବେ ନୃପ ଭଗ । ୨୩୭୭ ।
ଗାତ୍ର ହସ୍ତ ବର ଅଟଇ ସୁନ୍ଦରତର ।
ତାହାଙ୍କୁ ଦେଖି କମ୍ପିତ ହେଲ ସୁରେଶ୍ୱର । ୨୩୭୮ ।
ବଚନେ କହି ନୁହେ ଯେବେ ଯୌବନ ତାର ।
କେବା ସମ ତୁଲ ପରି ମାର ହସ୍ତାକାର । ୨୩୭୯ ।
ନିତାବସ୍ଥା ଅତି କେଳୁପତ୍ରୁଣ ନରେ ।
ସେ ସବୁ ବୈଦର୍ଭୀଙ୍କ ଶୋଭିତ କରେ । ୨୩୮୦ ।

ବିପ୍ରବେଶରେ ବିଧି ପ୍ରଭୃତି ବୃନ୍ଦାରକେ ।
ଆସି ସେ ସ୍ଥଳରେ ଥିଲେ ଅତ୍ୟନ୍ତ କୌତୁକେ । ୨୩୯୫ ।
ସମ୍ପ୍ରୀତ ଦଶରଥ ଜନକଙ୍କ ମେଳନ ।
ମହାସୁଖଦ ତାହା କରି ନୁହେ ବର୍ଣ୍ଣନ । ୨୩୯୬ ।
ସବୁ ବରଯାତ୍ରିଙ୍କି ବିଦେହ-ନରପତି ।
ସମୁଦୀ ପରି ପୂଜି ଲଭିଲେ ଅତି ପ୍ରୀତି । ୨୩୯୭ ।
ଭୂମି ସୁରବେଶ ଧରି ବୃନ୍ଦାରକବୃନ୍ଦ ।
ଜନକପୂଜିତ ହୋଇ ପାଇଲେ ଆନନ୍ଦ । ୨୩୯୮ ।
ମିଥିଳାନାଥର ଦାନ ସମ୍ମାନ ବିନୟ ।
ଦେଖି ସମସ୍ତେ ଲଭିଲେ ଅଧିକ ବିସ୍ମୟ । ୨୩୯୯ ।
ଯେମନ୍ତ ଶଙ୍କର ଆଗେ ମେନକା ସହିତ ।
ହିମ ପର୍ବତ ପୂର୍ବେ ହୋଇଥିଲା ଶୋଭିତ । ୨୪୦୦ ।
ତେମନ୍ତ ନିଜ ସ୍ତ୍ରୀ—ସୁନୟନା ସହିତ ।
ଜନକ ରାମ ପୁରତେ ଏବେ ପ୍ରକାଶିତ । ୨୪୦୧ ।
ସେ ସମୟରେ ବୈଦିକ ଲୌକିକ ମତରେ ।
ବରପୂଜନ ବିଧାନ ପୂର୍ଣ୍ଣ ହେଲା ପରେ । ୨୪୦୨ ।
ବଶିଷ୍ଠର ଆଦେଶରେ ଶତାନନ୍ଦ ଗଲେ ।
ସହଚରୀ ପରିବେଷ୍ଟିତା ସୀତାଙ୍କୁ ଆଣିଲେ । ୨୪୦୩ ।
[illegible] ଦେବସ୍ତ୍ରୀଏ ବ୍ରାହ୍ମଣୀ ବେଶ ଧରି ।
କନ୍ୟା ସଙ୍ଗେ ଆସିଲେ ମଙ୍ଗଳ ଗାନ କରି । ୨୪୦୪ ।
ତାଙ୍କ କିଙ୍କିଣୀ-ମଞ୍ଜୀରରବ ସେ ଗାନର ।
ତାଳ ହୋଇ ମୋହିଲା ମାନସ ମୁନିଙ୍କର । ୨୪୦୫ ।
ସୁଷମା ମଧ୍ୟେ ଅନନ୍ତ ପରି ସହଚରୀ ।
ମଧ୍ୟେ ସହଚରମା ସୀତା ଅତି ସୁନ୍ଦରୀ । ୨୪୦୬ ।
ଏପରି ଜାନକୀ କରି ମଣ୍ଡପ ଗତରେ ।
ଆସି ବସିଲେ ନିଜ ତାତର ବାମପାଶରେ । ୨୪୦୭ ।
ସୀତା ରାମ ପରସ୍ପର ଦେଖଣର ଭାବ ।
ମନୋଜ୍ଞତ ସେ ହୃଦୟକୁ ମନ ଜାଣ । ୨୪୦୮ ।

ହୋମାଦି ସର୍ବବିଧାନ ହେଲା ସମାପନ ।
ଅଦ୍ଭୁତ ନେଇଲ ପ୍ରତ୍ୟକ୍ଷରୂପେ ହୁତାଶନ । ୧୪୨୩ ।

ପରେ ସୀତା ରାମ ପରସ୍ପରେ କର ଧରି ।
ଅଗ୍ନି ପ୍ରଦକ୍ଷିଣ କଲେ ବିଧି ଅନୁସରି । ୧୪୨୪ ।

ତେବେ ତାଙ୍କ ରମ୍ୟରୂପ ମର୍ତ୍ତ୍ୟ ପ୍ରାଣିଗଣେ ।
ପ୍ରତିଫଳି ସନ୍ଦେହ ଜନ୍ମିଲା ଜନ ମନେ । ୧୪୨୫ ।

କିବା ଅଛି ରତ୍ନମାଳ ବହୁରୂପ ହୋଇ ।
ସେ ବିବାହ ଦର୍ଶନ ସ୍ପୃହାରେ ଦେଖା ଦେଇ । ୧୪୨୬ ।

ଶିବ ଦର୍ଶନ ଜନ୍ମେ ଲଭି ଥିବାରୁ ଅବ ।
ଦଣ୍ଡି-ପଳାନ୍ତ୍ର କ୍ଷଣେ ହୋଇ ନ ପାରି ଥିବ । ୧୪୨୭ ।

ରାମ ସୁନ୍ଦର କରେ ସୀତା-ମୁଖ-ଚନ୍ଦ୍ରରେ ।
ଲଗାଇଲେ ସିନ୍ଦୂର ବିନ୍ଦୁଟି ଆନନ୍ଦରେ । ୧୪୨୮ ।

ଦର୍ଶକେ ଥିଲେ ସେହି ଶୋଭା ଚାକୋରର ।
ପୀୟୂଷ ପାନ କରେ ହୋଇ ଲାଳସାରେ । ୧୪୨୯ ।

ବଶିଷ୍ଠାଦେଶରେ ଏକ ପୀଠେ ସୀତା ରାମ ।
ବସି ହେଲେ ସର୍ବଜନ-ନୟନାଭିରାମ । ୧୪୩୦ ।

ଅନନ୍ତର ଭରତଙ୍କୁ ଆପଣାର ଭାଇ ।
କୁଶଧ୍ୱଜର ଜ୍ୟେଷ୍ଠା ମାଣ୍ଡବୀଙ୍କି ଦେଇ । ୧୪୩୧ ।

ଲକ୍ଷ୍ମଣଙ୍କୁ ନିଜ ପୁତ୍ରୀ ଉର୍ମିଳାକୁ ପୁଣି ।
ଶତ୍ରୁଘ୍ନଙ୍କୁ କୁଶଧ୍ୱଜ କନିଷ୍ଠା ନନ୍ଦିନୀ । ୧୪୩୨ ।

ସମର୍ପିଲେ ଅତି ଆନନ୍ଦରେ ଜନକ ।
ବିବାହ ଭବ ଘଟଣା ଅତ୍ୟନ୍ତ କୌତୁକ । ୧୪୩୩ ।

ଏ କନ୍ୟାନିଚୟ ସତ୍ୟ ସୌନ୍ଦର୍ଯ୍ୟ-ମନ୍ଦିର ।
ସକଳ ସୁଗୁଣାକର ଶୋଭନ ଆକାର । ୧୪୩୪ ।

କନ୍ୟା ବରେ ପରସ୍ପର ସନ୍ଦର୍ଶନ କଲେ ।
ମହାନନ୍ଦ ସମ୍ଭୂତ ହୃଦୟ ହୋଇଲେ । ୧୪୩୫ ।

ସେ ମଣ୍ଡପେ ସେକାଳେ ଯେ ଶୁଭ ଆଚରଣ ।
ହୋଇ ଥିଲେ ଅନ୍ତଃକରଣ-ଲୋଚନ ରଞ୍ଜନ । ୧୪୩୬ ।

ସ୍ୱରାଜ୍ୟ ସହିତେ ଅମ୍ଭେ ସେବକ ତୁମ୍ଭର ।
ଏ ଗୃହ କନ୍ୟାଙ୍କୁ ପାଳ ପାଦଦାସୀ କର । ୨୪୫୧ ।
ଅମ୍ଭେ ତୁମ୍ଭଙ୍କୁ ନମନ୍ତି ଦେବ ଶ୍ରମହର ।
ଏତେଦୂର ଅଣିଲୁ ଦୋଷକୁ କ୍ଷମା କର । ୨୪୫୨ ।
ଏତେ ଶୁଣି ପ୍ରୀତ ହୋଇ ଦଶରଥେଶ୍ୱର ।
ବିନୟେ କହିଲେ ଉପଯୁକ୍ତ ପ୍ରତ୍ୟୁତ୍ତର । ୨୪୫୩ ।
ଯେ ସମ୍ବନ୍ଧ ପ୍ରେମ ସରଳତା ବିନୟ ।
ଅନନ୍ୟଜନସାଧାରଣ୍ୟ ଅଟଇ ନିଶ୍ଚୟ । ୨୪୫୪ ।
ଜନକାନୁମତ ହୋଇ କୋଶଳେଶ ପରେ ।
ପ୍ରବେଶିଲେ ଆପଣା ବସାରେ ଆନନ୍ଦରେ । ୨୪୫୫ ।
ତେବେ ପୂରିଲା ଗଗନେ ଦୁନ୍ଦୁଭିର ଧ୍ୱାନ ।
ମିଥିଳେଶ୍ୱର ନଗରେ ସାମବେଦଗାନ । ୨୪୫୬ ।
ନରଲୋକ ସୁରଲୋକ ଏକା ସମୟରେ ।
ମଜ୍ଜିଲା ଆନନ୍ଦ ସୁଧା ସଲିଳ ରାଶିରେ । ୨୪୫୭ ।
ସଖୀଏ ପାଇ ଗୌତମ-ସୁତର ଆଜ୍ଞାକୁ ।
କନ୍ୟାବରଙ୍କୁ ନେଲେ ବିବାହ-ବେଦିକାକୁ । ୨୪୫୮ ।
ରାମରୂପ ଦର୍ଶନ ଲୋଭେ ସୀତା-ନୟନ ।
ଥରକୁ ଥର କରୁଥାଏ ଉନ୍ମୀଳନ । ୨୪୫୯ ।
ପୁଣି ଲଜ୍ଜାବଶେ ହେଉଥାଏ ନିମୀଳିତ ।
ମାତ୍ର ମାନସ କେବେହେଁ ନୁହଇ ଚଳିତ । ୨୪୬୦ ।
ପ୍ରୀତିବ୍ରୀଡାବଶଗ ଜାନକୀ-ନେତ୍ରଦ୍ୱୟ ।
ରମ୍ୟ ଶଫରୀ-ଗର୍ବକୁ କରଇ ବିଜୟ । ୨୪୬୧ ।
ନୈସର୍ଗିକ ମନୋହର ଶ୍ୟାମଳାୟତନ ।
ତହେଁ ଲୋହିତାମ୍ର ତେଜ ଉପମା ରହିନ । ୨୪୬୨ ।
ଅଲକ୍ତ-ରଞ୍ଜିତ ରମା ପଦ-କୋକନଦ ।
ମୃଦୁ-ମନ୍ଥର-ଗମନ-ମଧୁରସପ୍ରଦ । ୨୪୬୩ ।
ପୂତ ପୀତବାସ ତହେଁ ବାଳାର୍କ ତେଜକୁ ।
ଅଧର କଳା ମେଘ ଖଣ୍ଡଳ ସ୍ଥଳକୁ । ୨୪୬୪ ।

ଯୋଗୀଏ ମୁନିଏ ସୁରେ ପୁଷ୍ପବୃଷ୍ଟି କରି ।
ଦୁନ୍ଦୁଭି ବଜାଇ ଗଲେ ନିଜ ନିଜ ପୁରୀ । ୨୪୭୯ ।
ବରେ କନ୍ୟାଙ୍କ ସହ ଚଳିଲେ ପୀତାବାସ ।
ସେ ବସା ଶୋଭାରେ ସ୍ୱର୍ଗେ ପାଇଲା ବିନାଶ । ୨୪୮୦ ।
ପରେ ସବୁ ବାନ୍ଧବଙ୍କୁ ବିଦେହରମଣ ।
ଭୋଜନ ପାଇଁ ସମାଦରେ କରି ନିମନ୍ତ୍ରଣ । ୨୪୮୧ ।
ସମ୍ବନ୍ଧୀ ଜାମାତାଙ୍କୁ ପାଟ ପାହାଡ଼ା କରି ।
ନେଇ ଦିବ୍ୟ ପୀଠଗୃହେ ବସାଇ ଆଦରି । ୨୪୮୨ ।
ତାହାଙ୍କର ପାଦପଦ୍ମ ସେ ଗୁଣୀ ପ୍ରେମରେ ।
ପଖାଳି ସୁନିର୍ମଳ ଜଳରେ ନିଜ କରେ । ୨୪୮୩ ।
ପୁଣି ପଖାଳିଲା ରାମଚରଣ ଯତ୍ନରେ ।
ଯାହା ନିହିତ ଶିବ-ହୃଦୟ-କମଳରେ । ୨୪୮୪ ।
ମଣିଖଚିତ ହେମପାତ୍ରମାନ ପକାଇ ।
ପରେ ସୂପକାରମାନେ ଅତି ବେଗ ହୋଇ । ୨୪୮୫ ।
ପରଷିଲେ ଅନ୍ନ ଘୃତ ଚଳି ଅନନ୍ତର ।
ଦେଲେ ସୂପ ଶାକାଦି ସେମାନେ ତ ତତ୍ପର । ୨୪୮୬ ।
ବହୁବିଧ ପିଷ୍ଟକ ନାନାବିଧ ବ୍ୟଞ୍ଜନ ।
ଯେତେ ବଢ଼ା ହେଲା ତା କେ କରିବ ଗଣନ ? ୨୪୮୭ ।
ରସ ପଞ୍ଚାମୃତ ଦୁଗ୍ଧ ଏକତ୍ର ଅଧିକ ।
ଚାରି ପ୍ରକାର ଆହାର ସୁସ୍ୱାଦୁ ଅଧିକ । ୨୪୮୮ ।
ତେବେ ନାରୀଏ ସ୍ୱର୍ଣ୍ଣପାତ୍ରରେ ମଙ୍ଗଳେ ।
ପ୍ରତ୍ୟେକ ବ୍ୟକ୍ତି ନାମରେ ଗାଳି ଗାନ କଲେ । ୨୪୮୯ ।
ସେ ଗାଳି ଗାଇ ସବୁରି ମନେ ମୋଦ ଦିଏ ।
ମନ ହରି ହରି ମନ ତାଳବଣେ ଦୁଏ । ୨୪୯୦ ।
ପ୍ରମୋଦେ ସର୍ବେ ଭୋଜନ ସମାପନ କଲେ ।
ସନ୍ତୁଷ୍ଟ ହୋଇ ସୁରସ ଜଳେ ଆଚମିଲେ । ୨୪୯୧ ।
କନକ-ଡବି ତାମ୍ବୂଳ ପ୍ରଭୃତି ପାଇଲେ ।
ତହିଁଆଦି ବାନ୍ଧବେ ବସାକୁ ଗମିଲେ । ୨୪୯୨ ।

ତେଣୁ କୋଶଳନାଥ ଅଛ କେତେକ ଦିନ ।
ରହୁ ବୋଲି ସଭିଙ୍କ ମୁଖୁଁ ଏକ ବଚନ । ୧୫୦୭ ।
ବିଦେହେ ବରଜାତମାନେ ପ୍ରେମପାଶରେ ।
ବନ୍ଧ ହୋଇ ରହନ୍ତେ କେତେକ ଦିନ ପରେ । ୧୫୦୮ ।
ବିଶ୍ୱାମିତ୍ର ଶତାନନ୍ଦ ଦିନେ ଜନକଙ୍କୁ ।
ସାମେ ବୋଧ କଲେ ଦେବା ପାଇଁ ବିଦାୟକୁ । ୧୫୦୯ ।
ସେ ସମ୍ମତ ହୋଇ ସ୍ୱମନ୍ତ୍ରୀକି କୋଶଳେଶ ।
ପ୍ରୟାଣ ପ୍ରକଟିବାକୁ ବିହିଲେ ଆଦେଶ । ୧୫୧୦ ।
ଶୁଣନ୍ତେ ସେ ପ୍ରକଟନ ସଭିଁର ବଦନ ।
ଦୁଃଖରେ ମ୍ଳାନ ସନ୍ଧ୍ୟାକାଳ କଞ୍ଜ ଯେସନ । ୧୫୧୧ ।
ବରଜାତ ମେଲାଣିରୂପେ ନାନା ପିଷ୍ଟକ ।
ଫଳ ଖାଦ୍ୟ ଦ୍ରବ୍ୟ ବହୁସଂଖ୍ୟକ ଯୋଟକ । ୧୫୧୨ ।
ଏରଗଜସମାନେକଗଜଦାସୀଦାସାଳି ।
ଗୋମହିଷସମୂହ ଶିବିକାରଥଯାନ । ୧୫୧୩ ।
ଦିବ୍ୟ ବସ୍ତ୍ର ଭୂଷଣ ବହୁ ବହୁ କାଞ୍ଚନ ।
ଯେତେ ପ୍ରେରନ୍ତ ତାହା କରିବ କେ ବର୍ଣ୍ଣନ ? ୧୫୧୪ ।
ସେମାନଙ୍କୁ ବିଲୋକି ନିଜ ସମ୍ପଦ ନ୍ୟୂନ ।
ବୋଲି ଲଜ୍ଜେ କଲେ ଲୋକପାଳେ ମୁଖ ମ୍ଳାନ । ୧୫୧୫ ।
ଜନକ ସାଦର ଦେଇ ସର୍ବୋପକରଣ ।
ଦଶରଥ ଅଯୋଧ୍ୟାକୁ କରନ୍ତେ ପ୍ରେରଣ । ୧୫୧୬ ।
ବରଜାତଙ୍କ ଯାତ୍ରା ଉଦ୍ୟ ଜାଣି ସକଳ ।
ଶୁଦ୍ଧାନ୍ତପୁର ଜାତ ମାନ ହେଲ ଅକୁଳ । ୧୫୧୭ ।
ମାତା ସୀତାଙ୍କୁ କୋଳରେ ଧରି ଟେକି ତଣ୍ଡ ।
ପତିପ୍ରିୟା ହୋଇ ପାଅ ଅପୂର୍ବ ଅଖଣ୍ଡ । ୧୫୧୮ ।
ବୋଲି କଲ୍ୟାଣ କରି ଶ୍ୱଶ୍ରୂ ଶ୍ୱଶୁର ଗୁରୁ ।
ସେବାରତା ହୋଇ ପତିଦେବନବଶିନ୍ତୁ । ୧୫୧୯ ।
ତାଙ୍କ ଭାବ ଜାଣି ସଦା ବୁଝ ସେ ଉପରେ ।
ବୋଲି ଉପଦେଶ ଅଶ୍ରୁପୂର୍ଣ୍ଣ ନେତ୍ରରେ । ୧୫୨୦ ।

ସେମାନେ ଦୁଃଖାକୁଳା ହେଲେ ଶୁଣି ସେ ବାଣୀ ।
କେତେକ୍ଷଣ ପରେ ନିଜ କୁମାରୀଙ୍କି ଅଣି । ୨୫୩୫ ।
ପ୍ରେମଭରେ କୋଳ କରି ଜାମାତାଙ୍କ କରେ ।
ସମର୍ପି କହିଲେ ବନ୍ଧୁ ବଧେ ବିନୟରେ । ୨୫୩୬ ।
ବିଶେଷରେ ସୀତା-ମାତା ଉଦ୍ଦେଶି ରାମଙ୍କୁ ।
କୋମଳରେ ବୋଇଲା ପ୍ରକାଶି ବିନୟକୁ । ୨୫୩୭ ।
ତୁମ୍ଭେ ତ ଭବସିନ୍ଧୁ ଗୁଣଙ୍କ ବିଶ୍ୱବର ।
ପରିପୂର୍ଣ୍ଣକାମ କୃପାମୟ ଦୋଷହର । ୨୫୩୮ ।
ଏ ମୋ ଦୁହିତା ଅତ୍ୟନ୍ତ ଲଳିତା ପାଳିତା ।
କୁମାରୀ ସୁକୁମାରୀ ଲୋକଞ୍ଜନରହିତା । ୨୫୩୯ ।
ଏ ତ ତୁମ୍ଭ ଗୃହସ୍ତ ଏହା ଦୋଷ ନ ଧରି ।
ଏହାଙ୍କୁ ସଦା ପରିପାଳ ଗଲେ ଆଦରି । ୨୫୪୦ ।
ଏତେ ଶୁଣି ସୁପ୍ରୀତ ହୋଇ ରଘୁନନ୍ଦନ ।
ଉଚିତ ପ୍ରତ୍ୟୁତ୍ତରେ ତୋଷିଲେ ଶାଶ୍ୱମନ । ୨୫୪୧ ।
ପରେ ଶାଶୁମାନଙ୍କୁ କ୍ରମରେ ଗୃହସ୍ଥଇ ।
ପ୍ରଣାମ କରି ଗମନ୍ତେ ବିଦାୟକୁ ନେଇ । ୨୫୪୨ ।
ତାହାଙ୍କ ବିନୟ ଶୀଳ ସୌନ୍ଦର୍ଯ୍ୟ ବାହୁଳ ।
ସନ୍ତୁଷ୍ଟା ହେଲେ ସବୁ ଅନ୍ତଃପୁରବାସିନୀ । ୨୫୪୩ ।
ରାଣୀଏ କୁମାରୀଙ୍କି ପ୍ରେମେ କୋଳେ ଧରନ୍ତି ।
ସଖିଙ୍କ କୋଳେ କେତେକ୍ଷଣ ପରେ ଅର୍ପନ୍ତି । ୨୫୪୪ ।
ପୁଣି କୋଳ କରନ୍ତି ପୁଣି ତାଙ୍କୁ ଦିଅନ୍ତି ।
କର୍ଣ୍ଣପୂତାଧେନୁ ପରି ଅଟିଷ୍ଟି ହୁଅନ୍ତି । ୨୫୪୫ ।
ରାଣୀଏ ମାତ ବାତୁଳି ସବେ ଶୋକାତୁର ।
ପଦ୍ମ ବିଦେହ ଦେଶ ହେବା ଦୁଃଖୋଦର । ୨୫୪୬ ।
ହେମପିଞ୍ଜରସ୍ଥିତ ଶାରୀକେ ଅତୁଳେ ।
ଅହା ସୀତା, ଅହା ସୀତ, ବୋଲି ରବ କଲେ । ୨୫୪୭ ।
ଗୋଠରେ ପଶୁପକ୍ଷୀ ସୀତା ବିରହେ ଦୁଃଖୀ ।
ହୋଇ ଜନକ ଘେର ହୋଇଗଲେ କ କେଉଁ । ୨୫୪୮ ।

ସେମାନେ ଫେରିଲେ ନୃପ-କୀର୍ତ୍ତି ଗାଇ ଗାଇ ।
ଶ୍ରୀରାମ-ମନୋହର-ରୂପକୁ ଧ୍ୟାଇ ଧ୍ୟାଇ । ୨୫୬୩ ।
ପରେ ପ୍ରମୋଦଚିତ୍ତେ ଦଶରଥ ଚଳିଲେ ।
ସାନୁଚର ଜନକ ତାଙ୍କୁ ଅନୁସରିଲେ । ୨୫୬୪ ।
ଫେରି ବୋଲି ବାରମ୍ବାର କୋଶଳନାୟକ ।
କହିଲେହେଁ ନ ଫେରେ ସ୍ନେହାସକ୍ତ ଜନକ । ୨୫୬୫ ।
ତେବେ ବାହନରୁ ଦଶରଥ ଓହ୍ଲାଇଲେ ।
ସମ୍ବନ୍ଧୀଙ୍କୁ କୁଣ୍ଢାଇ ଫେରି ଏଥୁ ବୋଇଲେ । ୨୫୬୬ ।
ତେଣୁ ସେ ବାଧ୍ୟ ହୋଇ ଦଶରଥଙ୍କୁ ନମି ।
ବଶିଷ୍ଠାଦି ମୁନିଙ୍କି ଭକ୍ତିସହ ପ୍ରଣମି । ୨୫୬୭ ।
ତାଙ୍କରେ ଅଦୃଷ୍ଟ ହୋଇ ଜାମାତାଙ୍କ ଗତ ।
ଯାଇ ଗ୍ରହଣକରି ତାହାଙ୍କ ଅନୁମତ । ୨୫୬୮ ।
ରାମଚନ୍ଦ୍ରଙ୍କୁ ଉଦ୍ଦେଶି ବୋଇଲେ ଏମନ୍ତ ।
ହେ ରାମ ! ତୁ ପରଂବ୍ରହ୍ମ ଅଚ୍ୟୁତ ଅନନ୍ତ । ୨୫୬୯ ।
ମୁନି-ଶିବ-ମାନସ-ମାନସ-ହଂସ ତୁହି ।
ତୋତେ କି ସ୍ତୁତି କରିବି ଅଜ୍ଞାନୀ ମୁହିଁ । ୨୫୭୦ ।
ତୁ ମନୋବାକ୍ୟାଗମ୍ୟ ତର୍କରୁ ମଧ୍ୟ ଦୂର ।
ନେତି ବୋଲି ମାତ୍ର ବେଦ କହେ ତୋ ଆକାର । ୨୫୭୧ ।
ସଚ୍ଚିଦାନନ୍ଦ ନିର୍ଗୁଣ ତୁହି ଗୁଣାକର ।
ତୋତେ ଜାଣେ କାମାଦିବର୍ଜିତ ଯୋଗିବର । ୨୫୭୨ ।
ତୁ ସର୍ବବ୍ୟାପକ ସର୍ବସୁଖମୂଳ ମୋର ।
ନୟନ-ଗୋଚର ହେଲୁ ହେ ଗଦାଧର । ୨୫୭୩ ।
ଏଣୁ ଅନୁକୂଳ ହେଲେ ଶମ୍ଭୁ ତ ଈଶ୍ୱର ।
ଜାତ ଜନ ଶେଷ ନେତେ କଲି ଯୁକ୍ତକର । ୨୫୭୪ ।
ତୋ ଗୁଣ ମୋ ଗଣନା କହେ ବାଣୀ ଅନନ୍ତ ।
କୋଟିଏ କଳ୍ପ ବର୍ଣ୍ଣିଲେ ହୋଇବ କି ଅନ୍ତ ? ୨୫୭୫ ।
ତୋରେ ଅନ୍ତ ହେଲେ ପ୍ରାପ୍ତ କରିବା ଜନର ।
ବଳୀ ତୁହି ଅଟୁ ବୋଲି ଭାଷଇ ମୋହର । ୨୫୭୬ ।

ହାଟ ବାଟ ଚତୁଷ୍ଟ ପୁରଦ୍ୱାର ମଣ୍ଡିଲେ ।
ଛତ୍ର ବିତାନ ଧ୍ୱଜ ତୋରଣ ବାନ୍ଧିଲେ । ୨୫୯୧ ।
ସଫଳ ରମ୍ଭାପୂଗଚୂତାଦ୍ୟ ବୃକ୍ଷ ଭଲେ ।
ରତ୍ନାଳବାଳିକାଲେ ସ୍ଥାନେ ସ୍ଥାନେ ରୋପିଲେ । ୨୫୯୨ ।
ସ୍ଥାପିଲେ ଧନ୍ୟ ପୂର୍ଣ୍ଣକୁମ୍ଭ ପ୍ରତି ଦ୍ୱାରରେ ।
ଅଯୋଧ୍ୟା ପୁରୀ ଶୋଭା ଦେବଙ୍କ ମନ ହରେ । ୨୫୯୩ ।
ନଗରର ମଣ୍ଡନ କେ କରିବ ବର୍ଣ୍ଣନ ?
ତା ମଦନମୋହନ ମନୋନେତ୍ରବନ୍ଧନ । ୨୫୯୪ ।
ଶ୍ରୀ ସୀତା-ରାମ-ଦର୍ଶନ ଲାଳସରେ ଲୁବ୍ଧ ।
ସର୍ବତ୍ର ଶୁଭ ଶକୁନ ମନୋଜ୍ଞତା ସିଦ୍ଧି । ୨୫୯୫ ।
ମୂର୍ତ୍ତିମାନ ହୋଇ ତହିଁ ଥିବା ପ୍ରକାରରେ ।
ପ୍ରତୀୟମାନ ହୁଏ ଦର୍ଶକ-ମାନସରେ । ୨୫୯୬ ।
ଶୋଭିକ ରତିଦେବୀ ସୁବାସିନୀମାନେ ।
ଅର୍ଘ୍ୟ-ସ୍ଥାଳୀ ପୂର୍ଣ୍ଣକୁମ୍ଭ ଧରି ଏକତାନେ । ୨୫୯୭ ।
ଅନେକ ରୂପଧାରିଣୀ ସରସ୍ୱତୀ ପରି ।
ମଙ୍ଗଳ ଗାନ କରନ୍ତି ଶବ୍ଦାର୍ଥ ମାଧୁରୀ । ୨୫୯୮ ।
ନଗରର କୋଳାହଳ ଅଟେ ଅସଦୃଶ ।
କୌଶଲ୍ୟାଦ୍ୟ ରାଣୀଗଣ ପ୍ରେମରେ ବିବଶ । ୨୫୯୯ ।
ଚତୁର୍ବର୍ଗ ପାଇବା ନାରୀ ଦରିଦ୍ର ପରି ।
ରାଣୀଏ ତେବେ ଅତି ମୋଦାନୁଭବ କରି । ୨୬୦୦ ।
ଗଣେଶ ମହେଶଙ୍କୁ ପୂଜି ବିପ୍ରଗଣଙ୍କୁ ।
ଅତି ତୃପ୍ତ କଲେ ଦେଇ ଦାନଦକ୍ଷିଣାକୁ । ୨୬୦୧ ।
ସେମାନେ ପ୍ରେମରେ କଲେ ମଙ୍ଗଳାରୋପଣ—
ପ୍ରଧାନ ଉଦ୍ଦେଶ୍ୟମୂଳ କଲେ ସଂଘଟନ । ୨୬୦୨ ।
ତାହାଙ୍କ ଘରେ ହେମସୌଧାଳିପରି ସ୍ୱତେ ।
ନାନାବିଧେ ମଙ୍ଗଳବାଦ୍ୟ ମଧୁର ବାଜେ । ୨୬୦୩ ।
ତହିଁ ସୁପ୍ରିତ କନକ ପୂର୍ଣ୍ଣ-କୁମ୍ଭଗଣ ।
ମାଳିକ ପତିଜଡ଼ ପର ପଟ୍ଟ୍ୟୁଗଳ । ୨୬୦୪ ।

ତେଣୁ ମୋର ବଚନ ପୂତ କରିବା ପାଇଁ ।
ତହିଁରୁ କିଛିମାନ ବର୍ଣ୍ଣିଲି ମନ ଦେଇ । ୨୭୦୩ ।

ଶ୍ରୀରାମଚରିତ ତ ଅପାର ପାରାବାର ।
କେଉଁ କବି ମଧ୍ୟ ବର୍ଣ୍ଣି ପାରେ କି ତା ପାର । ୨୭୦୪ ।

ଯେ ଶୁଭକର୍ମେ ଏହାକୁ ଶୁଣେ କିବା ଗାଏ ।
ସୀତାରାମ କୃପାରୁ ସେ ମଙ୍ଗଳକୁ ପାଏ । ୨୭୦୫ ।

ହରିଭକ୍ତିରସେ ମାତି ଲୋଭାଗ୍ନି ଲିଭଇ ।
ତାହା ଜାଣି ଭକ୍ତିରେ ଏହା ରଚିଲି ମୁହିଁ । ୨୭୦୬ ।

ତନୁ ତ ମଳଗ୍ରସିତ କାଳ ତ କଠିନ ।
ନିତ୍ୟ ସୁଖ ପାଇବାକୁ ନ ଦିଶେ ସାଧନ । ୨୭୦୭ ।

ଏତେ ଜାଣି ଯେ ଜନ କରେ ହରିସ୍ମରଣ ।
ସେ ଅଟେ ଜ୍ଞାନବାନ ଧନ୍ୟ ତାର ଜନନ । ୨୭୦୮ ।

ଅରେ ମନ ! ମହା ମୋହ ନିଶାନ୍ଧକାରରେ ।
ବହୁ ସମୟ ଯାଏ ଶୋଇଲଣି ଗାଢ଼ରେ । ୨୭୦୯ ।

ଏବେ ହେଲେ ତୁ ଚେତ ଛାଡ଼ କପଟାଦିକି ।
ଭଜ ନିଷ୍ଠଲେ ପୁଣି ପ୍ରେମରେ ଶ୍ରୀହରିକି । ୨୭୧୦ ।

ଶ୍ରୀରାମଚରିତ ଅଟେ ମଙ୍ଗଳାୟତନ ।
ତହୁଁ ଯେ ସୀତା ରାମ ବିବାହକୁ ପଠନ । ୨୭୧୧ ।

କିମ୍ବା ଶ୍ରବଣ କରଇ ସେ ପାଏ ସକଳ ।
ସମ୍ପତ୍ତି କୀର୍ତ୍ତି ସନ୍ତତି ସନ୍ତୋଷ ମଙ୍ଗଳ । ୨୭୧୨ ।

ରାଧା ରମ୍ୟାଲପନ-ସୁଧାକର-ଚକୋର ।
ଧୃତ-ପୀତାମ୍ବର ବରଦାସାକ୍ଷମନ୍ଦାର । ୨୭୧୩ ।

ଗୋବର୍ଦ୍ଧନଧର ଧିର ନବନୀତଚୋର ।
ନତବିଧି-ଶଙ୍କର ସମସ୍ତଲୋକାଧାର । ୨୭୧୪ ।

ସକଳଦୁରିତହର କରୁଣାସାଗର ।
ମୁନୀଶ-ବୃନ୍ଦ-ମାନସ-ସାରସ ଭ୍ରମର । ୨୭୧୫ ।

ବଦନ ଜିତ-ଶାରଦ-ରାକାନିଶାକର ।
ଶ୍ରୀ ବିକ୍ରମଦେବ ଚିତ୍ତ ଜଳଜ ଭାସ୍କର । ୨୭୧୬ ।

ଶ୍ରୀ ତୁଳସୀ-ବିକ୍ରମ ରାମାୟଣବରର ।
ଆଦିକାଣ୍ଡ ବିରଚିତ କୃପାରୁ ତୋହର । ୨୭୧୭ ।
ଶାଳିବାହନ ଶକ ଶରବିଧୁ ଗଜେନ୍ଦୁରେ ।
ଏ ଆଦିକାଣ୍ଡ ସମ୍ପୂର୍ଣ୍ଣ ହୋଇଲା ଶୁଭରେ । ୨୭୧୮ ।



# ଶ୍ରୀଗୋବିନ୍ଦମଞ୍ଜରିକାବଳିଃ

ମୂଳଂ—ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ । ଭଜ ଗୋବିନ୍ଦଂ ମୂଢମତେ ।
ସମ୍ପ୍ରାପ୍ତେ ସନ୍ନିହିତେ କାଲେ । ନହି ନହି ରକ୍ଷତି ଡୁକୃଞ୍ କରଣେ ॥

ଅନୁବାଦ—ଗୋବିନ୍ଦଙ୍କୁ ଭଜ ଗୋବିନ୍ଦଙ୍କୁ ଭଜ ।
ଗୋବିନ୍ଦଙ୍କୁ ଭଜ ମୂଢ଼ ! ସଦା ।
କାଳ ଉପସ୍ଥିତ ହୋଇବ ଯେବେ ।
ନ ରଖିବନ୍ତି ଡୁକୃଞ୍ କରଣେ ତେବେ ॥

ମୂ—ମୂଢ଼ ଜହୀହି ଧନାଗମତୃଷ୍ଣାଂ । କୁରୁ ସଦ୍‌ବୁଦ୍ଧିଂ ମନସି ବିତୃଷ୍ଣାଂ ।
ଯଲ୍ଲଭସେ ନିଜକର୍ମୋପାତ୍ତଂ । ବିତ୍ତଂ ତେନ ବିନୋଦୟ ଚିତ୍ତଂ ।୧।

ଅ—ମୂଢ଼ ! ତୁ ଛାଡ଼ ଧନାଗମତୃଷ୍ଣା ।
ମନରେ ଭର ସଦ୍‌ବୁଦ୍ଧି ବିତୃଷ୍ଣା ।
ନିଜ କର୍ମାର୍ଜିତ ଧନରେ ତୋହର ।
ଚିତ୍ତକୁ ରଞ୍ଜନ କରନ୍ତି ନିରନ୍ତର ।୧।

ମୂ—ନାରୀସ୍ତନଭରନାଭୀଦେଶଂ । ଦୃଷ୍ଟ୍ୱା ମାଗା ମୋହାବେଶଂ ।
ଏତନ୍ମାଂସବସାଦିବିକାରଂ । ମନସି ବିଚିନ୍ତୟ ବାରଂ ବାରଂ ।୨।

ଅ—ଯୁବତୀର କୁଚକୁ ନାଭିଦେଶକୁ ।
ଦେଖି ତୁ ଲଭ ନା ମୋହାବେଶକୁ ।
ସେମାନ ପଲବସାଦି ବିକାର ଟି ।
ଚିତ୍ତେ ଉତ୍ତମରେ ତୁ ବିଚାର ତ ।୨।

ମୂ—ନଳିନୀଦଳଗତଜଳମତିତରଳଂ । ତଦ୍‌ବଜ୍ଜୀବିତମତିଶୟଚପଳଂ ।—
ବିଦ୍ଧି ବ୍ୟାଧ୍ୟଭିମାନଗ୍ରସ୍ତଂ । ଲୋକଂ ଶୋକହତଞ୍ଚ ସମସ୍ତଂ ।୩।

ଅ—ନଳିନୀଦଳଗତନୀର ଅନିଶ୍ଚଳ ।
ସେପରି ଜନ୍ତୁର ଜୀବନ ଚଞ୍ଚଳ ।
ରୋଗେ ଅଭିମାନେ ଜଗ ଅଭୂତ ।
ସବୁ ଶୋକାହତ ବୋଲି ତୁ ଜାଣ ତ ।୩।

ମୂ—ଯାବଦ୍ବିତ୍ତୋପାର୍ଜନସକ୍ତ—ସ୍ତାବନ୍ନିଜପରିବାରୋରକ୍ତଃ ।
ପଶ୍ଚାଜ୍ଜୀବତି ଜର୍ଜରଦେହେ । ବାର୍ତ୍ତାଂ କୋଽପି ନ ପୃଚ୍ଛତି ଗେହେ । ୪ ।

ଅ—ନର ବିତ୍ତାର୍ଜନ କରିବାଯାଏ ।
ନିଜ ପରିବାରୁଆଦର ଲଭୁଥାଏ ।
ଜୀଇଁଲେ ତ ପଛେ ଜର୍ଜର ଦେହେ ।
ତା ବିଷୟକୁ କେ ନ ବୁଝେ ଗେହେ । ୪ ।

ମୂ—ଯାବତ୍ପବନୋ ନିବସତି ଦେହେ । ତାବତ୍ପୃଚ୍ଛତି କୁଶଲଂ ଗେହେ ।
ଗତବତି ବାୟୌ ଦେହାପାୟେ । ଭାର୍ଯ୍ୟା ବିଭ୍ୟତି ତସ୍ମିନ୍ କାୟେ । ୪ ।

ଅ—ପବନ ଥିବାଯାଏ ତୋ ଦେହେ ।
ତୋ କ୍ଷେମକୁ ବୁଝୁଥାଏ ଗେହେ ।
ବାୟୁ ଚଳିଗଲେ କାୟାପାୟେ !
ଭାର୍ଯ୍ୟା ଭୟ ପାଏ ସେ କାୟେ । ୫ ।

ମୂ—ଅର୍ଥମନର୍ଥଂ ଭାବୟ ନିତ୍ୟଂ । ନାସ୍ତି ତତଃ ସୁଖଲେଶଃ ସତ୍ୟଂ ।
ପୁତ୍ରାଦପି ଧନଭାଜାଂ ଭୀତିଃ । ସର୍ବତ୍ରୈଷା ବିହିତା ରୀତିଃ । ୬ ।

ଅ—ଅର୍ଥ ଅନର୍ଥ ବିଚାର ତୁ ସନ୍ତତ ।
ତହିଁରେ ସୁଖ ଲବ ନିଶ୍ଚେ ନାହିଁ ତ ।
ସୁତଠାରୁ ବି ଭୟ ଧନବାନଙ୍କର ।
ସବୁଠାରେ ଏ ରୀତି ଭାସୁର । ୬ ।

ମୂ—ବାଲସ୍ତାବତ୍ କ୍ରୀଡାସକ୍ତ-ସ୍ତରୁଣ-ସ୍ତାବତ୍ତରୁଣୀରକ୍ତଃ ।
ବୃଦ୍ଧସ୍ତାବଚ୍ଚିନ୍ତାସକ୍ତଃ । ପରମେ ବ୍ରହ୍ମଣି କୋଽପି ନ ସକ୍ତଃ । ୭ ।

ଅ—ଖେଳେ ବାଳକ ଆସକ୍ତ ହୁଏ
ତରୁଣୀଠାରେ ତରୁଣ ରତ ହୁଏ ।
ଚିନ୍ତାଗହନେ ରତ ବୃଦ୍ଧ ହୁଏ ।
କେହ୍ହି ବି ବ୍ରହ୍ମେ ଆସକ୍ତ ନୁହେ । ୭ ।

ମୂ—କା ତେ କାନ୍ତା କସ୍ତେ ପୁତ୍ରଃ । ସଂସାରୋଽୟମତୀବ ବିଚିତ୍ରଃ ।
କସ୍ୟ ତ୍ୱଂ ବା କୁତ ଆୟାତ-ସ୍ତତ୍ତ୍ୱଂ ଚିନ୍ତୟ ତଦିହ ଭ୍ରାତଃ । ୮ ।

ଅ—କେ ତୋହର ଜାୟା କେ ତୋ ସୁତ ।
ଏ ସଂସାର ତ ଅତ୍ୟନ୍ତାଦ୍ଭୁତ ।
କାର ତୁ କେବଣ ଥାନରୁ ଆଗତ ।
ଏ ତତ୍ତ୍ୱ ଭଲେ ଭାଇ ! ଚିନ୍ତର ତ । ୮ ।

ମୂ—ସତ୍ସଙ୍ଗତ୍ୱେ ନିଃସଙ୍ଗତ୍ୱଂ । ନିଃସଙ୍ଗତ୍ୱେ ନିର୍ମୋହତ୍ୱଂ ।
ନିର୍ମୋହତ୍ୱେ ନିଶ୍ଚଳତତ୍ତ୍ୱଂ । ନିଶ୍ଚଳତତ୍ତ୍ୱେ ଜୀବନ୍ମୁକ୍ତିଃ । ୯ ।

ଅ—ସତ୍ସଙ୍ଗତ୍ୱେ ନିଃସଙ୍ଗତ୍ୱଟି ।
ନିଃସଙ୍ଗତ୍ୱେ ନିର୍ମୋହତ୍ୱଟି । ।
ନିର୍ମୋହତ୍ୱେ ନିଶ୍ଚଳ ତତ୍ତ୍ୱଟି ।
ନିଶ୍ଚଳତତ୍ତ୍ୱେ ଜୀବନ୍ମୁକ୍ତଟି । ୯ ।

ମୂ—ବୟସି ଗତେ କଃ କାମବିକାରଃ । ଶୁଷ୍କେ ନୀରେ କଃ କାସାରଃ ।
କ୍ଷୀଣେ ବିତ୍ତେ କଃ ପରିବାରୋ । ଜ୍ଞାତେ ତତ୍ତ୍ୱେ କଃ ସଂସାରଃ । ୧୦ ।

ଅ—ବୟସ ଗଲେ କାମୁକତା କୋଠେଁ ?
ଜଳ ଶୁଖିଲେ ପୁଷ୍କରିଣୀ କୋଠେଁ ?
ଧନ ସରିଲେ ବାନ୍ଧବଗଣ କୋଠେଁ ?
ତତ୍ତ୍ୱକୁ ବୁଝିଲେ ସଂସୃତି କୋଠେଁ ? । ୧୦ ।

ମୂ—ମା କୁରୁ ଧନଜନଯୌବନଗର୍ବଂ । ହରତି ନିମେଷାତ୍କାଳଃ ସର୍ବଂ ।
ମାୟାମୟମିଦମଖିଳଂ ହିତ୍ୱା । ବ୍ରହ୍ମପଦଂ ତ୍ୱଂ ପ୍ରବିଶ ବିଦିତ୍ୱା । ୧୧ ।

ଅ—କର ନା ଧନଜନଯୌବନଗର୍ବକୁ ।
ପଲକେ କାଳ ହରେ ତ ସମସ୍ତକୁ ।
ଏ ମାୟାମୟ ଅଖିଳକୁ ଛାଡ଼ିଣ ।
ପାଅ ତୁ ବ୍ରହ୍ମସ୍ଥାନକୁ ଜାଣିଣ । ୧୧ ।

ମୂ—ଦିନଯାମିନ୍ୟୌ ସାୟଂ ପ୍ରାତଃ । ଶିଶିରବସନ୍ତୌ ପୁନରାୟାତଃ ।
କାଳଃ କ୍ରୀଡ଼ତି ଗଚ୍ଛତ୍ୟାୟୁ-ସ୍ତଦପି ନ ମୁଞ୍ଚତ୍ୟାଶାବାୟୁଃ । ୧୨ ।

ଅ—ଦିନ ନିଶି ସଞ୍ଜ-ସକାଳ ବିଶେଷେ ।
ଶିଶିର ବସନ୍ତ ବି ପୁଣି ପୁଣି ଆସେ ।
କ୍ରୀଡ଼େ କାଳ ଗମେ ଆୟୁ ଝଟେ ।
ତେବେହେଁ ଆଶାନିଳ ନ ଛୁଟେ । ୧୨ ।

ମୂ—ଦ୍ୱାଦଶମଞ୍ଜରିକାଭିରଶେଷଃ । କଥିତୋ ବୈୟାକରଣସ୍ୟୈଷଃ ।
ଉପଦେଶୋଽଭୂଦ୍ ବିଦ୍ୟାନିପୁଣୈଃ । ଶ୍ରୀମଚ୍ଛଙ୍କରଭଗବଚ୍ଛରଣୈଃ । ୧୩ ।

ଅ—ଏ ଦ୍ୱାଦଶମଞ୍ଜରିକାଳ ଭଲେ ।
କୌଣସି ବୈୟାକରଣକୁ କହିଲେ ।
ବିଦ୍ୟାନିପୁଣ ଶ୍ରୀମଚ୍ଛଙ୍କର ।
ଭଗବତ୍ପାଦେ ହୋଇ କୃପାଭର । ୧୩ ।

ମୂ—କା ତେ କାନ୍ତା ଧନଗତଚିନ୍ତା । ବାତୁଳ କିଂ ତବ ନାସ୍ତି ନିୟନ୍ତା ।
ତ୍ରିଜଗତି ସଜ୍ଜନସଙ୍ଗତିରେକା । ଭବତି ଭବାର୍ଣ୍ଣବତରଣେ ନୌକା ।୧୪।

ଅ—ଧନଗତ ଚିନ୍ତାରେ ସଧ କାହିଁକି ?
ବାତୁଳ ! ତୋର ନିୟନ୍ତା ନାହିଁକି ?
ଜଗତେ ସଜ୍ଜନସଙ୍ଗତ ମାତର ।
ନୌକା ତରଣେ ଏ ଭବସାଗର । ୧୪ ।

ମୂ—ଜଟିଳୋ ମୁଣ୍ଡୀ ଲୁଞ୍ଚିତକେଶଃ । କାଷାୟାମ୍ବରବହୁକୃତବେଶଃ ।
ପଶ୍ୟନ୍ନପି ଚ ନ ପଶ୍ୟତି ମୂଢ଼ୋ । ହ୍ୟୁଦରନିମିତ୍ତୋ ବହୁକୃତବେଶଃ ।୧୫।

ଅ—ହୋଇ ବିକେଶ ସଜଟ ମୁଣ୍ଡୀ ଧୂତ ।
ରକ୍ତାମ୍ବର ଦିଶି ବହୁବିଧରେ ସତ ।
ପାମର ଚାହିଁଣ ମଧ୍ୟ ନ ଚାହେଁ ।
ଉଦର ନିମନ୍ତେ ବହୁ ବେଶ ବହେ । ୧୫ ।

ମୂ—ଅଙ୍ଗଂ ଗଳିତଂ ପଳିତଂ ମୁଣ୍ଡଂ । ଦଶନବିହୀନଂ ଜାତଂ ତୁଣ୍ଡଂ ।
ବୃଦ୍ଧୋ ଯାତି ଗୃହୀତ୍ୱା ଦଣ୍ଡଂ । ତଦପି ନ ମୁଞ୍ଚତ୍ୟାଶାପିଣ୍ଡଂ । ୧୬ ।

ଅ—ଗଳିତାଙ୍ଗକରେ ମୁଣ୍ଡପଳିତରେ ।
ବିଗତରଦନବିମୁଖରେ ଅକରେ ।
ଦଣ୍ଡ ଧରି ବୁଢ଼ା ଗମିଲେ ହେଲେ ।
ଆଶାତ୍ୟାଗକୁ ନ କରେ ଜା ତଳେ । ୧୬ ।

ମୂ—ଅଗ୍ରେ ବହ୍ନିଃ ପୃଷ୍ଠେ ଭାନୁଃ । ରାତ୍ରୌ ଚିବୁକସମର୍ପିତଜାନୁଃ ।
କରତଳଭିକ୍ଷସ୍ତରୁତଳବାସ-ସ୍ତଦପି ନ ମୁଞ୍ଚତ୍ୟାଶାପାଶଃ । ୧୭ ।

ଅ—ପାବକ ଅଗ୍ରେ ଭାସ୍କର ପଛରେ ।
ଚିବୁକସମର୍ପିତଜାନୁ ରଜନୀରେ ।
ଭିକ୍ଷା କରରେ ବାସ ତରୁତଳେ ।
ଆଶା ପାଶ ତଥାପି ନ ନିକଳେ । ୧୭ ।

ମୂ—କୁରୁତେ ଗଙ୍ଗାସାଗରଗମନଂ । ବ୍ରତପରିପାଳନ ମଥବା ଦାନଂ ।
ଜ୍ଞାନବିହୀନଃ ସର୍ବମତେନ । ମୁକ୍ତିଂ ନ ଭଜତି ଜନ୍ମଶତେନ । ୧୮ ।

ଅ—ଗଙ୍ଗାବ୍ଧିଗମନ ସୁବ୍ରତ ପାଳନ ।
ଅଥବା ଦାନାଦି କଲେହେଁ ଜନ ।
ଜ୍ଞାନ ବିହୀନେ କୌଣସି ମତରେ ।
ମୁକ୍ତି ନ ପାଏ ସମ୍ଭବଶତରେ । ୧୮ ।

ମୂ—ସୁରମନ୍ଦିରତରୁମୂଳନିବାସଃ । ଶଯ୍ୟା ଭୂତଳମଜିନଂ ବାସଃ ।
ସର୍ବପରିଗ୍ରହ ଭୋଗତ୍ୟାଗଃ । କସ୍ୟ ସୁଖଂ ନ କରୋତି ବିରାଗଃ । ୧୯ ।

ଅ—ଦେବାଳୟ ଭୂରୁହତଳ ମନ୍ଦିର ।
ଭୂତଳ ଶଯ୍ୟା ମୃଗଚର୍ମାମ୍ବର ।
ସକଳପରିଗ୍ରହ ଭୋଗବିବର୍ଜନ ।
ବୈରାଗ୍ୟ କୁ ନ କରେ କା ତୋଷଣ ? । ୧୯ ।

ମୂ—ଯୋଗରତୋ ବା ଭୋଗରତୋ ବା । ସଙ୍ଗରତୋ ବା ସଙ୍ଗବିହୀନଃ ।
ଯସ୍ୟ ବ୍ରହ୍ମଣି ରମତେ ଚିତ୍ତଂ । ନନ୍ଦତି ନନ୍ଦତି ନନ୍ଦତ୍ୟେବ । ୨୦ ।

ଅ—ଯୋଗୀ କିଂବା ଭୋଗୀ ସଙ୍ଗୀ ।
କିଂବା କେବଳ ସଙ୍ଗତ୍ୟାଗୀ ।
ରମଇ ପରଂବ୍ରହ୍ମେ ଯା ମାନସ ।
ସେ ଲଭଇଟି ଆନନ୍ଦ ସୁଧାରସ । ୨୦ ।

ମୂ—ଭଗବଦ୍‌ଗୀତା କିଞ୍ଚିଦଧୀତା । ଗଙ୍ଗାଜଲଲବକଣିକା ପୀତା ।
ସକୃଦପି ଯେନ ମୁରାରିସମର୍ଚ୍ଚା । କ୍ରିୟତେ ତସ୍ୟ ଯମେନ ନ ଚର୍ଚ୍ଚା । ୨୧ ।

ଅ—ଭଗବଦ୍‌ଗୀତା କିଞ୍ଚିତ୍ପାଠକୁ ।
ଗଙ୍ଗାଜୀବନକଣିକାପାନକୁ ।
ଶ୍ରୀଶାର୍ଚ୍ଚାକୁ ଥରେ ଯେହୁ କରେ ।
ତା ଚର୍ଚ୍ଚାକୁ ଯମାଧିପ ନ କରେ । ୨୧ ।

ମୂ—ପୁନରପି ଜନନଂ ପୁନରପି ମରଣଂ । ପୁନରପି ଜନନୀଜଠରେ ଶୟନଂ ।
ଇହ ସଂସାରେ ବହୁଦୁସ୍ତାରେ । କୃପୟା ପାରେ ପାହି ମୁରାରେ । ୨୨ ।

ଅ—ପୁଣି ପୁଣି ସମ୍ଭବ ପୁଣି ପୁଣି ନାଶନ ।
ପୁଣି ଜନନୀଜଠରେ ଉପବେଶନ ।
ବହୁ ଦୁସ୍ତାରେ ଏ ସଂସାରେ ।
ଶ୍ରୀଧର ! ରଖ ମୋତେ କରୁଣାରେ । ୨୨ ।

ମୂ—ରଥ୍ୟାକର୍ପଟବିରଚିତକନ୍ଥଃ । ପୁଣ୍ୟାପୁଣ୍ୟବିବର୍ଜ୍ଜିତପନ୍ଥଃ ।
ଯୋଗୀ ଯୋଗନିଯୋଜିତଚିତ୍ତୋ । ରମତେ ବାଲୋନ୍ମତ୍ତବଦେବ । ୨୩ ।

ଅ—ସରଣୀକର୍ପଟକୃତକନ୍ଥାରେ ।
ପୁଣ୍ୟାପୁଣ୍ୟରହିତପନ୍ଥାରେ ।
ଯୋଗୀ ଯୋଗାର୍ପିତମାନସରେ ।
କ୍ରୀଡ଼ଇ ବାଳକ ବାତୁଳବଧରେ । ୨୩ ।

ମୂ—କସ୍ତ୍ୱଂ କୋଽହଂ କୁତ ଆୟାତଃ । କା ମେ ଜନନୀ କୋ ମେ ତାତଃ ।
ଇତି ପରିଭାବିତ ନିଜସଂସାରଃ । ସର୍ବଂ ତ୍ୟକ୍ତ୍ୱା ସ୍ୱପ୍ନବିଚାରଃ । ୨୪ ।

ଅ—କେ ତୁମ୍ଭ କେ ମୁହିଁ କାହିଁକି ଆଗତ ।
କେ ମୋ ମାତା କେ ମୋ ତାତ ତ ।
ଏପରି ଭାବିଣ ନିଜ ସଂସାରକୁ ।
ସ୍ୱପ୍ନଗତକୁ ପରି ଛାଡ଼ ସମସ୍ତକୁ †। ୨୫ ।

ମୂ—ତ୍ୱୟି ମୟି ସର୍ବତ୍ରୈକୋ ବିଷ୍ଣୁ-ର୍ବ୍ୟର୍ଥଂ କୁପ୍ୟସି ମୟ୍ୟସହିଷ୍ଣୁଃ ।
ଭବ ସମଚିତ୍ତଃ ସର୍ବତ୍ର ତ୍ୱଂ । ବାଞ୍ଛସ୍ୟଚିରାଦ୍ୟଦି ବିଷ୍ଣୁତ୍ୱଂ । ୨୫ ।

ଅ—ତୋଠାରେ ମୋଠାରେ ସବୁଠାରେ ବିଷ୍ଣୁ ହି ।
ଏଣୁ ତୁଚ୍ଛେ ମୋତେ କ୍ରୁଦ୍ଧ ନାହିଁ ହି ।
ହଂସକ ! ବନ୍ଦ ସର୍ବତ୍ର ସମଦ୍ୱିକୁ ।
ଯଦି ବାଞ୍ଛ ତବେ ଗୋବିନ୍ଦଙ୍କୁ । ୨୫ ।

ମୂ—ଶତ୍ରୌ ମିତ୍ରେ ପୁତ୍ରେ ବନ୍ଧୌ । ମା କୁରୁ ଯତ୍ନଂ କଲହେ ସନ୍ଧୌ ।
ସର୍ବସ୍ମିନ୍ନପି ପଶ୍ୟାତ୍ମାନଂ । ସର୍ବତ୍ରୋତ୍ସୃଜ ଭେଦଜ୍ଞାନଂ । ୨୬ ।

ଅ—ଅରିରେ ମିତ୍ରେ ପୁତ୍ରେ ସ୍ୱଜନେ ।
ରସ ନା କଲହର ସନ୍ଧିର ଯତନେ ।
ଆତ୍ମାକୁ ଅନାଇଣ ସବୁଠାରେ ।
ଭେଦଜ୍ଞାନ ନ କର କୋଠାରେ । ୨୬ ।

ମୂ—କାମଂ କ୍ରୋଧଂ ଲୋଭଂ ମୋହଂ । ତ୍ୟକ୍ତ୍ୱାତ୍ମାନଂ ପଶ୍ୟ ହିମୋହଂ ।
ଆତ୍ମଜ୍ଞାନବିହୀନା ମୂଢ଼ା-ସ୍ତେ ପଚ୍ୟନ୍ତେ ନରକନିଗୂଢ଼ାଃ । ୨୭ ।

ଅ—ଲୋଭକୁ ମୋହକୁ କାମକ୍ରୋଧଙ୍କୁ ତୁ ।
ଛାଡ଼ି ଅନାଅ ବିମୋହାତ୍ମାକୁ ତୁ ।
ଆତ୍ମଜ୍ଞାନ ବିବର୍ଜ୍ଜିତ ମୂଢ଼େ ।
ଯାଇ ପଡ଼ନ୍ତି ନରକରେ ଗାଢ଼େ । ୨୭ ।

---

† ପାଠାନ୍ତର—ସ୍ୱପ୍ନଗତ ପରି ଛାଡ଼ ସମସ୍ତକୁ ।

ମୂ—ଗେୟଂ ଗୀତାନାମ ସହସ୍ରଂ । ଧ୍ୟେୟଂ ଶ୍ରୀପତିରୂପମଜସ୍ରଂ ।
ନେୟଂ ସଜ୍ଜନସଙ୍ଗତମନିଶଂ । ଦେୟଂ ଦୀନଜନାୟ ଚ ବିତ୍ତଂ । ୨୮ ।

ଅ—ଗୀତା ନାମ ସହସ୍ର ପଢ଼ ଜନେ ।
ଧ୍ୟାନ କର ସଦା ହରି ରୂପ ମନେ ।
କାଳକୁ କାଟ ସୁଜନସଙ୍ଗତରେ ।
ଧନ ଦିଅ ଦୀନଜନଙ୍କୁ ସୁମତରେ । ୨୮ ।

ମୂ—ଗୁରୁଚରଣାମ୍ବୁଜନିର୍ଭରଭକ୍ତଃ । ସଂସାରାଦଚିରାଦ୍ଭବ ମୁକ୍ତଃ ।
ଇନ୍ଦ୍ରିୟମାନସନିୟମାଦେବଂ । ଦ୍ରକ୍ଷ୍ୟସି ନିଜହୃଦୟସ୍ଥଂ ଦେବଂ । ୨୯ ।

ଅ—କର ଗୁରୁପଦକଞ୍ଜରେ ସ୍ଥିରଭକ୍ତିକି ।
ସଂସାରରୁ ଲଭ ଅଚିରେ ମୁକ୍ତିକି ।
ଇନ୍ଦ୍ରିୟମାନସନିୟମେ ହୃତ୍‌ସ୍ଥିତ ।
ଦେବଙ୍କୁ ଦେଖିବୁ ନିଶ୍ଚୟ ଏହି ତ । ୨୯ ।

ମୂ—ମୂଢ଼ଃ କଶ୍ଚନ ବୈୟାକରଣୋ । ଡୁକୃଞ୍‌କରଣାଧ୍ୟୟନଧୁରୀଣଃ ।
ଶ୍ରୀମଚ୍ଛଙ୍କରଭଗବଚ୍ଛିଷ୍ୟୈ-ର୍ବୋଧିତ ଆସୀଚ୍ଛୋଧିତକରଣଃ । ୩୦ ।

ଅ—ବୈୟାକରଣ ଡୁକୃଞ୍‌କରଣେ ରତ ।
କୌଣସି ପାମର ଲଭିଲା ଜ୍ଞାନ ତ ।
ଶ୍ରୀଶଙ୍କରଗୁରୁଶିଷ୍ୟାବଳୀରେ ।
ବୋଧିତ ହୋଇ କୃପାରେ ଜଗରେ । ୩୦ ।

ଶ୍ରୀମଚ୍ଛଙ୍କରଶଙ୍କରଗଣିରେ ।
ରଚିତା ମଞ୍ଜରିକାଳିକୁ ସୁଖରେ ।
ଉତ୍କଳରେ ଅନୁବାଦ କଲା ବିର ।
ବିକ୍ରମବର୍ମା—ଶ୍ରୀହରି କିଙ୍କର ॥

ସମ୍ପୂର୍ଣ୍ଣ

( "ସାଇଁ ଲୋ ସାଇଁ" ଗୀତ ବୃତ୍ତ )

ଜୀବ ରେ ମୂଢ଼ ଜୀବ । ଛାଡ଼େ ମମକାର ଭାବ । ପଦ ।

ଏ ଘଟକୁ ଛାଡ଼ । ଧନେ ଯିବୁ ଉଡ଼ ।

ତେଣୁ ବୋଲଉ ତୁ ଜୀବ । ଜୀବରେ ।

କିଏ ତୋର ମାତା । କିଏ ତୋର ପିତା ।

କିଏ ତୋର ବନ୍ଧୁ ମିତ ?

କେ ତୋର ମାଇପ । କେ ତୋର ମିଣପ

କେ ତୋହର ସୁତା ସୁତ ? ୧ ।

ନିଜ ଶରୀରକୁ । ଭଲେ ପାଳିବାକୁ ।

ନାନା ଦ୍ରବ୍ୟ ସମ୍ପାଦନ ।

କରିବା ନିମିତ୍ତ । ତୁହି ଅକୁଳିତ ।

ସେ ହେବ ମାଟିରେ ଲୀନ । ୨ ।

ପାଇ ନାନା କ୍ଳେଶ । ଧନ ଧାନ୍ୟ ବାସ

ସଞ୍ଚିଅଛୁ ତୋର ଘରେ ।

ତୁହି ଯିବା ବେଳେ । କୁଠାଟିଏ ହେଲେ ।

ଯିବ କି ତୋର ସଙ୍ଗରେ ? ୩ ।

ତୁହି ଗଲେ ତୋର । ପ୍ରିୟ ପରିବାର ।

ବାରଦିନ ଯାଏ ତୋତେ ।

ମନେ ରଖି ଥିବେ । ପରେ ପାଶୋରିବେ ।

ଏହା ଭରଥା ତୋ ଚିତ୍ତେ । ୪ ।

ତୋର ପ୍ରିୟଜନେ । ତୋ ଦେହ ଶ୍ମଶାନେ ।

ନେଇ ପୁରକୁ ଫେରିବେ ॥

ତୋର ଅଚରିତ । ସୁକୃତ ଦୁଷ୍କୃତ ।

ମାତ୍ର ତୋ ସାଥିରେ ଯିବେ । ୫ ।

ପୁଣ୍ୟ ଉପକାର । ପାପ ଅପକାର ।
ଏତେ ଜାଣି ପ୍ରାଣୀଠାରେ ।
ଆଚରଣ କରେ । ତତ୍ଫଳ ନିକରେ ।
ଭୋଗ କରବୁ ତୁ ପରେ । ୬ ।

ଶ୍ରୀବିକ୍ରମଦେବ । ବନ୍ଦତ ମାଧବ ।
ଚରଣଜଳଜଧ୍ୟାନେ ।
ଭବାବ୍ଧିରେ ତୁହ୍ନ । ପୁଣି ମଗ୍ନ ନୋହ୍ନ ।
ନିତ୍ୟସୁଖୀ ହେବୁ ଜାଣେ । ୭ ।

# ପୁରୁଷୋତ୍ତମ ଚାତୁରୀ

ଅଧୁନା କୋଳାଲ ପ୍ରଦେଶାନ୍ତର୍ଗତ ଜୟପୁର ରାଜ୍ୟର ପ୍ରାଚୀନ ରାଜଧାନୀ ନନ୍ଦପୁର । ସେ ପୁରବର ରାଜଶେଖର ବିରାଜିତ ହୋଇ କୈଳାସ ପରି, ବେଦଚତୁଷ୍ଟୟ ଭାସୁର ହୋଇ ଚତୁରାନନଭୁବନ ପରି, ବିବୁଧନିବାସ ହୋଇ ତ୍ରିଦିବ ପରି, ପୁଣ୍ୟଜନାଗାର ହୋଇ ଲଙ୍କାପୁର ପରି, ବସୁପୂର୍ଣ୍ଣ ହୋଇ ସୂର୍ଯ୍ୟମଣ୍ଡଳ ପରି, କୁବଳୟହୃଦ୍ୟ ହୋଇ ଚନ୍ଦ୍ରମଣ୍ଡଳ ପରି, ବିଦ୍ୟାଧର ଯୁକ୍ତ ହୋଇ ହିମାଚଳ ପରି, ହରି ଲଳିତ ବଚନ ଲଳିତ ହୋଇ କମଳାହୃଦୟକମଳ ପରି, ଶିଖିଗମନ ଯୁତ ହୋଇ ସୁରସୈନ୍ୟ ପରି, ପରଶୁକଳିତ ହୋଇ ଭୃଗୁରାମ କର ପରି ଏବଂ ପ୍ରବାଳଭାସିତ ହୋଇ ଭାରତୀ ହସ୍ତ ପରି ଦର୍ଶକ ମନୋହର ହୋଇଥିଲା । ଦ୍ୱାତ୍ରିଂଶ ସୋପାନ ସହିତ ଏବଂ ଶିଳାନିର୍ମିତ ରାଜସିଂହାସନ ଏବଂ କେତୋଟି ଦେବତାବିଗ୍ରହ ଅଦ୍ୟାବଧି ସେ ସ୍ଥାନରେ ବିଦ୍ୟମାନ ହୋଇଥିଲେ ହେଁ, ମୋ ପ୍ରପିତାମହ—ମହାରାଜ ଶ୍ରୀ ରାମଚନ୍ଦ୍ରଦେବ ତାକୁ ତ୍ୟାଗ କରି ଜୟପୁରକୁ ରାଜଧାନୀ କଲା କାରଣରୁ ସେ ପତ୍ତନ ପଲ୍ଲୀରୂପ ଧାରଣ କରିଅଛି ।

ବହୁକାଳ ପୂର୍ବେ ନନ୍ଦପୁରରେ ନାରାୟଣ ନାମକ ଜନୈକ ବୈଶ୍ୟ ପ୍ରବେଶି ସେଠା ଅଧିବାସୀ ହୋଇ ନାନାବିଧ ବ୍ୟବସାୟ କରି ବହୁଧନ ଅର୍ଜିଲା । ତାହାର ପତ୍ନୀ ସୁଶୀଳା । ସେ ଦମ୍ପତି ପରସ୍ପର ପ୍ରୀତିଯୁକ୍ତ ହୋଇ ରାଜଭୋଗୋପଭୋଗ ଭୋଗ କରି କାଳଯାପନ କରୁଥିଲେ । କେତେକାଳ ପରେ ତାହାଙ୍କର ନନ୍ଦନଟିଏ ଜନ୍ମିଲା । ଭବନ୍ତେ ସନ୍ତାନ—ନବଦମ୍ପତି ପ୍ରଣୟ-ସୁନ୍ଦରାରାମଫଳିତ ମଧୁର ଫଳ, ଦମ୍ପତି ପ୍ରଣୟବାହିନୀ ଯୁଗଳଦର୍ପଣ ବିମ୍ବ ଉଚ୍ଛଳନ୍ତେ ତହିଁ ନିକଳିବା ସୁତଳ ନାଳ; ଏବଂ ଦମ୍ପତି ପ୍ରଶଂସାର୍ହ ପ୍ରଣୟନିଦର୍ଶନ ସ୍ଥିର ଚିହ୍ନ । ସେ ନନ୍ଦନର ନାମ ମଧୁସୂଦନ । ତାହାର ଲାଳନପାଳନ ଭଲରୂପେ କରାଯାଉଥିଲା ବୋଲି କହିବା ବାହୁଲ୍ୟ ମାତ୍ର । କିନ୍ତୁ ଦୁର୍ଦୈବବଶରୁ ସେ ତୃତୀୟ ବର୍ଷ ବୟସରେ ମାତୃକୋଡ଼ ସୁଖରୁ ବଞ୍ଚିତ ହେଲା । ସୁଶୀଳା ପତିପୁତ୍ରଙ୍କୁ ଦୁଃଖସାଗରରେ ମଗ୍ନ କରି ପରଲୋକ-

ବାସିନୀ ହେଲା । ନାରାୟଣ ଗୃହିଣୀ ବିରହିଆ ହୋଇଥିଲେହେଁ, ବିମାତା ଦ୍ୱାରା ନିଜ ତନୁଜର ସୁଖରସ କ୍ଷୁଣ୍ଣ ହେବ ବୋଲି ଭାବି ଦ୍ୱିତୀୟ ଦାର ଗ୍ରହଣ ନ କରି ନିଜେ ଜନନୀ ଜନକରୂପେ ପୁତ୍ରକୁ ପ୍ରତିପାଳିଲା । ମଧୁସୂଦନ ସବିଦ୍ୟ ଏବଂ ଯୁବକ ହୁଅନ୍ତେ, ତାହାକୁ ନାରାୟଣ ସୁନ୍ଦରୀ ନାମ୍ନୀ ସୁନ୍ଦର କନ୍ୟାର କରଗ୍ରହଣ କରାଇଲା । କେତୋଟି ବର୍ଷ ପରେ ତାହାର ପୁରୁଷୋତ୍ତମ ନାମକ ପୌତ୍ର ଲାଭ ହୁଅନ୍ତେ, ସେ ପିତାମହ ହେଲା ।

ସମୟ ସହିତରେ ବୟସ ଅତୀତ ହୁଏ । ନାରାୟଣ ତୃତୀୟାବସ୍ଥାରେ ପ୍ରବେଶନ୍ତେ ତାହାର କେଶ କାଶକୁସୁମ ସଦୃଶ ହେଲା । ଦନ୍ତହୀନ ତୁଣ୍ଡରୁ ଲାଳ ପ୍ରସରିଲା । ତେଜୋହୀନ ନୟନଯୁଗଳର ଦୃଷ୍ଟି ମନ୍ଦ ହେଲା । ଗାତ୍ର ବାତବଳିତ କ୍ଷୁଣ୍ଣପତ୍ର ପରି କମ୍ପିଲା । ଚର୍ମ୍ମ କ୍ଷୁଣ୍ଣ ଖର୍ଜୁର ଫଳାକୃତିକି ଧାରଣ କଲା ଏବଂ ସେ ଦଣ୍ଡଧାରୀ ହେବାକୁ ବାଧ୍ୟ ହେଲା । ଅତଏବ ସେ ଜରାଜର୍ଜ୍ଜରିତ ହୋଇ ସକଳ ବ୍ୟବସାୟ ତନୟ ହସ୍ତରେ ସମର୍ପଣ କଲା ।

ମଧୁସୂଦନ କାର୍ଯ୍ୟଦକ୍ଷ, କିନ୍ତୁ ଭାର୍ଯ୍ୟାବଶୀଭୂତ । କାନ୍ତା କାଟିଲା ଗାରକୁ ଡେଇଁ ପାରେ ନାହିଁ । ସୁନ୍ଦରୀ ଲବ୍ଧା, ସ୍ୱାର୍ଥଯୁକ୍ତା ଏବଂ ହିଂସାପୂର୍ଣ୍ଣ-ହୃଦୟା, ତାହାର ପ୍ରରୋଚନାରୁ ମଧୁସୂଦନ ଜନକଙ୍କୁ ସ୍ୱୀୟ ସୌଧର ପଛେ ଥିଲା ଗୋଟିଏ ଛପର ଘରରେ ରଖାଇ ଭାତ ଖାଇବା ପାଇଁ ଗୋଟିଏ ସରା, ପାଣି ପିଇବା ପାଇଁ ଗୋଟିଏ କଳସୀ, ପିନ୍ଧିବା ପାଇଁ ମୋଟା ସୂତା ଯଥା ଏବଂ ଶୋଇବା ପାଇଁ ଗୋଟିଏ ମସିଣା ଏବଂ ଗୋଟିଏ କନ୍ଥା ଦେଇ ତାହା ହାତରେ ଅହରହ ଛୋଟ ଦଉଡ଼ି ପ୍ରସ୍ତୁତ କରାଏ । ନାରାୟଣ ଅପରାହ୍ନ ସମୟରେ ସରା ଧରି ରନ୍ଧନ ସଦନ ସମୀପକୁ ଗଲେ ସୁନ୍ଦରୀ ସେ ସରାରେ କେବଳ ଲବଣ ମିଶ୍ରିତାନ୍ନକୁ ମାତ୍ର ଦିଏ ।

ଯେଉଁ ବ୍ୟକ୍ତିର ତୁଣ୍ଡ ରୌପ୍ୟପାତ୍ରଗ୍ରାତରେ ଚତୁର୍ବିଧାହାର ଭୋଜନ କରୁଥିଲା, ଅପଘନ ସ୍ପିନ ବସନ ପରିଧାନ କରି ହଂସତୂଳିକା-ତଳ୍ପରେ ଶୟନ କରୁଥିଲା; ଲୋଚନ କେବେ କେବେ ହର୍ଷବାଷ୍ପରେ ମାତ୍ର ଅର୍ଦ୍ର ହେଉଥିଲା, ଦୈବଦୁର୍ବିପାକ ବଶତଃ ସେ ତୁଣ୍ଡ ସରାରେ ଲୁଣ ଭାତ ମାତ୍ର ଖାଇବାକୁ, ଅପଘନ ମୋଟା ଖଦ୍ଦର ପିନ୍ଧି କନ୍ଥାରେ ଶୋଇବାକୁ ଏବଂ ଲୋଚନ ଲୋତକକୁ ସଦା ଗଡ଼ାଇବାକୁ ବାଧ୍ୟ ।

ପୁରୁଷୋତ୍ତମ ବାଳକ ହୋଇଥିଲେହେଁ, ଧର୍ମପରାୟଣ ହେଲା ହେତୁରୁ ନିଜ ପିତାମହଙ୍କୁ କରାଯାଉଥିଲା ଅନ୍ୟାୟ ଏବଂ ଅତ୍ୟାଚାର ଦେଖି, ସେ ମନରେ ଦୁଃଖିତ ହୁଏ । କିନ୍ତୁ ଜନନୀ ଜନକଙ୍କୁ ଡର କରୁଥିବାରୁ କହେ ନାହିଁ । ତଥାପି ପ୍ରତ୍ୟେକ ଦିନ କେତେକ ଘଣ୍ଟା ଜେଜେବାପା ପାଖରେ ବସି ନିଜ ଲଳିତ ବଚନ ଦ୍ୱାରା ବୁଢ଼ାର ମନୋରଞ୍ଜନ କରେ । ବୋଧହୁଏ ସେତିକି ସନ୍ତୁଷ୍ଟି ହେଲେ ଲବ୍ଧ ନୋହିଥିଲେ ବୁଢ଼ାର ଅନ୍ତ୍ୟେଷ୍ଟି କର୍ମ ସମାପ୍ତ ହୋଇଥାନ୍ତା ।

ଏପରି କେତେକ ବର୍ଷ ସହିତରେ ପୁରୁଷୋତ୍ତମର ପୌଗଣ୍ଡ ବିତିଗଲା । ଏକଦାଦିନେ ସେ ପିତାମହର ଦୁରବସ୍ଥା ଦୂରୀକରଣସାଧନକୁ ଭାବି ମନରେ ସ୍ଥିର କରି ତତ୍ସମୀପବର୍ତ୍ତୀ ହୁଅନ୍ତେ, ଅଧ୍ୟକଥିତ ବିଧିରେ ସେ ଉଭୟଙ୍କର କଥୋପକଥନ ପ୍ରବର୍ତ୍ତିଲା ।

•

ପୁରୁ—ବାପା ! ତୁମର ଦଶା ଦେଖି ମୁଁ ଦୁଃଖୀ । ଆମେ ରୁପା ବାସନରେ ଖାଉଛୁଁ, ତୁମେ ସରାରେ ଖାଉଛ ; ଆମେ ପଲଙ୍କରେ ଶୋଉଛୁ; ତୁମେ କନ୍ଥାରେ ଶୋଉଛ । ଆମେ ପାଟପଟନୀ ପିନ୍ଧୁଛୁ, ତୁମେ ମୋଟା ମଳିଆ ଖଦି ପିନ୍ଧୁଛ । ମଧ୍ୟ ଜପାମାଳି ଗଡ଼ାଇବା ବଦଳରେ କ୍ଷୋଟ ଦଉଡ଼ି ତିଆର କରୁଛ ।

ନାତି—ବାବୁ ! ସକଳ ସମ୍ପତ୍ତି ମୁଁ ସମ୍ପାଦିଲି । ବୁଢ଼ା ହୋଇ ସେ ସବୁ ତୋ ନନାର ହାତରେ ସମର୍ପିଲି । ଏବେ ମୁଣ୍ଡାଏ ଲୁଣଭାତ ଛଡ଼ା ଟିକିଏ ତିଅଣ ସୁଦ୍ଧା ମୋ ଜିଭ ଚାଖି ପାରୁ ନାହିଁ । ମୁଁ ଖାଇ ଥିଆଳକୁ ଲିପି ସରା-କଳସୀ ଧୋଇ ରଖିବାକୁ ବାଧ୍ୟ ହେଉଛୁଁ । ସେ ଦାଉଟି ଭାଗି ଗଲେ ବୋଧହୁଏ—ତଳେ ଭାତ ଖାଇ ଅଞ୍ଜୁଳିରେ ପାଣି ପିଇବାକୁ ହେବ । ପୁରୁ ! ଦୁଃଖ କର ନା । ମୁଁ ପୂର୍ବଜନ୍ମରେ କଲା କୁକର୍ମ ଫଳ ଭୁଞ୍ଜୁଛି ।

ପୁରୁ—ଏସବୁ ତୁମ୍ଭ ଦୋଷ ନୁହେଁ, ମୋ ବହୁର ଦୋଷ-ନନାର ଦୋଷ ।

ନାତି—ବାବୁ ! ତାଙ୍କୁ ନିନ୍ଦା କର ନା । ଜନ୍ତୁ କଲା କର୍ମଫଳ ନିଶ୍ଚେ ଭୋଗେ ।

ପୁରୁ—ବାପା ! ମୁଁ କହିବା ପରି ତୁମେ କର; ତୁମ କଷ୍ଟ ଯିବ ।

ନାରା—ତାହାହେଲେ, ଅବଶ୍ୟ କରିବି । "ଯୁକ୍ତିଯୁକ୍ତ ବଚୋଗ୍ରାହ୍ୟଂ ବାଲାଦପି ସୁଭାଷିତଂ ।"

ପୁରୁ—ତୁମେ ଭାତ ପାଇଁ ସରା ଧରି ରନ୍ଧାଘରଠାକୁ ଥରଥର ଯାଉଚ ତା । ବୋହୂ-ନନା ଦୁହେଁ ସେଠାରେ ଥିବା ସମୟରେ ତଳେ ପଡ଼ିବା ମାତ୍ରେ ଭାଗିଯିବା ପରି ସରାକୁ ହାତରୁ ଖସାଇ ଦିଅ । ମୁଁ ମଧ୍ୟ ସେଠାରେ ଥିବି ।

ନାରା—ନା—ବାବୁ ! ତାହା କରି ପାରିବି ନାହିଁ । ସରା ଭାଗିଲେ ତୋ ବୋହୂ ମୋ ମେରୁହାଡ଼ ଭାଙ୍ଗିବ । ତୁହି ମୋ ପକ୍ଷରେ ପଦେ ଅଧେ କହିଲେ ଗାଳି ଖାଇବୁ ।

ପୁରୁ—ଡର ନାହିଁ, ମୁଁ କହିଲା ପରି କଲେ, ତୁମ କଷ୍ଟ ତୁଟିଯିବ ।

ତତ୍ପର ଦିନେ ନାରାୟଣ ନିଜ ପୌତ୍ରର ଉପଦେଶାନୁସାରେ କଲା । ପୁଅ, ବୋହୂ ଏବଂ ନାତିଙ୍କ ଆଗରେ ସରା ତଳେ ପଡ଼ି ଖଣ୍ଡ ଖଣ୍ଡ ହେଲା । ତାହା ଦେଖି ପୁରୁଷୋତ୍ତମ ଅତ୍ୟନ୍ତ କୁପିତ ହୋଇ ଏପରି ରଡ଼ି ଛାଡ଼ିଲା— ଏ ବୁଢ଼ା—ହଡ଼ା ! କି କାମ କଲୁ ? ତୋ ଆଖି ତାଳୁକୁ ଚଢ଼ିଲା କି ? ଆମ ଘରର ପ୍ରଥାକୁ ପଣ୍ଡ କରିଦେଲୁ । ପେଟେ ଖାଉଛୁ, ହାତେ ବଳ ନାହିଁ କି ? ସୁନ୍ଦର ସରାଟିକି ପିଙ୍ଗି ଭାଙ୍ଗିଲୁ । ସେ ସରା ରହି କେତେ କାଳ ହେଲା ? ଆଉ କେତେକାଳ ଯାଏ ରହନ୍ତା ? ତାହା ତୋହର ଜଣା ନାହିଁକି ? ତୁ ଖାଉଥିବା ସରାରେ ତୋ ପୁଅ ଖାଇବ ବୋଲି ଜାଣି ନାହୁଁ କି ? ଏଣିକି ନନା କାହିଁରେ ଖାଇବ ?

ନିଜ ତନୁଜର ବଚନଗଣ ଶ୍ରବଣରେ ପ୍ରବେଶନ୍ତେ ମଧୁସୂଦନର ଜ୍ଞାନନୟନ ଉନ୍ମୀଳିତ ହେଲା । ସ୍ୱକୀୟ ଦୋଷ ଦିଶିଲା । ସେ ପଶ୍ଚାତ୍ତପ୍ତ ହୋଇ ସୁନ୍ଦରୀଙ୍କି ସମ୍ବୋଧନ କରି ଏକଂବଧରେ କହିଲା—ପୁଅର ବଚନଚୟକୁ ଶୁଣିଲ ତ ? ଶାସ୍ତ୍ର ମଧ୍ୟ କହୁଛି—"ଅବଶ୍ୟମନୁଭୋକ୍ତବ୍ୟଂ କୃତଂ କର୍ମ ଶୁଭାଶୁଭଂ ।" ବୁଢ଼ାଙ୍କୁ ଯାହା କରିବା, ଅମ୍ଭେ ତାହା ଭୋଗିବା, ଏହା ଧ୍ରୁବ ।

ଅତଏବ ବ୍ରତୀଙ୍କ ପାଳନା ଭଲରୂପେ କରୁଥିବାକୁ ହେବ । ପତି, ପୁତ୍ରଙ୍କ ବଚନ ଶ୍ରବଣ କରି ସୁନ୍ଦରୀର ମନ୍ଦ ବୁଦ୍ଧି ଦୂର ହେଲା । ସେ ଶ୍ୱଶୁରର ସେବା ଶୁଶ୍ରୂଷା ଭଲେ କଲା ।

ନାରାୟଣ ଛିନବସନ ପରିଧାନ କଲା; ରୂପା ବାସନରେ ଦ୍ରବ୍ୟ-ଭୋଜନ ଭୁଞ୍ଜିଲା; ହଂସତୂଳିକାତଳ୍ପରେ ଶୟନ କଲା; ନାତିଙ୍କ ଆଶୀର୍ବାଦ କରି ଜପାମାଳି ଧରି ଶ୍ରୀହରି ନାମ ଜପିଲା । ଇତି ।

ଶ୍ରୀ ବିକ୍ରମଦେବ ବର୍ମା D. L. T. ସାହିତ୍ୟ ସମ୍ରାଟ
ବୈଶାଖ ଓ ଜ୍ୟେଷ୍ଠ......ସନ ୧୩୪୮

---

# ଗୋବରିଆ

ଓଡ଼ିଶାର ଦକ୍ଷିଣ ଭାଗରେ ଜୟପୁରପଟ୍ଟଣ ବିଦ୍ୟମାନ । ତାହା ପୁରାତନ ସଭ୍ୟତାକୁ କ୍ରମେ କ୍ରମେ ଛାଡ଼ି ନବ୍ୟସଭ୍ୟତାକୁ ଗ୍ରହଣ କରିବା ପାଇଁ ଉଦ୍ୟତ ହେଉଅଛି । ତାହାର ନିଦର୍ଶନ ରୂପରେ ଗୋଟିଏ ବିଷୟ କହିଲେ ସହଜରେ ଜଣାଯାଇ ପାରିବ ଯେ ସେଠାରେ ଅନ୍ୟୂନ ପଞ୍ଚବିଂଶତି "କାଫି ହୋଟେଲ" କିମ୍ବା "ଚା ପାନାଳୟ" ସୂର୍ଯ୍ୟୋଦୟ ପୂର୍ବରୁ ରାତି ଦ୍ୱିତୀୟ ପ୍ରହର ପର୍ଯ୍ୟନ୍ତ ଜନାକୀର୍ଣ୍ଣ । ସେ ଆଳୟମାନଙ୍କରେ କେବଳ ପାନର ମାତ୍ର ବ୍ୟବସ୍ଥା କରି ନ ଯାଇ ରାଗୁଆ ବଡ଼ା, ରାଗୁଆ ଚଣା, ଏଣ୍ଡୁରି, ଲୁଣ ଲଙ୍କାମରିଚ ମିଶା ଗହମଖୁଦ ଭାତ, ବିଲାତିଆଳୁ ତିଅଣ ହେବାକାର ବ୍ୟବସ୍ଥା ମଧ୍ୟ କରାଯାଇ ଥାଏ । ସେ ଆଳୟମାନଙ୍କରେ ସ୍ପର୍ଶଦୋଷ କିମ୍ବା ଉଚ୍ଛିଷ୍ଟଦୋଷ ଲେଶମାତ୍ର ହେଲେ ନ ଥିବାରୁ ପ୍ରତ୍ୟେକାଳୟ ପୁରୁଷୋତ୍ତମ କ୍ଷେତ୍ର ବୋଲାଯାଇ ପାରେ । ତଥାପି ସେ ଆଳୟମାନଙ୍କରେ ଧର୍ମକର୍ମନିରତ ଦ୍ୱିଜଙ୍କର ଏବଂ ଗଉଡ଼ଙ୍କର ଦର୍ଶନ ପ୍ରାପ୍ତ ହୁଏ ନାହିଁ ! ଗଉଡ଼ ଜାତିରେ ଏପରି କଡ଼ା ନିୟମ ଅଛି ଯେ ଯେଉଁ ବ୍ୟକ୍ତି ସେ ଆଳୟରେ ପଦାର୍ପଣ କରିବ, ସେ ନିଜ ସମାଜରୁ ବହିଷ୍କୃତ ହେବ । ଏପରି ନିୟମ ବହୁତ ସେ ଜାତିରେ ଅଜଯାଏ ରହିଥିବାରୁ ସେ ଜାତିଜାତିଙ୍କୁ ନବ୍ୟ ସଭ୍ୟମାନେ ମୂର୍ଖ ବୋଲନ୍ତି ।

ସେ ପଞ୍ଚଣରେ ରାମ ମହାନ୍ତି ନାମକ ଗଉଡ଼ ଦୁଃଖେ ସୁଖେ କାଳଯାପନ କରୁଥିଲା । ତାର ଏକମାତ୍ର ପୁତ୍ର । ସେ ନିଜେ ତନୁଜକୁ ଗୋବର୍ଦ୍ଧନଧର ବୋଲି ନାମକରଣ କରିଥିଲେହେଁ, ସେ ବାଳକକୁ ଜନେ ଗୋବରିଆ ବୋଲି ମାତ୍ର ବ୍ୟବହାର କରନ୍ତି । ରାମ ତାର ପୁଅକୁ ପାଠ ଘୋଷାଇବାକୁ ପାଇଁ ତାକୁ ନେଇ ସେ ପଞ୍ଚଣସ୍ଥିତ ପଣ୍ଡିତ ଗୋବିନ୍ଦ ଶତପଥୀଙ୍କୁ ସମର୍ପିଲା । ସେ ବାଳକ ପ୍ରତ୍ୟେକ ଦିନ ଗୁରୁଙ୍କ ଅଗଣା ଝାଡ଼ୁ ଝାଡ଼ାଏ; ଗୋରୁ-ଗୁହାଳ ପୋଛେ; ଗୋରୁଙ୍କୁ କୁଣ୍ଡାପାଣି ଦିଏ; କୁଅରୁ ପାଣି କାଢ଼େ; ଘାସ ଆଣେ; ଗୁରୁପତ୍ନୀଙ୍କ ଆଦେଷ୍ଟ କର୍ମ କରେ; ଗୁରୁଙ୍କଠାରୁ ପାଠ ଶିଖେ; ପ୍ରତ୍ୟେକ ରାତିରେ ଗୁରୁଙ୍କ ପାଦ ସଂବାହନ କରେ; ଗୁରୁ ଶୟନ କଲା ପରେ ପାଠ ଘୋଷି ଶୋଏ । ଏପରି କରି ସେ କେତେ ବର୍ଷରେ ନାମଲିଙ୍ଗାନୁଶାସନର କାଣ୍ଡତ୍ରୟ, ଜ୍ୟୋତିଷ୍ୟପଞ୍ଜିକା ଏବଂ ସାରସ୍ୱତ ବ୍ୟାକରଣ ଶିଖିଲା । ପରେ ପାଠପଢ଼ା ବନ୍ଦ କରି ଗୋଟିଏ କନ୍ୟାର ପାଣିଗ୍ରହଣ କଲା । ତାହାର ଜନନୀଜନକ ପରଲୋକ ଗମନ କଲେ । ତାହା ପଢ଼ାଦ୍ୱାରା ଧନୋପାର୍ଜ୍ଜନ ହୋଇ ପାରିଲା ନାହିଁ । ସେ ବହୁ ସମୟ ପାଠପଢ଼ାରେ କାଟିଥିଲା ହେତୁରୁ କୃଷି କିମ୍ବା ଅନ୍ୟ ବ୍ୟବସାୟ କରିବାକୁ ଅକ୍ଷମ ହେଲା । ଦାରିଦ୍ର୍ୟ ଦିନାଦିନାଭିବର୍ଦ୍ଧିତ ହୋଇ ତାର କ୍ଷୁଧାଜ୍ୱାଳାକୁ ବଢ଼ାଇଲା । ଜୟପୁର ଜନେ ତାକୁ କୌଣସି ପ୍ରକାର ସମାଦର କରନ୍ତି ନାହିଁ । ଗୋବର୍ଦ୍ଧନଧର କିମ୍ବା ଗୋବର୍ଦ୍ଧନ ବୋଲି ନ ଡାକି ଗୋବରିଆ ବୋଲି ମାତ୍ର ଡାକନ୍ତି । ଅତଏବ ତାହା ମନରେ ଜନସମାଜଠାରେ—ମୁଖ୍ୟରେ ଜୟପୁର ରାଜ୍ୟବାସୀଙ୍କଠାରେ—ଅତ୍ୟଧିକ ଘୃଣା ଜନ୍ମିଲା । ପ୍ରକୃତିର ପ୍ରଥମ ସ୍ଥାନକୁ ଅଧିକାର କରିଥିବା ମାନବ ଜ୍ଞାନବାନ୍ ହୋଇଥିଲେହେଁ, କେବେ କେବେ ବିଷ୍ଣୁମାୟାଜାଲରେ ପଡ଼େ । କୁହାଯାଇଛି —

"ଶ୍ଲୋ । ସର୍ପଧୋ ଦ୍ୱିପଦପଶ୍ଚିତସ୍ତେଷୁ ପ୍ରବିସଙ୍ଗଂ ନ ମୁଞ୍ଚତି ।
ସାଙ୍ଗର ଦ୍ୱିପଦପଶ୍ଚିତାସ୍ତେଦ୍ରାକ୍ଷସା ଏବ କେବଲଂ ।"

ସତେ ସେ ପ୍ରତ୍ୟକ୍ଷ ରାକ୍ଷସ ହେଲା; ଏବଂ ଉତ୍କଣ୍ଠିତ ହୋଇ ଧନ ଅର୍ଜିବାକୁ ସିଦ୍ଧ ହେଲା । ତାର ମାନସରେ ମାନବର ଜୀବନ ଓଡ଼ଶର ଜୀବନଠାରୁ ଅଧିକା ପରି ପ୍ରତିଭାସମାନ ହେଲା ।

ସେ ଏକ ରାତିରେ ଭାର୍ଯ୍ୟା ସହିତ ହୋଇ ଜୟପୁର ତ୍ୟାଗ କରି ପ୍ରାୟଶଃ ଷାଠିଏ ମାଇଲ୍ ଗମି ମଲ୍‌କାନଗିରିର ଅରଣ୍ୟାନୀରେ ଗୋଟିଏ କୁଡ଼ିଆ ଗଠନ କରି ତହିଁ ରହି କେତେଜଣ ପାହାଡ଼ିଆ ଖଣ୍ଡଙ୍କୁ ସ୍ୱାଧୀନ କରି ଡ଼କାଏତି ଜୀବିକା ଆରମ୍ଭିଲା । ଯେ ସେ ବାଟରେ ମାଲ୍ ଧେଇଯାଏ, ତାକୁ ସେ ବଧକରି ତାହାର ମାଲ୍ ନିଏ, ଯାହାଠାରେ ମାଲ୍ କିଛି ନ ଥାଏ, ମାଲ୍ ନ ଥିବା ହେତୁ ଦର୍ଶାଇ, ତାକୁ ମଧ୍ୟ ବଧ କରେ । ଏପରି କରି ସେ ପଥିକ-ଭୟଙ୍କର ହେଲା । କିଏ ଜନକ ହୀନ ହୋଇ, କିଏ ଜନନୀ ହୀନ ହୋଇ, କିଏ ପୁତ୍ରହୀନ ହୋଇ, କିଏ ପୁତ୍ରୀହୀନ ହୋଇ, କିଏ ପତ୍ନୀହୀନ ହୋଇ, କିଏ ପତିହୀନା ହୋଇ ଏପରି ଶତଶତ ମାନବେ ତାକୁ ଅନବରତ ଗାଳି ଦିଅନ୍ତି ଏବଂ ଶାପ ବର୍ଷାନ୍ତି । କିନ୍ତୁ ସେମାନେ ତାକୁ ଦବାଇ ପାରନ୍ତି ନାହିଁ, କିମ୍ବା ବଧକରି ପାରନ୍ତି ନାହିଁ ।

ଶ୍ରୀମଚ୍ଚୈତନ୍ୟଦେବଙ୍କ ପାଦପଦ୍ମରଜରେ ଜୟପୁର ପ୍ରଦେଶ ପବିତ୍ରୀକୃତ ହୋଇଥିଲା ସମାଚାର ଅବଗତ ହୋଇ ଚୈତନ୍ୟଚରଣ ଦାସ ନାମକ ବୈଷ୍ଣବ ଗୋଦାବରୀ ନଦୀରେ ସ୍ନାତ ହୋଇ "ମୋଟଗ୍ରାମ" ଦେଇ ଜୟପୁର ପ୍ରଦେଶରେ ପ୍ରବେଶି ଭ୍ରମଣ କରୁଁ କରୁଁ ଗୋବରିଆ ଥିଲା କାନନର ଅନତିଦୂରବର୍ତ୍ତୀ ହୁଅନ୍ତେ, କେତେ ଜଣ ତାଙ୍କୁ କହିଲେ ଯେ, "ଗୋସାଇଁ ! ତୁମ୍ଭେ ସେ ବାଟେ ଯାଅ ନାହିଁ । ସେ ବଣରେ ଜଣେ ପଥିକକଣ୍ଟକ ଅଛି । ତା ଦୃଷ୍ଟିରେ ସାଧୁ ଏବଂ ଅସାଧୁ ସମାନ । ସେ ସମସ୍ତଙ୍କୁ ବଧ କରେ ।" ଏତେ ଶୁଣି ସେ ବୋଇଲା ଯେ "ଚିନ୍ତା କର ନାହିଁ । ବୈଷ୍ଣବ ମରଣକୁ ଡରିବା ଅନୁଚିତ । ଯେଉଁ କୃପାସାଗର କୃପାରେ ଜଗାଇ ଏବଂ ମାଧାଇ ବୈଷ୍ଣବ ହୋଇଥିଲେ, ସେହି କୃପାସାଗର କୃପାରେ ଏ ଦୁଷ୍ଟ ଶିଷ୍ଟ ହୋଇପାରେ ।" ଏତେ କହି ସେ ବୈଷ୍ଣବ ଶ୍ରୀହରି ନାମ କୀର୍ତ୍ତନ କରି କରି ସେ ବନ ସମୀପବର୍ତ୍ତୀ ହୁଅନ୍ତେ, କୀର୍ତ୍ତନଧ୍ୱନି ଶୁଣି ଗୋବରିଆ ଗୋଟିଏ ବଡ଼ ଠେଙ୍ଗା ଧରି ସେ ବୈଷ୍ଣବର ସମ୍ମୁଖୀନ ହୋଇ ଉଚ୍ଚେ ବୋଇଲା ଯେ "ଆରେ—ବୈଷ୍ଣବ ! ତୋଠାରେ ଥିବା ସବୁ ମାଲ୍ ତଳେ ଥୋଇ ମରିବାକୁ ପ୍ରସ୍ତୁତ ହୁଅ ।"

ଚୈତ :—ମୋଠାରେ ପ୍ରେମ ବୋଲିବା ମାଲ୍ ଗୋଟିଏ ମାତ୍ର ଅଛି । ତାହା ଇହରେ ଏବଂ ପରତ୍ରରେ ସୁଖପ୍ରଦ ଅଟେ । ବାବା ! ତୁହି ତାକୁ ଗ୍ରହଣ କରିପାରୁ ।

ଗୋବ ।—ତୋଠାରେ କିଛିହିଁ ନ ଥିବାରୁ ତୋ ମୁଣ୍ଡ ଫଟାଇବି ।

ଚୈତ ।—ମୁଁ ମରଣକୁ ଡରେ ନାହିଁ । ଏ ମାଲ ତୋର ମନୋମତ ହେଉ ନାହିଁ କି ? ଏହାକୁ ଆନ ମାଲ ପରି ପରକୁ ଦେଇ ପାରିବୁ । ସେପରି ଦେଲେହେଁ ନିଃସ୍ୱ ହେବୁ ନାହିଁ ।

ଗୋବ ।—ତୋ ବେଲ୍ ମୋ ଆଗେ ଦେଖା ନା । ମୁଂ ଗୃର ଅକ୍ଷର ପଢ଼ିଅଛି ।

ଚୈତ ।—ତାହାହେଲେ, ଅନ୍ୟୈମ । "ସୁଖତରମାତ୍ରାଧତେ ବିଶେଷଜ୍ଞଃ ।" ବାବା ! ନର ପାଠ ପଢ଼ିବାରେ ଚରିତାର୍ଥ ହୁଏ ନାହିଁ; ତତ୍ତ୍ୱ ଜାଣିବା ଆବଶ୍ୟକ । ଭାବନା କରେ—ତୋର ଏହି ବ୍ୟବସାୟ ହେୟତମ ନୁହେ କି ?

ଗୋବ ।—ମୁଁ ଭଲେ ଭାବି ଏ ବ୍ୟବସାୟକୁ ଅବଲମ୍ବି ଅଛି । ଏହାକୁ ଛାଡ଼ିବି ନାହିଁ । କୁକ୍କୁଟ ଯୁଦ୍ଧକୁ ଆରମ୍ଭିଲେ, ମରିବାଯାଏ ବିରମଇ ନାହିଁ ।

ଚୈତ ।—କୁକ୍କୁଟ ଜ୍ଞାନହୀନ ଜୀବ । ଅତଏବ ସେ ନିଜ ମନରେ ଜନ୍ମିବା ଦ୍ୱେଷକୁ ଛାଡ଼ି ପାରେ ନାହିଁ । କିନ୍ତୁ ତା ଠାରେ ମଧ୍ୟ ନିଷ୍କାମ କର୍ମ ଏବଂ ପରର ଉପକାର - ପରିଲକ୍ଷିତ ହୁଏ । ସେ ନିଷ୍କାମରେ କୂଜନ କରି କୃଷକକୁ ଉଠାଏ; ତଦ୍ଦ୍ୱାରା କୃଷକ ଲାଭ ଲଭେ । ତୁହି ଜ୍ଞାନଯୁକ୍ତ ଜୀବ । ତୋର ମନ ଦ୍ୱେଷ କଳୁଷିତ ନୋହି ପ୍ରେମଯୁତ ହୋଇଥିବା ସମୁଚିତ ।

ଗୋବ ।—ପ୍ରେମ ମୋର ଅଗୋଚର ନୁହେ । ମୋ ମାଇପଠାରେ ଏବଂ ସ୍ୱଜନଙ୍କଠାରେ ଥିବା ପ୍ରେମବଶରୁ ଧନ ସମ୍ପାଦି ତାହାଙ୍କ ଭରଣ-ପୋଷଣ କରିବା ବିହିତ ବୋଲି ଭାବି, ଧନାର୍ଜ୍ଜନ ନିମିତ୍ତ ଇତର ବ୍ୟବସାୟ ମୋର ସାଧ୍ୟାତୀତ ହେଲା ହେତୁରୁ ଏହି ବ୍ୟବସାୟକୁ ଅବଲମ୍ବିଲି ଏହା ହେୟ ହେଲେହେଁ, ମୋର ପ୍ରୟୋଜନୀୟ ।

ଚୈତ । —ମଧ୍ୟାହ୍ନର ପ୍ରଚଣ୍ଡ ଚଣ୍ଡାଂଶୁର ତାପରେ ନାନାସ୍ଥାନ ଭ୍ରମଣ କରି ସମ୍ପାଦିବା ମଧୁକୁ ପରଙ୍କ କରଗତ କରିବା ପରି ତୁମ୍ଭ ବନ୍ଧୁ 'ବାଧା' ସହି ଏହି ଦୁଷ୍କର୍ମବ୍ୟବସାୟଦ୍ୱାରା ସମ୍ପାଦିବା ସମ୍ପଦକୁ ନେଇ ତୋ ଭାର୍ଯ୍ୟାର ଏବଂ ସ୍ୱଜନଙ୍କର ହସ୍ତଗତ କରୁଅଛୁ । ତୁ ତରୁଣ ଏବଂ ବଳବାନ୍ । ଅତଏବ ଏ ଘୋର ବ୍ୟବସାୟ ସୁକର ବୋଲି ଭାବୁଅଛୁ । ତୁ ବୃଦ୍ଧ ହେଲେ ଏ କଠୋର କର୍ମ କରି ପାରିବୁ ନାହିଁ; ମଲେ, ଘୋର ନରକରେ ପଡ଼ିବୁ । ତୋ ଭାର୍ଯ୍ୟା କିମ୍ବା ସ୍ୱଜନେ ତୋ ସାଥି ହେବେ ନାହିଁ; କିମ୍ବା ନରକରୁ ତୋତେ ଉଦ୍ଧାରିବେ ନାହିଁ । ବାବା ! ଭଲେ ଭାବନା କର ।

ଗୋବ । —( କେତେକାଳ ନୀରବ ରହି ) ମହାଶୟ ! ବୋଧହୁଏ ତୁମ୍ଭ ବଚନ ସତ୍ୟ ଏବଂ ଗ୍ରାହ୍ୟ । ଏବେ ମୁଁ କଅଣ କରିବାକୁ ହେବ ?

ଚୈତ । —ଏ ଜଗତରେ ସବୁପଦାର୍ଥ ଅନିତ୍ୟ ହୋଇ ଥିବାରୁ କୌଣସି ପଦାର୍ଥରେ ଅନୁରକ୍ତ ହେବା ଅନୁଚିତ । ଅନୁରକ୍ତ ପଦାର୍ଥର ଅଭାବରେ ଅନୁରାଗ ଶୋକ ରୂପରେ ପରିଣତ ହୁଏ । ପ୍ରତ୍ୟେକ ପଦାର୍ଥ ଜଗଦୀଶସୃଷ୍ଟ ହୋଇ ଥିବାରୁ କୌଣସି ପଦାର୍ଥକୁ ଦ୍ୱେଷ କରିବା ଅସମୀଚୀନ । ପଦାର୍ଥଦ୍ୱାରା ପ୍ରାପ୍ତହେବା ସୁଖ କ୍ଷଣିକ ମାତ୍ର । ଶ୍ରୀରାଧାକୃଷ୍ଣ ପାଦପଦ୍ମ ପ୍ରେମମାତ୍ର ନିତ୍ୟସୁଖପ୍ରଦ ଅଟେ । ଅତଏବ କାମାଦି ଷଡ଼ରିପୁଙ୍କୁ ଦୂର କରି, ସକଳ ପ୍ରାଣୀଙ୍କଠାରେ ପ୍ରେମ ଦର୍ଶାଇ, ଶ୍ରୀରାଧାକୃଷ୍ଣ ଚରଣାରବିନ୍ଦରେ ଭକ୍ତି କରେ । ଶ୍ରୀ ମଚ୍ଚୈତନ୍ୟ ଦେବଙ୍କ ଉପଦେଶ ଏହି—

"ଶ୍ଳୋ । ତୃଣାଦପିସୁନୀଚେନ ତରୁଣାଦପି ସହିଷ୍ଣୁଣା ।
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦାହରି ।"

ବାବା ! ଏ ଉପଦେଶ ଅନୁସରେ । ଶ୍ରୀହରି କୃପାରୁ ତୋ ର ମଙ୍ଗଳ ହେବ । ନିଃସନ୍ଦେହ ।

ଗୋବ । —(ସାଷ୍ଟାଙ୍ଗ ପ୍ରଣାମ କରି ଉଠି ମୁକୁଳିତକରକମଳଯୁଗଳ ହୋଇ) ମହାତ୍ମା ! ତୁମ୍ଭ ଉପଦେଶ ବଶରୁ ମୋର ଜ୍ଞାନୋଦୟ ହେଲା । ଏବେ ନରକ ମୋ ମାନସର ପ୍ରତ୍ୟକ୍ଷ । ମୁଁ ଘୋରାତିଘୋର ପାପିଷ୍ଠ ।

ମୋଠାରେ କୃପାକରି ମୋତେ ନରକରୁ ଉଦ୍ଧାର । ମୁଁ ପ୍ରତିଜ୍ଞାକରି କହୁଅଛି ଯେ ମୋ ମନରୁ ଶତ୍ରୁଷଡ଼ଙ୍କୁ ଦୂରକରି କର୍ମବିରତ ହେଲି । ମୋତେ ଶିଷ୍ୟରୂପେ ଗ୍ରହଣ କରି ପ୍ରେମଭକ୍ତି ପ୍ରାପ୍ୟ ହେବାପରି କର । (ଏତେବୋଲି ପୁନଶ୍ଚ ପ୍ରଣିପାତ କରି ବୈଷ୍ଣବଚରଣଯୁଗଳ ଧରିଲା । )

ଚୈତ ।—(କରଦ୍ୱୟରେ ତୋଳି ଆଲିଙ୍ଗନ କରି) ବାବା ! ଜନ ସକଳକର୍ମବିରତ ହୋଇ ଜୀବନଯାତ୍ରା ଯାପନ କରି ପାରେ ନାହିଁ । ଅତଏବ ଦୁଷ୍ଟ କର୍ମରୁ ବିରତ ହୋଇ ନିଷ୍କାମରେ ଶିଷ୍ଟକର୍ମ କରୁଥିବାକୁ ହେବ । ଯେପରି ନୀଳକଣ୍ଠ କାଳ ଜଳଦ ନାଦରେ ଭୋଳ ହୋଇ ନର୍ତ୍ତନ କରୁଥିଲେହେଁ, ସର୍ପକୁ ବିସ୍ମରେ ନାହିଁ, ସେପରି ଭକ୍ତ ନିଷ୍କାମ କର୍ମରେ ସଂଲଗ୍ନ ହୋଇଥିଲେହେଁ, ଭକ୍ତିକି ପାସୋରେ ନାହିଁ, ସେହିପରି ତୁହି ନିଷ୍କାମ କର୍ମ କରି ପ୍ରେମଭକ୍ତି ସାଧନ କଲେ; ତଦ୍ୱାରା ତୋ ପାପ ପଙ୍କ କ୍ଷାଳିତ ହେବ ଏବଂ ନିତ୍ୟାନନ୍ଦ ପ୍ରାପ୍ତ ହେବ । ତୋତେ ଶିଷ୍ୟରୂପେ ଗ୍ରହଣ କଲି । ଏ ଜଗତରେ ଏକ ବ୍ୟକ୍ତିକି ହେଲେ ସତ୍ପଥଗାମୀ କରି ପାରିଲି ବୋଲି ମୁଁ ସନ୍ତୁଷ୍ଟ ।

ପରେ ଗୋବର୍ଦ୍ଧନଧର ଗୁରୁଙ୍କୁ ଅନୁସରି ଜୟପୁର ଦେଇ ପ୍ରସ୍ଥାଣ କରନ୍ତେ, ଜନେ ତାକୁ ଚିହ୍ନି ଭୟରେ ଦୂରକୁ ପଳାଇଲେ । ପରେ ସେ ସାଧୁବୃତ୍ତାବଲମ୍ବୀ ହୋଇଥିବା ବିଷୟ ଅବଗତ ହୋଇ ସେମାନେ ତାର ସମୀପବର୍ତ୍ତୀ ହୋଇ, ତାକୁ କିଏ ଠେକାରେ ପିଟିଲା; କିଏ ପ୍ରସ୍ତର ପ୍ରହାର କଲା; କିଏ ବାଡ଼ିରେ ବାଡ଼େଇଲା । ଏପରି ନାନାବିଧ ପ୍ରହାର ବଶରୁ ତାହା ନୟନ ଯୁଗଳରୁ ଅଶ୍ରୁ ବର୍ଷିଲା; କିନ୍ତୁ ତାହା ତୁଣ୍ଡରୁ ଗୋଟିଏ ଶବ୍ଦ ସୁଦ୍ଧା ବାହାରିଲା ନାହିଁ । କେତେ କ୍ଷଣ ତାପରେ ସେ ସଂଜ୍ଞାହୀନ ହୋଇ ଭୂମିରେ ପତିତ ହେଲା । ପରେ ସେ ବୈଷ୍ଣବ ସମସ୍ତଙ୍କୁ ଉଦ୍ଦେଶି ବୋଇଲା ଯେ "ଏ ବ୍ୟକ୍ତି ଏବେ ସାଧୁ ହୋଇଅଛି । ଏହାକୁ ପ୍ରହାର କରିବା ଅନୁଚିତ ।" ଏହା ଶୁଣି ସେମାନେ ଏକସ୍ୱରରେ ପ୍ରତ୍ୟୁତ୍ତର ଦେଲେ ଯେ "ଡ଼କାଏତ କେବେହେଁ ସାଧୁ ହୋଇ ପାରେ ନାହିଁ ।" ବୈଷ୍ଣବ ଭାଷିଲା ଯେ "ଏ ନିଶ୍ଚୟରେ ସାଧୁ ହୋଇଅଛି; କିନ୍ତୁ ତୁମ୍ଭେମାନେ ଅସାଧୁ ହୋଇଅଛ ।" ବୈଷ୍ଣବଙ୍କ ଏ ବାଣୀ ଶୁଣି ସେମାନେ ଲଜ୍ଜିତ ହୋଇ

ବାହାରି ଗଲେ । ପରେ ସେ ବୈଷ୍ଣବ ଗୋବର୍ଦ୍ଧନଧରଙ୍କୁ ସଚେତ କରି "ବାବା ! ଏ ଦଣ୍ଡ ଦ୍ୱାରା ତୋର ପୂର୍ବପାପ କ୍ଷାଳିତ ହେଲା । ଆଉ ଚିନ୍ତା କର ନା " ବୋଲି ପ୍ରବୋଧି ତାଙ୍କୁ ସଙ୍ଗରେ ନେଇ ବୃନ୍ଦାବନକୁ ପ୍ରସ୍ଥାନ କଲେ । ଇତି

ଶ୍ରୀ ବିକ୍ରମଦେବ ବର୍ମା

—o—

# ଗୁଣବତୀ ପତ୍ନୀ

( ଲେଖକ—ବିକ୍ରମଦେବ ବର୍ମା )

ନିପଟ ନିଦାଘ ସମୟ । ଜଗତ ଆତପାନଳର ଆହୁତ ହୁଏ । ଦିନ ଦଶ ଘଣ୍ଟାପୂର୍ବରୁ ପକ୍ଷୀପକ୍ଷିଚୟ ତରୁ-ଛାୟାଶ୍ରିତ; ଭୋଗିଗଣ ବଲ୍ମୀକ ଗର୍ଭସ୍ଥିତ; ଭୋଗିଜନ କର୍ପୂର ମିଶ୍ରିତ ଚନ୍ଦନ ଚର୍ଚ୍ଚିତ । କିନ୍ତୁ ରନ୍ଧନାଦି ଗୃହକୃତ୍ୟ କାରିଣୀ ଗୃହିଣୀର ମାତ୍ର ବିଶ୍ରାନ୍ତି କିମ୍ବା ଶୈତ୍ୟୋପଲବ୍ଧି ଘଟେ ନାହିଁ । କୋର୍ଟ ଏବଂ ସ୍କୁଲ ବନ୍ଦ । ଧନାଢ୍ୟମାନେ ଉଦକମଣ୍ଡଳାଦି ସ୍ଥାନମାନଙ୍କରେ ବାସ କରନ୍ତି । ଧନହୀନ କୋଠାରେ ବସି ବ୍ୟଜନ ଚୁଳି ଚୁଳି ଅର୍ଦ୍ଧଦଗ୍ଧାଗୃହିଣୀକୃତ ରନ୍ଧନର ସମାଲୋଚନା କରେ ।

ଏମନ୍ତ ସମୟରେ ଆପଣାର ଏକମାତ୍ର ପୁତ୍ର-ପୂର୍ଣ୍ଣଚନ୍ଦ୍ର ଲଣ୍ଡନରେ ତିନି ବର୍ଷ ପଢ଼ି ବାରିଷ୍ଟର ପରୀକ୍ଷା ପାଶ କରି ଘରକୁ ବାହୁଡ଼ି ଆସୁଥିଲା ସମ୍ବାଦ ଜାଣି ନାରାୟଣ ନାୟକର ଗୃହିଣୀ—କମଳା ଚୁଲ୍ଲୀମୁହଁରେ ବସି ପିଠା ଭାଜୁଥିଲା । ପୁଅଠାରେ ଥିଲା ପ୍ରେମ ବଶରୁ ସେ କଷ୍ଟ ପାଉ ନ ଥିଲା । ଇତଃପୂର୍ବଦିନ ତାର ପୁତ୍ରବଧୂ ହୀରାମଣି ମାଆ ଘରରୁ ଆଣୀତା ହୋଇଥିଲା । ସେ ଶାଶୁ ପାଖେ ବସି ପିଠା ଗଢ଼ୁଥିଲା । କମଳା ସରଳା ଏବଂ କୋମଳା । ସେ ବୋହୂକୁ ଅତ୍ୟନ୍ତ ଲାଳନ କରେ ।

ନାରାୟଣ କେବଳ ନାୟକୋପାଧିଧାରକ ମାତ୍ର ନୁହେଁ । ସେ ଲକ୍ଷ୍ମୀପୁର ଗ୍ରାମର ଅଧିକାରୀ । ବଣାଖୋପଛତିଶି ମଣ୍ଡଳର ଗ୍ରାମାଧିକାରୀ ନାୟକ ବୋଲାଏ । ନାରାୟଣ ଗୃହବାସ, ହଳ ବଳଦ, ହଳିଆ, ମୂଲିଆ ଇର୍ଙ୍ଗି ଏବଂ କିଛି ମହାଜନୀ କରି କେତେ ସହସ୍ର ଟଙ୍କାର ଅଧିକାରୀ ମଧ୍ୟ ହୋଇଥିଲା । ସେ ଲୋଭୀ ହୋଇଥିଲେହେଁ, ନିଜ ତନୁଜକୁ ଆପଣାଠାରୁ ବଡ଼ କରିବା ଉଦ୍ଦେଶ୍ୟରେ ଆଙ୍ଗ୍ଲ ଭାଷା ପଠନ ପାଇଁ ଜୟପୁରର ହାଇସ୍କୁଲକୁ ପଠାଇଲା । ପୂର୍ଣ୍ଣଚନ୍ଦ୍ରର କୁଶାଗ୍ର ବୁଦ୍ଧି । ସେ କେଉଁ କ୍ଲାସରେ ଫେଲ୍ ନୋହି ମେଟ୍ରିକୁଲେସନ ପାସ କରି ବିଜୟନଗରର କଲେଜରେ ଚାରିବର୍ଷ ପଢି ବି.ଏ. ଉପାଧି ସମାଦିଲା । ତେବେ ନାରାୟଣ ପୁତ୍ରକୁ ପଢ଼ା ଛଡ଼ାଇ ରେଭେନ୍ୟୁ ଡିପାର୍ଟମେଣ୍ଟରେ ପ୍ରବେଶ କରାଇବାକୁ ଉଦ୍ୟତ ହେଲା । ସେ ବିଭାଗରେ ପ୍ରବେଶିଲେ, କାଲେ ପୁଅ ମେଜିଷ୍ଟ୍ରେଟ ହେବ ବୋଲି ତାର ଆଶା । କିନ୍ତୁ ପୂର୍ଣ୍ଣଚନ୍ଦ୍ର ଚାକିରି କରିବାକୁ ଅସମ୍ମତ ହୋଇ ଆଇନ ପଢିବା ପାଇଁ ଜିଗର କଲା । ସେ ସବୁଦିନ ପୁଅର ପଢ଼ା ପାଇଁ ବେଶୀ ଧନ ବ୍ୟୟିତ ହୋଇଥିଲା କାରଣରୁ ତାହା ବନ୍ଦ କରାଇବାକୁ ବାପ ବହୁବିଧ ଯତ୍ନ କଲା । କିନ୍ତୁ ପୁଅର ଜିଗରବଶ୍ୟ ଏବଂ ମାଇପର ଅନୁରୋଧବଶ୍ୟ ସେ ପୁଅକୁ ମାନ୍ଦ୍ରାଜର ଲ କଲେଜରେ ପଢ଼ାଇବାକୁ ମଙ୍ଗିଲା । କମଳା ସର୍ବଦା ପୁତ୍ରପକ୍ଷପାତିନୀ । ଜନନୀ ସର୍ବଦା ସନ୍ତାନ ପକ୍ଷପାତିନୀ ସିନା ।

ପୂର୍ଣ୍ଣଚନ୍ଦ୍ର ବିଜୟ ନଗରରେ ପଢ଼ୁଥିଲା ସମୟରୁ ପୁରୋଗମନୋଦ୍ଦେଶ ନିଜ ହୃଦୟରେ ପୋଷଣ କରୁଥିଲା ହେତୁରୁ ସେ ବୋଇଲା—ଦେହର ହାଡ଼ ଗୁଣ୍ଡ କରି ଏବଂ ମୁଣ୍ଡର ଦହି ପାଣି କରି ମାନ୍ଦ୍ରାଜରେ ଆଇନ ପଢି ପାସ କଲେ, ଓକିଲ ହୋଇ ମକ୍କେଲଙ୍କ ଏବଂ ଅଧିକାରୀଙ୍କ ଖୁସାମତ କରୁ କରୁ ମୋ ଜୀବନ ଅନ୍ତ ହେବ । ଚାକିରିର ପ୍ରାୟଶଃ ଏକମାତ୍ର ପ୍ରଭୁ; କିନ୍ତୁ ଓକିଲର ସମଗ୍ର ଜଗତ ଯାକ ପ୍ରଭୁ । ଅତଏବ ମୁଁ ଓକିଲ ହେବି ନାହିଁ । ଲଣ୍ଡନରେ ଆଇନ ପଢି ବାରିଷ୍ଟର ହେବି । ବାରିଷ୍ଟର ହେବା କେତେକ ସମୟରେ ଜିଲ୍ଲା ଜଜ କାର୍ଯ୍ୟ ପାଇବି ।

ଏତେକ ଶୁଣିଲା ମାତ୍ରେ କମଳା ଆନନ୍ଦାବ୍ଧିରେ ଭାସିଲା । ନାରାୟଣ ବୋଇଲା—ଏବେ ଏ ଦେଶରେ ଯେତେ ଲୋକ ବାରିଷ୍ଟର ହୋଇ ଅଛନ୍ତି,

ସେମାନେ ସମସ୍ତେ ତ ଜଜ ହୋଇ ନାହାନ୍ତି । ତୁ ଆଜି ବିଲାତ ଯାଇ ତାଙ୍କ ବାରିଷ୍ଟର ହୋଇ ପରଦ୍ଧନ ଆସିବା ମାତ୍ରେ ଜଜ କାର୍ଯ୍ୟ ପାଇ ପାରିବୁ ବୋଲିଯାଇ ନ ପାରେ । ତୁ ବିଲାତରେ ତିନି ଚାରି ବର୍ଷ ରହି ଜାତିକି ଏବଂ ସମ୍ପତ୍ତିକି ମାଟି କରିବୁ ମାତ୍ର । ତୁ ବିଲାତରେ ଆଇନ ପଢ଼ିବା ପାଇଁ ଯେତେ ଧନ ଖର୍ଚ୍ଚ କରିବୁ—ସେତେ ଧନ ଏଠାରେ ଋଣ ଦେଲେ ତାର କାଳାନ୍ତରରେ ତୁହି ଏବଂ ତୋ କୁଟୁମ୍ବ କୌଣସି କାର୍ଯ୍ୟ ନ କରି ସୁଖେ ସୁଖରେ ବଞ୍ଚି ପାରିବ । ମାତ୍ର ସେତେ ଧନ ତୋତେ ଦେବାକୁ ମୋଠାରେ ନାହିଁ । ଅତଏବ ଦ୍ରବଣା ଗୁଞ୍ଜ କାର୍ଯ୍ୟ ପାଇଁ ଯତ୍ନ କରେ; ନତୁବା ବିଲାତ ନ ଯାଇ ମାନ୍ଦ୍ରାଜରେ ଆଇନ ପଢ଼େ ।

ଏତେ ଶୁଣି ପୁତ୍ର ପ୍ରତ୍ୟୁତ୍ତର ଦେଲା;—ଏବେ ଯେଉଁ ଜଣେ ବାରିଷ୍ଟର ହୋଇଅଛନ୍ତି, ତାଙ୍କର ଚାକିରି କରିବା ସ୍ପୃହା ନ ଥିବ; କିମ୍ବା ସେମାନେ କୌଶଳହୀନ ହୋଇଥିବେ । ମୁଁ ବାରିଷ୍ଟର ହେଲେ, ମୋ କୌଶଳ ବଳରେ ଜଜ୍ କାର୍ଯ୍ୟ ନିଶ୍ଚେ ଲଭିବି । ବିଲାତ ଗଲେ ଜାତି ଯାଏ ବୋଲିବା ଧାରଣା ନିହାତି ପୁରୁଣା । ଆଜି କାଲି ବିଲାତ ହୋଇଛି ପରମ ପବିତ୍ର ତୀର୍ଥସ୍ଥାନ; ବିଲାତଫେରା ବଂଶ ହେଉଛି ସଭ୍ୟବର ।

ତେବେ କମଳା ନିଜ ପତିଙ୍କି ଉଦ୍ଦେଶି ବୋଇଲା;—ଅହେ, ତୁମେ ଧନ ଲୋଭରୁ ଗୋଟିଏ ମାତର ପୁଅକୁ ଭଲ ପାଠ ପଢ଼ାଇ ବଡ଼ କରିବାକୁ ମଙ୍ଗୁନାହଁ । ଧନ ଅରଜି ରଖି ଭଲ କାମରେ ଖରଚ ନ କଲେ ସେ ତ ସଙ୍ଗରେ ଯାଏ ନାହିଁ । ଭଲ କାମରେ ଖରଚ ହେବ ତ ହେଉ । ତା ପାଇଁ ଭାବନା କାହିଁକି ? କାଲିକି ପୁଅ ଜଜ୍ ହେଲେ, ସେ କଣ ଧନ ଅରଜିବ ନାହିଁ ? ଜନ ଧନକୁ ଅରଜେ ନା ଧନ ଜନକୁ ଅରଜେ ? ଏଣୁ ତୁମେ ଅବଶ୍ୟ ଧନ ଦେବାକୁ ହେବ; ପୁଅ ବିଲାତ ଯିବାକୁ ହେବ ।

ମାଇପର କଗରରେ ଏବଂ ପୁଅର ଅଳିରେ ବାଧ୍ୟ ହୋଇ ସେ ବାପୁଡ଼ା ପାଞ୍ଚ ହଜାର ଟଙ୍କା ପୁଅହାତରେ ଦେଲା । କମଳା ନିଜ ପତିର ଅଜଣାରେ ଅଳଙ୍କାର ବନ୍ଧକ ଦେଇ ଏକ ହଜାର ଟଙ୍କା କରଜ କରି ଆଣି ପୁଅକୁ ଦେଇ ବୋଇଲା;—ଏବେ ଏତେକ ଟଙ୍କା ନେଇ ଯା । ଲୋଡ଼ା ହେଲେ ଆହୁରି ପଠାଯିବ ।

ପୂର୍ଣ୍ଣଚନ୍ଦ୍ର ଲଣ୍ଡନ ଯାଇ ମିଡ଼ଲ୍ ଟେମ୍ପିଲ୍‌ରେ ପୂର୍ଣ୍ଣଚନ୍ଦ୍ର ରାଓ ବୋଲି ନିଜ ନାମ ଲେଖାଇ ପ୍ରବେଶିଲା । ଅତଏବ ସେ ସେଠାରେ ପି: ସି: ରାଓ ନାମରେ ପରିଚିତ । ଏଣିକି ଆମ୍ଭେମାନେ ମଧ୍ୟ ସେହି ନାମ ବ୍ୟବହାର କରିବା । ବିଲାତରେ ଦୁଷ୍ଟ ସହବାସ ବଶୁଁ ରାଓର ଆଚରଣ ପରିବର୍ତ୍ତିତ ହେଲା । ସେ ସିଗାରେଟ ପୋଡ଼ାଏ; ମଦ ପିଏ; ବ୍ୟଭିଚାରିଣୀଙ୍କ ସ୍ନେହ ସମ୍ପାଦେ; ପ୍ରାୟଶଃ ପ୍ରତ୍ୟେକ ନିଶା ସିନେମା କିମ୍ବା ନାଟକ ଦେଖିବାକୁ ଯାଏ; ଛୁଟି ଦିନମାନଙ୍କରେ ଦେଶ ଭ୍ରମଣ କରେ । ଅତଏବ ସେ ବାରମ୍ବାର ଧନ ପ୍ରେରଣ ନିମିତ୍ତ ବାପଠାକୁ ପତ୍ର ପଠାଏ । ବାପ ଆଖିରୁ ଲୁହ ନୁହେ— ଲୋହ ଗଡ଼ାଇ କରଜ କରି ଧନ ପଠାଉଥାଏ । ବର୍ଷ ତ୍ରୟରେ ତାର ସକଳ ଚର ସମ୍ପତ୍ତି ନିଲାମ ପାଇ ସ୍ଥିର ସମ୍ପତ୍ତି ବନ୍ଧକ କରାଗଲା । କିପରି ହେଉ ପୁଅ ବାରିଷ୍ଟର ହୋଇ ଫେରି ଆସୁଥିଲା ସମ୍ବାଦ ଅବଗତ ହୋଇ ତାର ମନ ଥୋଡ଼ା ଖୁସି ହୋଇଥିଲା । ସେ ପୁତ୍ର ପ୍ରେମ-ବଶଗ ହୋଇ ସାଲରୁ ରେଲ୍-ଷ୍ଟେସନରେ ନିର୍ଦ୍ଦିଷ୍ଟ ସମୟେ ହାଜର ହୋଇଥାନ୍ତେ, ମେଲ୍ ଗାଡ଼ି ଆସି ପହଞ୍ଚିଲା । ନାରାୟଣ ଇଣ୍ଟର କ୍ଲାସ ଗାଡ଼ିରେ ଏବଂ ସେକେଣ୍ଡ କ୍ଲାସ ଗାଡ଼ିରେ ଖୋଜି ନିଜ ତନୁଜକୁ ନ ଦେଖି ଚିନ୍ତାନ୍ୱିତ ହୋଇ ଠିଆ ହୋଇଥାନ୍ତେ, ପାଦେ ବୁଟ୍ , ଅଙ୍ଗେ ଓଭର କୋଟ, ଶିରେ ହ୍ୟାଟ ଧାରଣ କରିଥିଲା ଏକ ବ୍ୟକ୍ତି ଫାଷ୍ଟ କ୍ଲାସ ଗାଡ଼ିରୁ ଓହ୍ଲାଇ ପ୍ଲାଟଫାର୍ମରେ ତାର ପୂର୍ବ ପରିଚିତ ଜନୈକ ବ୍ୟକ୍ତି ତୁଲେ କର ଧାରଣ କରି ଅଙ୍ଗ୍ଲ ଭାଷାରେ ସମ୍ଭାଷଣ କରୁଥିଲା ସମୟରେ ପୋର୍ଟର ଗାଡ଼ିଭିତରୁ ସୁଟକେଶଟିଏ ଆଣି ସେଠାରେ ରଖି ଆପଣାର ହେବା ପାଉଣା ପାଇ ସଲାମ କରି ଗଲା । ନାରାୟଣ ମଧ୍ୟ ସାହେବ ବୋଲିବା ଶଙ୍କାରେ କିଛିଦୂର ଘୁଞ୍ଚିଲା । କଥୋପକଥନ କରୁଥିଲା ବ୍ୟକ୍ତି ଦ୍ୱୟରେ ପୂର୍ବସ୍ଥିତ ବ୍ୟକ୍ତି ଆଗତ ବ୍ୟକ୍ତିକୁ ଉଦ୍ଦେଶି "ଗୁଡ୍‌ବାଇ, ପୂର୍ଣ୍ଣଚନ୍ଦ୍ର" ବୋଲି ଯାନ୍ତେ, ଆଗତ ବ୍ୟକ୍ତି ନିଜାତ୍ମଜ ବୋଲି ତେବେ ଜାଣି ତା କତିକି ନାରାୟଣ ଯାଇ ସୁଟକେଶ ବହନ କଲା । ମୋଟର ବସ୍‌ରେ ଯିବାକୁ ରାଓ ଅନିଚ୍ଛୁକ ହେଲା ହେତୁରୁ ଗୋଟିଏ ଭଡ଼ା ମୋଟରକାରରେ ବାପ ଏବଂ ପୁଅ ବସି ସ୍ୱପୁରରେ ପହଞ୍ଚିଲେ ।

ଭାରତ ପ୍ରଥା ଏବଂ ପାଶ୍ଚାତ୍ୟ ପ୍ରଥା ମଧ୍ୟରେ ଅନ୍ତର ବହୁତ । ପ୍ରାୟଶ ଇଂଲଣ୍ଡ ବର୍ଷ ଅଭ୍ୟସ୍ତ ହୋଇଥିଲା ହାଲଚାଲ ତିନିବର୍ଷ ବ୍ୟବଧାନରେ

ରାଓଠାରୁ ଦୂର ହୋଇଯାଇ ତାକୁ ପାଶ୍ଚାତ୍ୟ ରୀତି ସମ୍ପୂର୍ଣ୍ଣ ନୂତନ କରି-
ଦେଲା । ଭାରତୀୟ ଭଙ୍ଗୀରେ ଶାଢ଼ୀ ଏବଂ ଖଦ୍ଦ ପିନ୍ଧିଥିଲା କାରଣରୁ ପରି
ସେ ନିଜ ଜନନୀ ଏବଂ ଜନକଙ୍କ ସହିତରେ ଭଲେ କଥୋପକଥନ କଲା
ନାହିଁ । ହୀରାମଣିର ବର୍ଣ୍ଣ ପୁଣ୍ଡ୍ରୀକ ପରି ନୋହି କେତକୀ ପରି ଏବଂ କେଶ
ସୁନା, ରୂପା, କମ୍ବା ତମ୍ବା ପରି ନୋହି ନୀଳମଣି ପରି ଦିଶୁଥିଲା; ତା
ଦେହରୁ ସାବୁନ ବାସନା ନ ବାସି ହରିଦ୍ରା ଗନ୍ଧ ପ୍ରସରୁଥିଲା; ତାର ଶିରରେ
ଓଢ଼ଣି; ନାସାରେ ବସଣି; ଭାଲରେ ସିନ୍ଦୂର ବିନ୍ଦୁ; ହାତରେ ଶଙ୍ଖା; ପାଦରେ
ନୂପୁର; ଅପଘନ ପେଟିକୋଟ ବିହୀନ ହୋଇ ଶାଢ଼ୀରେ ଆବୃତ । ଅଧିକନ୍ତୁ
ସେ ଲଜ୍ଜାନ୍ୱିତା । ଅତଏବ ସେ ରାଓର ମନକୁ ଟାଣି ଆଣି ପାରିଲା ନାହିଁ ।
ରାଓ ମୁଣ୍ଡରୁ ମାଇପ ମୁହଁକୁ ଚାହିଁଲା ନାହିଁ । କାନ୍ଥ ମାଟି; ଛପର ଛଣ; ଘର
କୁଟିର; ପୁଣି ଅସଜ୍ଜିତ; ଗ୍ରାମ ପଡ଼ା; ଗ୍ରାମବାସୀ ଅସଭ୍ୟ । ଅତଏବ ଜନନ
ସ୍ଥାନ ହୋଇଥିଲେହେଁ, ସେଠାରେ ସେ ଦୁଇଦିନ ମଧ୍ୟ ରହି ନ ପାରି
ମାନ୍ଦ୍ରାଜରେ ବାସକରି ଓକାଲତି କରିବାକୁ ଉଦ୍ୟତ ହେଲା । କିନ୍ତୁ ବାଞ୍ଛିତ
ଧନ ଜନକ ଯୋଗାଇ ନ ପାରିଲା ହେତୁରୁ କେତେ କାଳ ବିଶାଖପଟ୍ଟଣରେ
ଓକାଲତି କରି ପରେ ମାନ୍ଦ୍ରାଜ ଯିବା ସ୍ଥିର କରି ଘରରୁ ବାହାରି ବିଶାଖ-
ପଟ୍ଟଣ ଯାଇ ସମୁଦ୍ର ତୀରର ଗୋଟିଏ ବଙ୍ଗଳାର ଆଗରେ "ମିଃ ପିଃ ସିଃ ରାଓ,
ବାରିଷ୍ଟର" ବୋଲି ଲିଖିତ ହୋଇଥିଲା ଗୋଟିଏ ପଟା ଲମ୍ବାଇ ତହିଁ
ବାସକଲା । ସେ ବଙ୍ଗଳାର ମାସିକ ଭଡ଼ା ପଚିଶ ଟଙ୍କା । ରାଓର ଓକାଲତି
ନୂଆ ହୋଇଥିଲେହେଁ, ଉପାଧିବଶୁଁ ପଇସା ଉପାର୍ଜନ ମନ୍ଦ ନୋହି
ଆଶାଜନକ ହୋଇଥିଲା । ସେ ଘରକୁ ଚିଠି ପଠାଏ ନାହିଁ; କିମ୍ବା ଘରୁଁ
ପ୍ରେରିତ ହେଲା ପତ୍ରର ପ୍ରତ୍ୟୁତ୍ତର ଲେଖେ ନାହିଁ ।

ତେଣେ ମହାଜନ ନାରାୟଣର ସକଳ ଚର ସ୍ଥିର ସମ୍ପତ୍ତି ବିକାଇ
ନିଜ ଋଣ-ଧନ ଅସୁଲ କରି ନେଲେ । ସେ ସମସ୍ତ ସମାଚାର ଅବଗତ
ହୋଇ ସୁଦ୍ଧା ରାଓ ଏକ ପଇସାଟିଏ ହେଲେ ଘରକୁ ପଠାଇଲା ,ନାହିଁ ।
ଅଭିମାନୀ-ନାରାୟଣ ଗ୍ରାସବାସହୀନ ହୋଇ ଦାମ ବିକୁଥିଲା ଗ୍ରାମରେ ଦାରୁ
ବିକିବା ଅନୁଚିତ ବୋଲି ଭାବି ଲକ୍ଷ୍ମୀପୁର ତେଜି ତେଲଙ୍ଗୁ ଦେଶକୁ ଯାଇ
ଏକ ଗ୍ରାମୋପ୍ରାନ୍ତରେ ଗୋଟିଏ ପତ୍ରର କୁଡ଼ିଆ ତୋଳି ତହିଁ ଜାୟା ଏବଂ
ପୁତ୍ରବଧୂ ସହିତରେ ରହି କୁଲି ହୋଇ ଜୀବନ ଯାପନ କଲା । ପୁଅଠାରେ

ଆଶା ଭରସା ସ୍ଥାପିଥିଲି କମଳା ତାର ଉପେକ୍ଷାରୁ, ଘଇତାର ଗଞ୍ଜଣାରୁ ଏବଂ ଦରିଦ୍ରତାରୁ ଖିନ୍ନା ହେଲା । ହୀରାମଣିର ଦୁଃଖ କଥନାତୀତ; ଅନୁଭବୈକ ବେଦ୍ୟ ମାତ୍ର । କଷ୍ଟୀ ସୁଖୀ ହେବା ସହ୍ୟ; କିନ୍ତୁ ସୁଖୀ କଷ୍ଟୀ ହେବା ଦୁଃସହ ।

ଏକ ଦିନେ କମଳା ହୀରାମଣିକି କଡରେ ବସାଇ କହିଲା;—ମା, ତୋ ଭାଲରେ ପତିସୁଖଲାଭ ତ ଲେଖା ଯାଇ ନାହିଁ; ତୁ ନିଜେ ଦାରିଦ୍ର୍ୟ କଷ୍ଟ ମଧ୍ୟ ଭୁଞ୍ଜିବୁ କାହିଁକି ? ମୋ କଥା ଶୁଣେ—ମାଆ ଘରକୁ ଯା—ସେଠାରେ ଭାତ ଗୁଣ୍ଡାଏ ଏବଂ ଖଦି ଖଣ୍ଡିଏ ହେଲେ ପାଇବୁ ।

ଏତେ ଶୁଣି ହୀରାମଣି ଶୋକାକୁଳା ହୋଇ ଶାଶୁର ପଦଯୁଗ ଧରି ବୋଇଲା;—ମା, ସେପରି କହ ନାହିଁ । ତୁମ ପୁଅ ବିଲାତରେ ଥିଲାବେଳେ ମୁଁ ମାଆ ଘରେ ତିନି ବରଷକାଳ କାଟିଲି । ତାହା ନିତାନ୍ତ ନିନ୍ଦ୍ୟ । ମାଆ ଘରେ ସଧବାର ସ୍ଥାନ ନାହିଁ । ମୋ କପାଳରେ ପତିସେବା କରିବା ଲେଖି ଯାଇନାହିଁ । ତାହା ବୋଲି ଗୁରୁଜନ ସେବନ ଛାଡ଼ିବି କାହିଁକି ? ମୋର ମାଆଘରର ଖୀରି ଖେଚଡ଼ି ଠାରୁ ଶାଶୁଘରର କାଉ ପେଜ ବଡ଼ ମଧୁର; ସେଠା ପାଟ ପତନୀ ଠାରୁ ଏଠା ଚିରି ଲେଙ୍ଗଡ଼ା ବେଶୀ ସୁନ୍ଦର । ମାଆଘରେ ରହି ନିନ୍ଦିତା ହୋଇ ପାରିବି ନାହିଁ । ମା, ମୋତେ ତୁମ ପାଖରେ ମାନି ରଖ; ତୁମ ବେନିଙ୍କ ସେବା କରି ଦିନ ନେବି; ସେତିକି ମୋତେ ଅଣ୍ଟଇ ।

ତାହା ଶୁଣି କମଳା ଶୋକଭରେ ବୋହୂକୁ କୁଣ୍ଢେଇ କହିଲା;—ମା, ତୋ କଷ୍ଟ ଦେଖି ନ ପାରି ସେପରି ବୋଇଲି । ପୁଅ ବୋଇଲେ ତୁ; ବୋହୂ ବୋଇଲେ ତୁ । ତୋତେ ଛାଡ଼ି ପାରିବି ନାହିଁ । ତୁ ଆମ ପାଖେ ଏକା ଥା । ପାଠକେ, ହୀରାମଣିର ଚାଲିଚଳଣି ପୂର୍ବେ ରାଜାତ୍ମଜା ହୋଇ ସ୍ୱେଚ୍ଛା ବନବାସକ୍ଲେଶ ଭୁଞ୍ଜି ଶାଶୁ ଶ୍ୱଶୁରଙ୍କ ସେବା କରୁଥିଲା ସାବିତ୍ରୀ ଚରିତକୁ ଜ୍ଞାପନ କରାଏ ନାହିଁ କି ?

ଆଉ ଏକଦିନେ କମଳା ନିଜ ନାଥକୁ ଉଦ୍ଦେଶି ବୋଇଲା;—ଅହେ, ତୁମେ ସିନା ଅଭିମାନୀ ହୋଇ ପୁତ୍ରଠାକୁ ଯାଉନାହିଁ; ମୋର ତ

ଅଭିମାନ ନାହିଁ; ମୁଁ ଥରେ ଯାଇ ତାକୁ ଦେଖି ଆସିବି । ସେ ସିନା ଏବେ ପାରଗ ହୋଇ ମୋତେ ଦୂର କଲା; ପାଇଲା ପେଟ ତାକୁ ଦୂର କରିପାରିବ କି ଏଣୁ ମୋତେ ଅନୁମତି ଦିଅ ।

ଏତକ ଶୁଣିଲା ମାତ୍ରେ କ୍ରୋଧାରୁଣିତଲୋଚନ ହୋଇ ନାରାୟଣ ଉଚ୍ଚେ ଭଣିଲା;—କିସ ? ସେ କୁଳାଙ୍ଗାରକୁ ଦେଖିବାକୁ ଯିବୁ ? ତୋ ତେ ଲାଜ ମାଡୁନାହିଁ ? ମୋ ପ୍ରାଣ ଖାଇ ସର୍ବସ୍ୱ ସେ ଦ୍ରୋହୀ ପାଇଁ ଧ୍ୱଂସ କରାଇଲୁ; କୁଳଅଣୀ ହେଲୁ । କୋଡ଼ରେ ଥିବାଯାଏ ପୁତ୍ର; ଥୋଡ଼ ବଢିଲେ ସେ ଅମିତ୍ର । ଏହି ଲୋକୋକ୍ତି ଅନ୍ଧର ଜଣା ଯାଇନାହିଁ କି ? ସେ ତୋତେ ପଶୋର ଦେଇଥିଲେହେଁ, ତୁ ତାକୁ ଯାଇ ହାତ ପାତିବାକୁ ପାଉ । ମୁଁ ଦାରିଦ୍ର୍ୟକଷ୍ଟକୁ ସହିଲି; କିନ୍ତୁ ଅପମାନକୁ ସହି ପାରିବି ନାହିଁ । ଯିବୁ ତ ଯା । ସେ ବିଶ୍ୱାସଘାତକ ତୋତେ ଆଦର କରୁଁ ହେଲେ ଦେଲେ, ଅଣି ଖା, ମାତ୍ର ତାହା ଦ୍ୱାରା ତିରସ୍କୃତା ହୋଇ ଆସିଲେ, ତୋର ଏଠାରେ ଆଉ ସ୍ଥାନ ଥିବ ନାହିଁ । ଖବରଦାର !

ପୁଅଠାରେ ଥିଲା ମମତାରୁ ଏବଂ ଭରସାରୁ କମଳା ଗିରସ୍ତର ଗେର ଠେଲିଦେଇ ବିଶ ଖପଛଣ ଯାଇ ରାଓର ଗୃହଦ୍ୱାରରେ ହାଜର ହୋଇ ଦ୍ୱାରପାଳ ଦ୍ୱାରା ନିଜାଗମନ ବାର୍ତ୍ତା ଭିତରକୁ ପଠାଇଲା । ଦ୍ୱାରୀ ଫେରି ଆସି "ବାବୁ କାର୍ଯ୍ୟରେ ବ୍ୟସ୍ତ ହୋଇ ଅଛନ୍ତି; ତୁମେ କିଛି କାଳ ଏଠାରେ ବସିଥାଅ" ବୋଲି କହନ୍ତେ, ସେ ମର୍ଦ୍ଦିତ-ପୁଚ୍ଛଫଣିନୀ ପରି କ୍ରୁଦ୍ଧା ହୋଇ "କିସ ? ତାର ଆଖି ଦିଓଟି ଏବେ ତାଳୁ ଚଢିଲା ! ମାଆକୁ ଦାଣ୍ଡେ ବସାଇ ଘରେ କାର୍ଯ୍ୟ କରୁଛି ? ମୋର ବାରଣ ମାନେ କେ ?" ବୋଲି ଜବରଦସ୍ତରେ ଭିତରେ ପଶି ପୁଅର ଆଗରେ ଉଭା ହୋଇ ବୋଇଲା;—ପୂର୍ଣ୍ଣ, ତୁ ଏବେ କେଡ଼େ ବଡ଼ ହେଲୁ ରେ !!

ଏତକ ଶୁଣି ରାଓ ଦୁଇ ଆଖି ତରାଟି ଚାହିଁ ବୋଇଲା;—"ପୂର୍ଣ୍ଣଚନ୍ଦ୍ର ରାଓ ମହାଶୟ" କିମ୍ବା "ପୂର୍ଣ୍ଣଚନ୍ଦ୍ର ବାବୁ" ବୋଲି ପାରୁନାହୁଁ ? ବାରିଷ୍ଟର ମହାଶୟଙ୍କୁ "ପୂର୍ଣ୍ଣ" ବୋଲି ଡାକୁଛୁ ? ଅନୁଜ୍ଞା ବିନା ଭିତରକୁ ଆସିଛୁ ?

ଏତକ ଶୁଣିଲାମାତ୍ର କମଳା କୁପିତା ହୋଇ ଉଚ୍ଚ ସ୍ୱରରେ ବୋଇଲା;—ଅରେ ମୂର୍ଖ, ତୁ ଆନ. ଜନଙ୍କର "ମହାଶୟ" "ବାବୁ"

